# ଭାଗବତ କଥା

ଷଷ୍ଠ ଖଣ୍ଡ

ଲେଖକ :

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା :

ଶ୍ରୀ ଅନନ୍ତ ମିଶ୍ର

ଅନୁବାଦକ :

ପଣ୍ଡିତ ନୀଳମଣି ମିଶ୍ର

ପ୍ରକାଶକ :



ଧର୍ମଗ୍ରନ୍ଥ ଷ୍ଟୋର

# ଭାଗବତ କଥା

## ଷଷ୍ଠ ଖଣ୍ଡ

ପ୍ରକାଶକ :
ଶ୍ରୀ ଅନନ୍ତ ମିଶ୍ର
କଟକ ଷ୍ଟୁଡେଣ୍ଟସ ଷ୍ଟୋର
କଟକ, ୭୫୩୦୦୨

ପ୍ରଥମ ସଂସ୍କରଣ :
ରାସ ପୂର୍ଣ୍ଣିମା ନଭେମ୍ବର ୧୯୮୩

ପ୍ରଚ୍ଛଦ :
ଶ୍ରୀ ଅସୀତ ମୁଖାର୍ଜୀ

ମୁଦ୍ରଣ :
କଲ୍ୟାଣୀ ପ୍ରିଣ୍ଟର୍ସ
କଟକ

ମୂଲ୍ୟ : ବନ୍ଧାଇ ଟ ୧୫-୦୦
ଅବନ୍ଧା ଟ ୧୨-୦୦

## BHAGABAT KATHA

Sri Prabhudata Brahmacharee

Publisher :
Sri Anant Misra
Cuttack Students' Store
Cuttack-753002

First Edition : 1983

Price :
Delux—Rs. 15·00
Popular— Rs. 12·00

# ସୂଚୀ

# ବାବାଜୀ ଅଡୁଆରେ ପଡ଼ିଗଲେ

ନ କୁର୍ଯ୍ୟାତ୍ କର୍ହିଚିତ୍ ସଖ୍ୟଂ ମନସି ହ୍ୟନବସ୍ଥିତେ ।
ଯଦ୍ ବିଶ୍ରମ୍ଭାଚ୍ଚିରାଚ୍ଚୀର୍ଣ୍ଣଂ ଚସ୍କନ୍ଦ ତପ ଐଶ୍ୱରମ୍ ॥
ନିତ୍ୟଂ ଦଦାତି କାମସ୍ୟ ଚ୍ଛିଦ୍ରଂ ତମନୁ ଯେଽରୟଃ ।
ଯୋଗିନଃ କୃତମୈତ୍ରସ୍ୟ ପତ୍ୟୁର୍ଜାୟେବ ପୁଂଶ୍ଚଲୀ ॥
କାମୋ ମନ୍ୟୁର୍ମଦୋ ଲୋଭଃ ଶୋକମୋହଭୟାଦୟଃ ।
କର୍ମବନ୍ଧଶ୍ଚ ଯନ୍ମୂଳଃ ସ୍ୱୀକୁର୍ଯ୍ୟାତ୍ କୋ ନୁ ତଦ୍ ବୁଧଃ ॥

(ଶ୍ରୀମଦ୍ ଭାଗବତ ୫ମ, ୬ଷ୍ଠ ଅଧ୍ୟାୟ ୩-୪-୫ ଶ୍ଲୋକ)

## ଛପ୍ପୟ

ଘର ତେଂ ନାତୋ ତୋର ଜଗତ୍ ତେଂ ଯେ ନର ଜୋରେ ।
ଉଭୟଭ୍ରଷ୍ଟ ତେଂ ହୋହିଁ ବୀଚ ମହଁ ଲୁଟିୟା ବୋରେଂ ॥
ମନ ହୈ ଖଲ୍‌କଭୂତ ଲପଟି ଜାକୈ ସଁଗ ଜାୱେ ।
ତବ ସବ ଜ୍ଞାନ ବିରାଗ ଭକ୍ତି ତପ ଯୋଗ ଭୁଲାୱେ ॥
କରେଂ ଜଗତ୍ ବ୍ୟବସାୟ ଜେ,
କଥା କୀରତନ ଛୋଡ଼ କେଂ ।
ହରି ଚିନ୍ତନ ହୋୱେ ନହିଁ,
ନାତୋ ଜଗତେଂ ଜୋର କେଂ

ଅର୍ଥାତ୍—ଅବ୍ୟବସ୍ଥିତ ଚଞ୍ଚଳ ଚିତ୍ତ ସହିତ କେବେହେଲେ ମିତ୍ରତା କର ନାହିଁ । ଦେଖ, ଏହାର ଉପରେ ବିଶ୍ୱାସ କରି ମହାଦେବ ମୋହିନୀ ରୂପ ପଛରେ ଧାଇଁ, ନିଜର ବହୁ ଯୁଗର ତପସ୍ୟା ଫଳକୁ ହରାଇ ବସିଲେ । ସାଧନ ମାର୍ଗରେ ରତ ଯୋଗୀ ଏହି ମନ ଉପରେ ବିଶ୍ୱାସ କରି; କାମ, କ୍ରୋଧ, ଲୋଭ ଓ

ମୋହାନ୍ଧରେ ନିଜକୁ ଭସାଇ ଦିଏ । ବ୍ୟଭିଚାରିଣୀ ନାରୀ ନିଜ ମନ ଉପରେ ଆସ୍ଥା ସ୍ଥାପନ କରି 'ଜାର' ପୁରୁଷ ସହିତ ମାତି ନିଜର ବିଶ୍ୱାସୀ ପତିକୁ ହରାଇ ବସେ । ଯେଉଁ ମନ କାମ କ୍ରୋଧାଦିରେ ବିଶ୍ରାନ୍ତ କରେ, ସେ ମନ ଉପରେ ବୁଦ୍ଧିମାନ୍ ଯୋଗୀ ପୁରୁଷ କପରି ବିଶ୍ୱାସ କରିପାରିବେ ?

ଆମ ଭାଗବତ କଥାର ପାଠକବୃନ୍ଦ ଦୈନିକ, ମାସିକ ପତ୍ରିକାର ବିଷୟବସ୍ତୁରେ ଭୁଲିଯିବାପାଇଁ କେବେହେଲେ ପ୍ରସ୍ତୁତ ହୋଇ ନଥିବେ । କାରଣ ଆମର 'ଭାଗବତ କଥା' ଅତୌ ସାମୟିକ ବିଷୟବସ୍ତୁ ନୁହେଁ । ଏହା ହେଉଛି—ଗୋଟିଏ ଶାଶ୍ୱତ କଥା । ଏହା—ସୃଷ୍ଟିର ଆରମ୍ଭଠାରୁ ଶେଷ ପର୍ଯ୍ୟନ୍ତ ଗୋଟିଏ ରସପୂର୍ଣ୍ଣ ଆଖ୍ୟାୟିକା । ପାଠକମାନଙ୍କର ସ୍ମରଣ ଥିବ—ମୁଁ ପ୍ରଥମ ଖଣ୍ଡର ଭୂମିକାରେ କହିଥିଲି ଯେ, ଆମର ଭକ୍ତ ପାଠକମାନେ ମୋତେ ଏହି କଥାରେ ମନାଇ ଦେଇ ଏହାଠାରୁ ଦୂରେଇ ଯିବେ । ମୁଁ ଏହି ଅଭ୍ୟାସରେ ପଡ଼ିଯାଇ ଗୋଟିଏ ବ୍ୟାପାରରେ ପରିଣତ ହୋଇଯିବ । ପ୍ରକୃତରେ, ମୋର ସେହି ଅନୁମାନ ସତ୍ୟରେ ପରିଣତ ହେଲା । ଏହାର ପ୍ରକାଶନରେ ମାତି ଯାଇ, ମୁଁ ମୋର କର୍ତ୍ତବ୍ୟ ହରାଇ ବସିଲି । ବର୍ତ୍ତମାନ ଯାହା କିଛି ହେଉଛି, କେବଳ ଗୋଟିଏ ଗତାନୁଗତିକତାରେ ହେଉଛି ମାତ୍ର । ଆଜି କାଗଜ ନାହିଁ, କାଲି ନାହିଁ, ପ୍ରୁଫ୍ ଆସିନାହିଁ, ଦ୍ୱିତୀୟ ଖଣ୍ଡ ପ୍ରକାଶ ପାଇପାରିଲା ନାହିଁ ପ୍ରଭୃତି ଧନ୍ଦାରେ ମୁଁ ମାତି ଯାଇଛି । ସେହି ଚିନ୍ତାରେ ମୁଁ ପ୍ରତିଦିନ ମଗ୍ନି ରହିଛି । ତେଣୁ ମୁଁ ପୂଜା, ପାଠ ଜପ ଆଦିରେ ମନ ଲଗାଇ ପାରୁ ନାହିଁ । କେବଳ ଅଭ୍ୟାସବଶତଃ ମୁଁ ମାଳା ଜପି ଚାଲିଛି, କିନ୍ତୁ ସେଥିରେ ମନ ଲଗାଇ ପାରୁ ନାହିଁ ।

ଆଗରୁ ମୁଁ ଯେବେ ଜପ, ତପରେ ମନ ଲଗାଇ ପାରୁଥିଲି, କିନ୍ତୁ ଏବେ ଏହାର ପ୍ରକାଶନ ଚିନ୍ତାରେ ମୁଁ ଲାଗି ରହିଛି; ଏଥିରୁ ଉଦ୍ଧାର ପାଇ ପାରୁନାହିଁ । ଏ' ସମ୍ବନ୍ଧରେ ମୁଁ ଗୋଟିଏ ଆଖ୍ୟାୟିକା କହିଲେ ଆପଣମାନେ ଠିକ୍ ଭାବରେ ବୁଝି ପାରିବେ ।

"ଜଣେ ସାଧୁ କୁଡ଼ିଆରେ ରହୁଥିଲେ ଏବଂ ପ୍ରତିଦିନ ଭଗବଦ୍ ଗୀତା ଗୁରୁଙ୍କଠାରୁ ଶୁଣୁଥିଲେ । ସତରଟି ଅଧ୍ୟାୟ ଶେଷ ହୋଇଗଲେ, ଅଷ୍ଟାଦଶ ଅଧ୍ୟାୟ ଆରମ୍ଭ ସମୟରେ ଗୁରୁଦେବ ତୀର୍ଥ ଯାତ୍ରାରେ ବାହାରି ଗଲେ । ଶିଷ୍ୟ ଥିଲେ ଜଣେ ବିରକ୍ତ ସନ୍ନ୍ୟାସୀ । ସେ ଭିକ୍ଷା କରି ଯାହା ପାଉଥିଲେ, ସେଥିରେ ସନ୍ତୁଷ୍ଟ ହୋଇ ଗୀତା ପାରାୟଣରେ ଲାଗିଥିଲେ । ଦିନେ 'ଗୀତା' ବନ୍ଧା ଯାଇଥିବା କନାଟିକୁ ମୂଷା କାଟି ଦେଲା । ପରଦିନ ଗୀତା ବହିଟିରୁ କେତୋଟି ପତ୍ର ମଧ୍ୟ ମୂଷା କାଟି ପକାଇଲା । ଏହା ଦେଖି ସାଧୁ ମନେ ମନେ ମୂଷା ଉପରେ ବିରକ୍ତ ହେଲେ । ଏହି ଅବସରରେ ଜଣେ କେହି ଭକ୍ତ ବିରାଡ଼ିଟିଏ ପାଳିବା ଲାଗି ପରାମର୍ଶ ଦେଲା ।

ବାବାଜୀ ଅଡୁଆରେ ପଡ଼ିଗଲେ

ସାଧୁ ବିରାଡ଼ିଟିଏ ପାଳିଲେ; କିନ୍ତୁ ବିରାଡ଼ି ରୁଟି ଖାଇଲା ନାହିଁ । ସାଧୁ ବିରାଡ଼ିପାଇଁ କେଉଁ ଭକ୍ତଙ୍କ ଘରୁ ଦୁଧ ଟିକିଏ ମାଗି ଆଣିଲେ । କିନ୍ତୁ ପ୍ରତିଦିନ ଦୁଧ ମିଳିବ ଅବା କେଉଁଠୁ ? ସେଥିପାଇଁ ସାଧୁ ନିତାନ୍ତ ବ୍ୟସ୍ତ ହୋଇ ପଡ଼ିଲେ । ତା'ପରେ ଜଣେ ଭକ୍ତ କହିଲେ—ଦୁଧ ଟିକିଏ ପାଇଁ ଆପଣ ବ୍ୟସ୍ତ ହେଉଛନ୍ତି କାହିଁକି । ମୁଁ ଗାଈଟି ଆଣି ଦେଉଛି, ତାକୁ ଆପଣ ପାଳନ୍ତୁ । ବିରାଡ଼ି ପାଇଁ ଦୁଧ ମିଳିଯିବ ଏବଂ ଆପଣ ମଧ୍ୟ ଟିକିଏ ଦୁଧ ପିଇ ପାରିବେ ।

ସାଧୁ ଭକ୍ତଙ୍କ ଅନୁରୋଧରେ ଗାଈଟିଏ ପାଳିଲେ । ଗାଈଟି ପାଞ୍ଚ ଛଅ ମାସ ଦୁଧ ଦେବା ପରେ ଆଉ ଦୁଧ ଦେଲା ନାହିଁ । ତା'ପରେ ସାଧୁ ଆଉ ଗୋଟିଏ ଗାଈ ପାଳିଲେ । ଦୁଇଟି ଗାଈଙ୍କପାଇଁ ଦାନା ଚରା ଯୋଗାଡ଼ କରିବା ସାଧୁଙ୍କ ପକ୍ଷରେ ଅସମ୍ଭବ ହୋଇ ପଡ଼ିଲା ।

ତାହା ଦେଖି ପୁଣି ଜଣେ ଭକ୍ତ କହିଲେ—ମହାରାଜ, ଏବେ ଦୁଇଟି ଗାଈ ଓ ଦୁଇଟି ବାଛୁରି ପାଳୁଛନ୍ତି । ଆଉ ହଳେ ବଳଦ ଯୋଗାଡ଼ କରି, ଆଶ୍ରମ ନିକଟରେ ଥିବା ଜମିରେ ଚାଷ କଲେ, ଆପଣଙ୍କ ପକ୍ଷରେ ଗାଈ ଗୋରୁଙ୍କପାଇଁ ଦାନା ଯୋଗାଡ଼ କରିବା ଅସୁବିଧାଜନକ ହୁଅନ୍ତା ନାହିଁ ।

ସାଧୁ ମହୋଦୟ ହଳେ ବଳଦ ରଖି ସେମାନଙ୍କ ସେବା ଓ ଚାଷବାସରେ ମନ ଲଗାଇ ଦେଲେ । ସାରା ଦିନ ସେହି କାମରେ ବ୍ୟସ୍ତ ରହି ଭଜନ, ପୂଜନ ପାଇଁ ଆଦୌ ସମୟ ପାଇଲେ ନାହିଁ ।

ଏତିକିବେଳେ ଜଣେ ବିଧବା ଆସି କହିଲେ—ମହାରାଜ ମୋର କେହି ନାହାନ୍ତି । ଆପଣ ମଧ୍ୟ କାମଧନ୍ଦାରେ ବ୍ୟସ୍ତ ରହି ହଇରାଣ ହେଉଛନ୍ତି । ମୁଁ ଆଶ୍ରମରେ ରହିଲେ, ଗଣ୍ଡେ ଖାଇବି ଏବଂ ଆପଣଙ୍କ କାମରୁ ଅଧାଅଧି କରିଦେବି । ଆପଣ ଆଉ ଏତେ ହଇରାଣ ହେବେ ନାହିଁ ।

ସାଧୁ ମହୋଦୟ ବାଧ୍ୟ ହୋଇ ବିଧବାଟିକୁ ଆଶ୍ରମରେ ସ୍ଥାନ ଦେଲେ । ଧୀରେ ଧୀରେ ସ୍ତ୍ରୀଲୋକଟି ପ୍ରତି ସେ ଆକୃଷ୍ଟ ହୋଇ ପଡ଼ିଲେ ଏବଂ ତା'ର ଫଳରେ ସାଧୁ ତାକୁ ବିବାହ କରି ବେଶ୍ ସଂସାରୀ ହୋଇଗଲେ । କେଇ ବର୍ଷ ମଧ୍ୟରେ ସାଧୁଙ୍କର ପାଞ୍ଚ ଛଅଟି ପିଲା ହୋଇଗଲେ । ସେ ଜପ, ତପ, ଗୀତା ପାରାୟଣ ଆଦି ସବୁ ତ୍ୟାଗ କରି, ଜଣେ ପୋଖତ୍ ସଂସାରୀ ପରି ଚଳିବାକୁ ଲାଗିଲେ ।

ବାର ବର୍ଷ ପରେ ତାଙ୍କର ଗୁରୁ ମହାରାଜ ତୀର୍ଥ ଯାତ୍ରାରୁ ଫେରି ଆସି, ଶିଷ୍ୟଟିର ଅବସ୍ଥା ଦେଖି ଅବାକ୍ ହୋଇଗଲେ । ଗୁରୁଦେବ ପହଞ୍ଚିବା ବେଳକୁ ଶିଷ୍ୟର କୋଳରେ ଛୋଟ ପିଲାଟିଏ ଶୋଇଥିଲା, ଦୁଇଟି ପିଲା ଦୁଇ କାନ୍ଧରେ

ବସିଥିଲେ, ଗୋଟିଏ ପିଲା ପିଠିରେ ଲଦି ହୋଇଥିଲା । ଆଉ ଦୁଇଟି ପିଲା ସେଇଠି ମାଡ଼ଗୋଳ ଲଗାଇଥିଲେ । ଗୁରୁଙ୍କୁ ସମ୍ମୁଖରେ ଦେଖିଲେ ମଧ୍ୟ ସାଧୁଙ୍କର ଉଠି ପ୍ରଣାମ କରିବାର ଉପାୟ ନଥିଲା । ସେ ବାଧ୍ୟ ହୋଇ, ସେଇଠି ବସି କହିଲେ—ଗୁରୁଦେବ ପ୍ରଣାମ ଗ୍ରହଣ କରନ୍ତୁ । ମୁଁ ଗୀତାପାଠ କରିବାକୁ ଯାଇ ଏଇ ହଇରାଣରେ ପଡ଼ିଛି ।

ଗୁରୁଦେବ ଶିଷ୍ୟର ଅବସ୍ଥା ଦେଖି ଓ ତା'ଠାରୁ ସବୁ କଥା ଶୁଣି କହିଲେ— ଆରେ, ଏ' ସବୁ ମାୟା ଜାଲ, ଏହାକୁ ଛିଣ୍ଡାଇ ଦେଇ ଚାଲିଆ.... ।

ଏହା ଶୁଣି ଉତ୍ତର ଦେଲେ ଶିଷ୍ୟ—ମହାରାଜ, ମୁଁ ଏହାକୁ କପରି ଛାଡ଼ି ପାରିବି ? ଏମାନେ ତ ମୋତେ ଛାଡ଼ୁନାହାନ୍ତି । ତା'ପରେ ସେ ପତ୍ନୀ ପୁତ୍ରଙ୍କୁ ଡାକି କହିଲେ—ଶୁଣୁଛ, ଗୁରୁ ମହାରାଜ କହୁଛନ୍ତି, ଏ ସବୁ ଜଞ୍ଜାଳ ଛାଡ଼ି ଦେବା ପାଇଁ । ତୁମେମାନେ କଅଣ କହୁଛ ?

ଏହା ଶୁଣି ପତ୍ନୀ ପୁତ୍ରମାନେ କାନ୍ଦି ଉଠିଲେ । ସେମାନଙ୍କ କ୍ରନ୍ଦନ ରୋଳ ଶୁଣି ଶିଷ୍ୟ କହିଲେ—ଗୁରୁଦେବ, ଦେଖୁଛନ୍ତି ତ ଅବସ୍ଥା; ଏମାନେ ମୋତେ ବାନ୍ଧି ରଖିଛନ୍ତି । ମୁଁ ଏମାନଙ୍କୁ କପରି ଛାଡ଼ି ପାରିବି ?

ଗୁରୁଦେବ ଶିଷ୍ୟଙ୍କ ଉଦ୍ଧାର ଲାଗି ମନେ ମନେ ବ୍ୟାକୁଳ ହୋଇ ଉଠିଲେ । ହଠାତ୍ ସେ ଗୋଟିଏ ଗଛକୁ ଜୋର୍‌ରେ ଭିଡ଼ି ଧରି ଡାକ ପକାଇଲେ: ଧାଇଁ ଆସ, ଗଛଟା ମୋତେ ଛାଡ଼ୁନାହିଁ ।

ଗୁରୁଙ୍କର ଚିତ୍କାର ଶୁଣି ଶିଷ୍ୟ ଧାଇଁ ଯାଇ ଦେଖିଲେ ଗୁରୁଜୀ ଗଛଟିକୁ ଜୋର୍‌ରେ ଭିଡ଼ି ଧରି ମିଛଟାରେ ଚିତ୍କାର ଛାଡ଼ୁଛନ୍ତି । ସେ ହସିହସି କହିଲେ— "ମହାରାଜ ଆପଣ ତ ଗଛଟିକୁ ଭିଡ଼ି ଧରିଛନ୍ତି । ଗଛ କେଉଁଠି ଆପଣଙ୍କୁ ଧରିଛି ? ଆପଣ ଗଛକୁ ଛାଡ଼ି ଚାଲି ଆସନ୍ତୁ" ।

ତହୁଁ ଗୁରୁଜୀ ଗମ୍ଭୀର ହୋଇ କହିଲେ—"ବାବା, ତୁମେ ମୋତେ ଯେଉଁ ଉପଦେଶ ଦେଉଛ, ତାହା ନିଜେ କରୁନାହଁ କାହିଁକି ? ଏ' ସ୍ତ୍ରୀ ପୁତ୍ରମାନେ ତୁମକୁ ଛାଡ଼ୁନାହାନ୍ତି ନା, ତୁମେ ମୋହ ବଶରେ ସେମାନଙ୍କୁ ଛାଡ଼ି ଚାଲିଯାଇ ପାରୁନାହଁ ? ସମୁଦାୟ ଗୀତାର ସାର ମର୍ମ ହେଉଛି—

ସର୍ବ ଧର୍ମାନ୍ ପରିତ୍ୟଜ୍ୟ ମାମେକ ଶରଣଂ ବ୍ରଜ ।
ଅହଂ ତ୍ୱାଂ ସର୍ବ ପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚ" ।।

ପ୍ରକୃତରେ କେହି କାହାରିକୁ ଧରି ରଖେ ନାହିଁ । ମନୁଷ୍ୟ ନିଜର ମୋହ ବଶରୁ ସଂସାରରେ ଏଣ୍ଡି ପୋକ ପରି କାକଳୁକ ହୋଇ ପଡ଼ି ରହେ । ନିଜର ଅକ୍ଷମତାକୁ ଘୋଡ଼ାଇ ରଖି ସେ ଅନ୍ୟ ଉପରେ ଦୋଷ ଦିଏ ।

ମୋ ପାଖକୁ ଅନେକ ଗୃହୀ ଆସି କହନ୍ତି—"ମହାରାଜ, ମୁଁ ବିବାହ କରିବାକୁ ଚାହୁଁ ନାହିଁ । ଏହା ଫଳରେ ମଣିଷ ଜୀବନ ଜଞ୍ଜାଳରେ ବନ୍ଦୀ ହୋଇ ଯିବ ଏବଂ ମଣିଷ ଜୀବନରେ କିଛି ଉନ୍ନତି କରି ପାରିବ ନାହିଁ ।

ମୁଁ ସେମାନଙ୍କୁ ବିବାହ କରିବା ପାଇଁ ଉପଦେଶ ଦେଲେ ମଧ୍ୟ ସେମାନେ ବିବାହ ନ କରିବା ପାଇଁ ନାନା ପ୍ରକାର ଯୁକ୍ତି କରି ଥାଆନ୍ତି ।

କିଛି ଦିନ ବିତିଯିବା ପରେ, ସେହି ଗୃହୀମାନେ ବିବାହ କରି ପିଲାଛୁଆଙ୍କୁ ସାଙ୍ଗରେ ଧରି ଆସି ଆଶ୍ରମରେ ସଦମ୍ଭ ମୋତେ ପ୍ରଣାମ କରନ୍ତି । ମୁଁ ସଙ୍ଗେ ସଙ୍ଗେ ହସି ଦେଇ ପଚାରେ—"କିରେ ବାପା, ତୁମେ ପରା ବିବାହ କରିବ ନାହିଁ ବୋଲି କହୁଥିଲ, ଏବେ ଏ କଅଣ ?"

ସେମାନେ ଲାଜକୁ ମୁହଁ କରି ଉତ୍ତର ଦିଅନ୍ତି—"ମହାରାଜ, ମୋର ଆଦୌ ଇଚ୍ଛା ନ ଥିଲା । ବାପା ମାଆ ବାଧ୍ୟ କଲେ, ମୋର କିଛି ଅନ୍ୟ ଉପାୟ ନଥିଲା" ।

ମୁଁ ହସି ହସି ପଚାରେ— "ତୁମେ ଯଦି ସେମାନଙ୍କ କଥାରେ ବାଧ୍ୟ ହୋଇ ବିବାହ କଲ, କିନ୍ତୁ ଏ' ପିଲାକବିଲା ହେଲେ କିପରି ?"

ଅସଲ କଥା ହେଉଛି—ମଣିଷ ମନରେ ବାସନାର ଭୂତ ଲୁଚି ରହିଥାଏ । ତାହା ଠିକ୍ ସମୟରେ ଆତ୍ମପ୍ରକାଶ କରେ । ବ୍ୟାପାରୀ ବ୍ୟବସାୟରେ ଲାଭ ହେବ ବୋଲି ଜାଣି, ବ୍ୟାପାର ଆରମ୍ଭ କରିଥାଏ । କ୍ଷତି ହେବ ବୋଲି ଜାଣିଲେ ସେ ଆଦୌ ବ୍ୟବସାୟ ଆରମ୍ଭ କରନ୍ତା ନାହିଁ " ।

ଠିକ୍ ସେହିପରି, ଲେଖିବାର ବ୍ୟସନ ମୋ' ମନରେ ଉଦୟ ହେବାରୁ, ମୁଁ ଲେଖିବା ଆରମ୍ଭ କରିଦେଲି । ଏବେ ଯେତେ ଚେଷ୍ଟା କଲେ ମଧ୍ୟ ମୋ' ମନରୁ ସେ ବାସନାର ଭୂତ ଦୂର ହେଉନାହିଁ । ଭଜନ ପୂଜନରେ ବାଧା ଉପସ୍ଥିତ ହେଲେ ମଧ୍ୟ ମୁଁ ଏହି ବାସନାର ବଶୀଭୂତ ହୋଇଛି; ତାକୁ ଛାଡ଼ି ପାରୁ ନାହିଁ ।

ପ୍ରଥମେ ମୁଁ ଭାବିଥିଲି, ଦୁଇ ଚାରି ଖଣ୍ଡ ଲେଖି ଛାଡ଼ି ଦେବି । ଅନ୍ୟମାନେ ଏ' ଦାୟିତ୍ୱ ତୁଲାଇ ନେବେ; କିନ୍ତୁ ଧୀରେ ଧୀରେ ପୁସ୍ତକର ପ୍ରଚାର ତଥା ତା'ର ପ୍ରସିଦ୍ଧି ମୋ ମନରେ ବାସନାର ଭୂତ ହୋଇ ମୋତେ ଜାବୁଡ଼ି ଧରିଛି । ମୁଁ ମଧ୍ୟ ତାକୁ ଛାଡ଼ି ପାରୁନାହିଁ, ସେଇଥିପାଇଁ ମୁଁ ଏହି ଲେଖାଲେଖି ପାଇଁ ମୋ' ଜୀବନର ଧ୍ୟେୟ ପୂଜାପାଠକୁ ଛାଡ଼ି, ଏହାର ପଛରେ ମୋହବଶତଃ ଧାଇଁଛି । ଏବେ ମୋ' ମନରେ ବଣିକ୍ ବୃତ୍ତି ଉଗ୍ରରୂପ ଧାରଣ କରି ବସିଛି । ନାନା ପ୍ରକାର କାମନା ମନରେ ଜାଗ୍ରତ ହୋଇଛି । ମୁଁ ଏବେ ଏହି ଜଞ୍ଜାଳରେ ଜାଣି ଶୁଣି ନିଜକୁ ବନ୍ଦୀ କରିଛି ଏବଂ ନାନା ପ୍ରକାର ଅସୁବିଧାକୁ ନିଜେ ନିମନ୍ତ୍ରଣ କରି ଆଣିଛି ।

"ମୋ' ଜୀବନରେ ବୈରାଗ୍ୟର ଧାରା ପ୍ରବାହିତ ହୋଇଥିଲା, କିନ୍ତୁ ବର୍ଷା ପାଣି ପରି ତାହା କିଛିଦିନ ପରେ କୁଆଡ଼େ ଉଭେଇ ଗଲା । ମୁଁ ବିରକ୍ତ ସନ୍ନ୍ୟାସୀରୁ ଆସି ଜଣେ ପ୍ରସିଦ୍ଧ ଅର୍ଜନକାରୀ ମହନ୍ତ ହୋଇଯାଇଛି । ମୋତେ କେତେ ଲୋକ କେତେ କଥା କହୁଛନ୍ତି; କିନ୍ତୁ ପ୍ରକୃତ କଥା ହେଉଛି—ମୁଁ ବାସନାରେ ବଶୀଭୂତ ହୋଇ ଯାଇଛି । ସେହି ଭ୍ରମଜାଲରୁ ମୁକ୍ତ ପାଇବାର ଆଉ କିଛି ହେଲେ ଉପାୟ ନାହିଁ ।

"ଏହା ଗୋଟିଏ ଐଶ୍ୱର୍ଯ୍ୟ କାର୍ଯ୍ୟ, ଆଦୌ ଜଞ୍ଜାଳ ନୁହେଁ । ଆପଣ ଅନାସକ୍ତ ଭାବରେ ଏହାକୁ କରି ଯାଆନ୍ତୁ" ବୋଲି କେତେ ଲୋକ ମୋତେ ଉପଦେଶ ଦେଉଛନ୍ତି । ମୁଁ ସେମାନଙ୍କ ମତାମତକୁ ସ୍ୱୀକାର କରୁଛି । ତଥାପି ମୋର ଅନ୍ତରାତ୍ମା ମୋତେ ସବୁବେଳେ ଚେତାଇ ଦେଇ କହୁଛି—"ଏହା ଆଦୌ ଅନାସକ୍ତ କାର୍ଯ୍ୟ ନୁହେଁ । ମୁଁ ଆସକ୍ତିରେ ବଶୀଭୂତ ହୋଇ ଏହା କରୁଛି ।

"ତଥାପି ହେ ପରମାତ୍ମା ପଶୁପତି, ଏହି ମହାଶିବରାତ୍ରିରେ ମୁଁ ତୁମଠାରେ ପ୍ରାର୍ଥନା କରୁଛି, ମୋ' ଅନ୍ତଃକରଣରେ ଯେଉଁ ଆସକ୍ତି ତୁମେ ଭରିଦେଇଛ, ସେଥିରୁ ମୋତେ ଉଦ୍ଧାର କର । ମୁଁ ଯେଉଁ କାର୍ଯ୍ୟ ଆରମ୍ଭ କରିଛି, ସେଥିରୁ ମୋତେ ପାରି କରିଦିଅ । ନୋହିଲେ, ତୁମର ପବିତ୍ର ନାମରେ କଳଙ୍କ ରହିବ । ମୁଁ ଯେଉଁ କାର୍ଯ୍ୟ ଐଶ୍ୱର୍ଯ୍ୟ ବୋଲି ଭାବି ମୋହବଶତଃ ଆରମ୍ଭ କରିଛି, ତାହା ତୁମର ଶ୍ରୀପଦ୍ମରେ ଅର୍ପଣ କରୁଛି । ତୁମେ ମୋତେ ଏଥିରୁ ଉଦ୍ଧାର କର । ମୁଁ ପାପୀ, ପାପାତ୍ମା, ପାପସମ୍ଭବ ଓ ପାପକର୍ମୀ; ତୁମେ ନିଜ ମାହାତ୍ମ୍ୟର ରକ୍ଷା ଲାଗି ମୋ' କାର୍ଯ୍ୟ ସମ୍ପୂର୍ଣ୍ଣ କରାଇ ଦିଅ !

"ହେ ପଶୁପତି ଶିବ ବିଶ୍ୱନାଥ ଅଜ ଦାନୀ ଓଢର
ହେ ହର ଶଙ୍କର ଶମ୍ଭୁ ସତୀପତି ଅଲଖ ଅଗୋଚର ।
ହେ ତ୍ରିନେତ୍ର ତ୍ରିପୁରେଶ କାମରିପୁ ସବକେ ସ୍ୱାମୀ
ହେ ଅଜ ଅଚ୍ୟୁତ ଅଖିଳଜଗତପତି ଅନ୍ତର୍ଯ୍ୟାମୀ ।
ହେ ମା ଜଗଦମ୍ବାଜନନୀ ! ହେଟଲ ବାବାକେ କହୋ ?
କୌଁ ବନ୍ଧରେ ବୈଠେବନେ କ୍ୟୌଁ ନିଜ ଶିଶୁ ଦୁର୍ଗତି ସହୋ ।

ସଙ୍କୀର୍ତ୍ତନ ଭବନ, ପ୍ରତିଷ୍ଠାନପୁର
ଝୁସୀ—ପ୍ରୟାଗ
ଶ୍ରାବଣ ସଂ ୨୦୦୫ ବି,

ବିନୀତ
ପ୍ରଭୁଦତ୍ତ ବ୍ରହ୍ମଚାରୀ



# ବିଦୁର ମୈତ୍ରେୟ ସମ୍ବାଦ

"ଏବଂମେତତ୍ ପୁରାପୃଷ୍ଟୋ ମୈତ୍ରେୟୋ ଭଗବାନ୍ କିଲ
କ୍ଷତ୍ରା ବନଂ ପ୍ରବିଷ୍ଟେନ ତ୍ୟକ୍ତ୍ୱା ସ୍ୱଗୃହମୃଦ୍ଧିମତ୍ ।।
ଯଦ୍ୱା ଅୟଂ ମନ୍ତ୍ର କୃଦ୍ୱୋ ଭଗବାନଖିଳେଶ୍ୱରଃ ।
ପୌରବେନ୍ଦ୍ର ଗୃହଂହିତ୍ୱା ପ୍ରବିବେଶାତ୍ମସାତ୍ କୃତମ୍" ।

( ଭା; ୩ୟ ସ୍କନ୍ଦ, ୧ମ ଅଧ୍ୟାୟ )

ଛପ୍ପୟ

ଶ୍ରୀଶୁକ ବୋଲେ– ଭୂପ ! ବିଦୁରନେ ଯେ ହିଁ ବାତେଂ ।
ମୈତ୍ରେୟ ମୁନି ତେ ସୁନୀ କହେଁ ତିନହୀଁକୁଁ ତାତେଂ ।।
ରଜା ପୂଛେ—ପ୍ରଭୋ ! ବିଦୁରଜୀ କୀ ମୁନିବର ତେଂ ।
ଭେଁଟ ଭଇ କବ କାହାଁ ଗୟେ ଜବ ବନ କୂଁ ଘରତେଂ ।।
ଶ୍ରୀଶୁକ ବୋଲେ କା କହୁଁ ? ବିଦୁରଭବନ ମୁନିମନ ହରନ ।
ତିହୁଁ ତଜି ତୀରଥ କୁଁ ଗୟେ ଜହଁ ନିବସେ ରାଧାରମନ" ।।

ଅର୍ଥାତ୍—ଶ୍ରୀ ଶୁକଦେବ ପରୀକ୍ଷିତଙ୍କୁ କହୁଛନ୍ତି—"ହେ ରାଜନ, ଆପଣ ମୋତେ ଯେପରି ଗୂଢ଼ପ୍ରଶ୍ନ ପଚାରୁଛନ୍ତି, ଠିକ୍ ସେହିପରି ପ୍ରଶ୍ନ, ନିଜର ସମୃଦ୍ଧ ଗୃହ ତ୍ୟାଗ କରି ବିଦୁର ତୀର୍ଥଯାତ୍ରାରେ ଗମନ କରିଥିବା ସମୟରେ ମୈତ୍ରେୟଙ୍କୁ ପଚାରିଥିଲେ । ବିଦୁରଙ୍କ ଗୃହର ମହତ୍ତ୍ୱ ସମ୍ପର୍କରେ ଯେତେ କିଛି ବଖାଣିଲେ ମଧ୍ୟ ତାହା ଯଥେଷ୍ଟ ହେବ ନାହିଁ । ପାଣ୍ଡବଙ୍କ ପକ୍ଷରୁ ଦୂତ ହୋଇ ଭଗବାନ୍ ଶ୍ରୀକୃଷ୍ଣ ହସ୍ତିନାକୁ ଯାଇଥିବା ସମୟରେ ଦୁର୍ଯ୍ୟୋଧନର ରାଜମହଲ ତ୍ୟାଗ କରି ସେ ବିଦୁରଙ୍କ ଗୃହକୁ ନିଜର ଗୃହତୁଲ୍ୟ ମନେକରି ସେଠାରେ ଅବସ୍ଥାନ କରିଥିଲେ ।

ମନୁଷ୍ୟମାନେ ଯାହାରିକ ବିଷୟ ବସ୍ତୁ ପ୍ରତି ଅଧିକ ମୋହ ପ୍ରଦର୍ଶନ କରିଥାନ୍ତି । ସେମାନେ ଯଦି ସେତିକି ମୋହ ଭଗବାନ ଓ ତାଙ୍କ ଭକ୍ତମାନଙ୍କ ପ୍ରତି

ପ୍ରଦର୍ଶନ କରନ୍ତେ, ତେବେ ସେମାନେ ମହା-ମୋହରୁ ଉଦ୍ଧାର ପାଇ ଯାଆନ୍ତେ । ତୀର୍ଥ ସ୍ଥାନରେ ଆଉ ଅଛି କ'ଣ ? କେବଳ ରହିଛି—ସେହି ଭଗବତ୍ ସ୍ମୃତି ଅଯୋଧ୍ୟା ଚିତ୍ରକୂଟ ପ୍ରଭୃତି ସ୍ଥାନରେ କେବଳ ଶ୍ରୀରାମ ଓ ସୀତାଙ୍କର ସ୍ମୃତି ରହିଛି । ଯେଉଁଠାରେ ଭଗବାନଙ୍କର ପ୍ରତ୍ୟକ୍ଷ କିମ୍ବା ଅପ୍ରତ୍ୟକ୍ଷ ଲୀଳାର ସମ୍ବନ୍ଧ ରହିଛି, ତାହା ହିଁ ହେଉଛି—ତୀର୍ଥ କ୍ଷେତ୍ର ।

ସାଧାରଣତଃ ଅଜ୍ଞାନ ଲୋକମାନେ ନିଜ ନିଜର ଅଥବା ପରିବାରବର୍ଗର ସ୍ମୃତି ଭବନ ନିର୍ମାଣରେ ମାତି ସେଠାରେ ଗୋଟିଏ ମାଟିଆ ଲିଙ୍ଗରେ ମନ୍ଦିର ବା ଭବନ ନିର୍ମାଣ କରି ଦିଅନ୍ତି; କିନ୍ତୁ ସେମାନଙ୍କର ମନେ ରଖିବା ଉଚିତ୍—ଯେଉଁ ବ୍ୟକ୍ତି ବଞ୍ଚିଥିବା ବେଳେ ନିଜକୁ ଚିର ପରିଚିତ କରାଇବା ପାଇଁ କିଛି କରି ପାରିଲେ ନାହିଁ; ସେମାନଙ୍କ ମୃତ୍ୟୁ ପରେ ଗୋଟିଏ ବୃହତି ସ୍ମୃତିପୀଠ ନିର୍ମାଣରେ କଅଣ ଅଧିକ ହୋଇଯିବ ? ତେଣୁ ଭଗବାନ କିମ୍ବା ତାଙ୍କର ପ୍ରିୟତମ ଭକ୍ତମାନଙ୍କ ଉଦ୍ଦେଶ୍ୟରେ ସ୍ମୃତି ସୌଧ ନିର୍ମାଣ କରି, ନିଜକୁ ଭଗବତ ପ୍ରୀତିରେ ଉତ୍ସର୍ଗ କରି ପାରିଲେ ଜୀବନ ସାର୍ଥକ ହେବ ବୋଲି ବହୁ ଲୋକ ଜାଣିପାରୁ ନାହାନ୍ତି ।

ଯେଉଁମାନେ ପ୍ରକୃତରେ ମୋକ୍ଷ ପଥର ଯାତ୍ରୀ ହେବାକୁ ଇଚ୍ଛା କରନ୍ତି; ସେମାନେ କେବଳ ଭଗବାନ କିମ୍ବା ତାଙ୍କ ଭକ୍ତଙ୍କର ସ୍ମୃତିର କିଛି ଚିହ୍ନ ନିର୍ମାଣ କରି ସେହିଠାରେ ପରମାତ୍ମାଙ୍କ ଆରାଧନା କରନ୍ତି । ସେହି ସ୍ମୃତି ମନ୍ଦିରକୁ ଯୋଗୀ ଋଷି ଓ ମହାତ୍ମାମାନେ ଆସି ନିଜର ପାଦରଜଦ୍ୱାରା ସେ ସ୍ଥାନକୁ ପବିତ୍ର କରନ୍ତି । ଭଗବାନ ସେହିଠାରେ ଭକ୍ତ ରୂପରେ ସ୍ୱୟଂ ବିରାଜମାନ କରନ୍ତି ।

ତେଣୁ ହେ ରାଜନ, ମହାତ୍ମା ବିଦୁରଙ୍କ ଗୃହ ହେଉଛି—ପରମ ପୁଣ୍ୟପୀଠ । ସେଠାରେ ସ୍ୱୟଂ ଶ୍ରୀକୃଷ୍ଣ ବିରାଜମାନକରି ସେ ସ୍ଥାନର ମହତ୍ତ୍ୱ ବୃଦ୍ଧି କରିଥିଲେ । ସେହି ଗୃହ ଯୁଗ ଯୁଗ ଧରି କୋଟି କୋଟି ତୀର୍ଥର ମହତ୍ତ୍ୱ ବହନ କରି ରହିଛି ।

ଏହାଶୁଣି ପଚାରିଲେ ରାଜା ପରୀକ୍ଷିତ—"ମୁନିଶ୍ରେଷ୍ଠ, ମହାତ୍ମା ବିଦୁରଙ୍କ ସହିତ ମୈତ୍ରେୟଙ୍କର ସାକ୍ଷାତ୍ କେଉଁଠାରେ ହୋଇଥିଲା ? ସେ କ'ଣ ହସ୍ତିନା ଆସିଥିଲେ କି ?"

"ନାଃ....." ଉତ୍ତର ଦେଲେ ଶୁକଦେବ—"ସେ ହସ୍ତିନା ଆସି ନଥିଲେ । ସେ ହସ୍ତିନା ତ୍ୟାଗ କରି ଯେତେବେଳେ ହରଦ୍ୱାରର କୁଶାବର୍ତ୍ତ କ୍ଷେତ୍ରକୁ ଯାଇଥିଲେ; ସେତିକିବେଳେ ତାଙ୍କ ସହିତ ମୈତ୍ରେୟଙ୍କର ସାକ୍ଷାତ୍ ଓ ଆଲୋଚନା ହୋଇଥିଲା" ।

ଏହା ଶୁଣି ପରୀକ୍ଷିତ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ହେ ପ୍ରଭୋ, ଆପଣ ବିଦୁରଜୀଙ୍କର ଭବନଟିକୁ ଏତେ ପ୍ରଶଂସା କରୁଛନ୍ତି, ତାହା ଶୁଣି ମୁଁ ଆଶ୍ଚର୍ଯ୍ୟ

ହେଉଛି ! ବିଦୁର ଥିଲେ ମୋ' ପିତାମହଙ୍କର ପିତୃବ୍ୟ, କିନ୍ତୁ ସେ ଥିଲେ—ଦାସୀ-ପୁତ୍ର । ତାଙ୍କୁ ରାଜ୍ୟ ପକ୍ଷରୁ ଗୋଟିଏ ସୁନ୍ଦର ଭବନ ମିଳିଥିବ ! ଆପଣ ବିଦୁରଙ୍କ ଭବନର ଏତେ ପ୍ରଶଂସା କରୁଥିବା ସମୟରେ କୌରବଙ୍କ ଭବନର ନାମ ସୁଦ୍ଧା ଧରୁ ନାହାନ୍ତି କାହିଁକି ?''

ଏହା ଶୁଣିବା ମାତ୍ରେ ଶୁକଦେବଙ୍କ ପଦ୍ମ ନେତ୍ରରୁ ଅଶ୍ରୁବିନ୍ଦୁ ଝରି ତାଙ୍କ ବକ୍ଷସ୍ଥଳକୁ ସିକ୍ତ କରିଦେଲା । ସେ ଆଖିରୁ ଲୁହ ପୋଛି କହିଲେ—''ରାଜନ୍, ବିଦୁରଙ୍କ ଭବନ ସମ୍ବନ୍ଧରେ ଯେତେ ପ୍ରଶଂସା କରାଗଲେ ମଧ୍ୟ ତାହା ଯଥେଷ୍ଟ ନୁହେଁ । ଆହା, ସେ କେଡ଼େ ଭାଗ୍ୟଶାଳୀ ନ ଥିଲେ ? ତାଙ୍କ ଭବନଟି କେଡ଼େ ପବିତ୍ର ନ ଥିଲା ? ସେହି ଘରକୁ ବିଦୁର ଅନିଚ୍ଛାରେ ତ୍ୟାଗ କରି ଦେଇଥିଲେ । କାରଣ ଦୁଷ୍ଟମାନେ ତାଙ୍କୁ ସେ ଭବନ ତ୍ୟାଗ କରିବାକୁ ବାଧ୍ୟ କରିଥିଲେ । ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ସେହି ଭବନରେ ପାଦ ଦେଇ ତାକୁ ପବିତ୍ର କରିଥିଲେ । ସେଠାରେ ଶ୍ରୀକୃଷ୍ଣ କଦଳୀ ଚୋପା ଖାଇଥିଲେ'' ।

''ହଁ ମହାଭାଗ, ମୁଁ ଏହା ମହାଭାରତ ପ୍ରସଙ୍ଗରେ ଶୁଣିଛି । ତଥାପି ଆପଣ ସେହି ପ୍ରସଙ୍ଗ ମୋ' ଆଗରେ ବ୍ୟାଖ୍ୟାନ କରନ୍ତୁ !

ଏହାଶୁଣି ଶୁକଦେବ କହିଲେ—''ରାଜନ୍, ଆପଣ ପରମ ସୌଭାଗ୍ୟ-ଶାଳୀ । କାରଣ କୃଷ୍ଣ କଥା ଶୁଣିବା ମାତ୍ରେ ଆପଣ ପୁଣି ସେହି କଥା ବିସ୍ତୃତ ଭାବରେ ଶୁଣିବାକୁ ଇଚ୍ଛା କରୁଛନ୍ତି । ମହାଶୟ, ଏହା ଗୋଟିଏ ବିସ୍ତୃତ କାହାଣୀ । ତେଣୁ ମୁଁ ତାକୁ ସଂକ୍ଷେପରେ ଶୁଣାଇବି ।

''ଅଜ୍ଞାତବାସ ଶେଷ ହେବା ପରେ ଆପଣଙ୍କ ପିତାମହମାନେ ନିଜ ରାଜ୍ୟ ଫେରି ପାଇବା ଲାଗି ଉଦ୍ୟମ କଲେ । ଶାନ୍ତିପୂର୍ଣ୍ଣ ଉପାୟରେ ସେମାନଙ୍କ ଉଦ୍ୟୋଗ ସଫଳ ନ ହେବାରୁ, ସେମାନେ ଯୁଦ୍ଧ ପାଇଁ ସୈନ୍ୟ ସଂଗ୍ରହ କରିବାକୁ ଲାଗିଲେ, କାରଣ ଜାତି ଦ୍ରୋହ ଓ କୁଳନାଶ ଲାଗି ସେ ଅତ୍ୟନ୍ତ ଭୟ କରୁଥିଲେ । ତାଙ୍କର ଅଭିପ୍ରାୟ ଜାଣି ଭଗବାନ ଶ୍ରୀକୃଷ୍ଣ କହିଲେ—''ମହାରାଜ, ଆପଣ ଆଦୌ ଚିନ୍ତା କରନ୍ତୁ ନାହିଁ । ମୁଁ ସବୁ ପ୍ରକାର ଚେଷ୍ଟା କରି କୌରବମାନଙ୍କୁ ବୁଝାଇବି । ମୋର ସମସ୍ତ ପ୍ରକାର ଚେଷ୍ଟା ସତ୍ତ୍ୱେ ସେମାନେ ନ ବୁଝିଲେ ମୁଁ ସେହିଠାରେ ସେମାନଙ୍କୁ ମାରି ପକାଇବି ! ମୋ' ଉପସ୍ଥିତିରେ ଆପଣ ଆଦୌ ଚିନ୍ତିତ ହୁଅନ୍ତୁ ନାହିଁ ।

ଆଖିରେ ଲୁହ ଛଳ ଛଳ କରି କହିଲେ ଧର୍ମରାଜ ''ମଧୁସୂଦନ, ଆପଣ ଆମର ଏକମାତ୍ର ଭରସା । ଆମେମାନେ ଆପଣଙ୍କର ପାଦପଦ୍ମକୁ ଆଶ୍ରୟ କରି ରହିଛୁ । ପକ୍ଷୀ ଯେପରି ତା'ର ଅଣ୍ଡାକୁ ରକ୍ଷା କରେ, ଆପଣ ଠିକ୍ ସେହିପରି ସହୃ

ସହକାରେ ଆମମାନଙ୍କୁ ରକ୍ଷା କରୁଛନ୍ତି । ହେ ଦ୍ୱାରକାଧୀଶ, ମୁଁ ଆପଣଙ୍କୁ ଦୂତ ରୂପେ ହସ୍ତିନାକୁ ପଠାଇବା ଲାଗି ଚାହୁଁ ନାହିଁ । ଏହା ଆପଣଙ୍କ ମର୍ଯ୍ୟାଦାର ଅନୁରୂପ କାର୍ଯ୍ୟ ନୁହେଁ । ଆପଣ ଅନ୍ୟ କୌଣସି ବୁଦ୍ଧିମାନ ଲୋକକୁ ଦୂତରୂପେ କୌରବମାନଙ୍କ ନିକଟକୁ ପଠାନ୍ତୁ ।"

ଏହା ଶୁଣି ମେଘମନ୍ଦ୍ର ସ୍ୱରରେ କହିଲେ ବାସୁଦେବ—"ରାଜନ୍, ଆପଣ ଏପରି କ'ଣ କହୁଛନ୍ତି ? ନିଜ କାର୍ଯ୍ୟରେ କେବେହେଲେ ଆତ୍ମମର୍ଯ୍ୟାଦାର ବିଚାର କରାଯାଏ ନାହିଁ । ନିଜ ଶରୀରର ମଳ ମୂତ୍ରକୁ କେହି କେବେହେଲେ ଘୃଣା କରେ ନାହିଁ । ଆପଣଙ୍କ କାର୍ଯ୍ୟକୁ ମୁଁ ମୋର ନିଜର କାର୍ଯ୍ୟ ବୋଲି ମନେ କରୁଛି । ଏପରି ସଙ୍କଟମୟ ମୁହୂର୍ତ୍ତରେ ମୁଁ ଯଦି ସନ୍ଧି କରାଇ ପାରେ, ତେବେ ମୁଁ ସଂସାରରେ ଅଶେଷ କୀର୍ତ୍ତି ଅର୍ଜନ କରିବି । ଆପଣ ପ୍ରସନ୍ନ ହେଲେ ମୁଁ ଅତ୍ୟନ୍ତ ଆନନ୍ଦିତ ହେବି । ଆପଣଙ୍କ ଆନନ୍ଦ ଲାଗି, ମୁଁ ହସି ହସି ଅଗ୍ନିକୁ ମଧ୍ୟ ଡେଇଁ ପଡ଼ିବି ।"

ଶୋକାପ୍ଲୁତ ମନରେ ଧର୍ମରାଜ କହିଲେ—"ହେ ବାସୁଦେବ, ଆପଣ ନିଜ ଇଚ୍ଛାନୁସାରେ କାର୍ଯ୍ୟ କରନ୍ତୁ । ଆପଣ ଯାହା କରିବେ, ସେଥିରେ ଆମର ମଙ୍ଗଳ ହେବ ।"

ଧର୍ମରାଜଙ୍କ ବାକ୍ୟ ଶୁଣି ଶ୍ରୀକୃଷ୍ଣ ହସ୍ତିନାକୁ ଯିବା ଲାଗି ପ୍ରସ୍ତୁତ ହେଲେ । ସେ ନିତ୍ୟକର୍ମରୁ ନିବୃତ୍ତ ହେବାମାତ୍ରେ ବେଦଜ୍ଞ ବ୍ରାହ୍ମଣମାନେ ମଙ୍ଗଳବାଦ୍ୟ ପାଠ କରିବାକୁ ଲାଗିଲେ । ଭଗବାନ୍ ଶ୍ରୀକୃଷ୍ଣ ମଧ୍ୟ ମସ୍ତକ ଅବନତ କରି, ବ୍ରାହ୍ମଣମାନଙ୍କ ପାଦଧୂଳି ନେଇ ମୁଣ୍ଡରେ ଲଗାଇଲେ । ସେହି ସମୟରେ ପାଣ୍ଡବ ତଥା ଦ୍ରୌପଦୀ ତାଙ୍କ ନିକଟରେ ବିନୀତ ଭାବରେ ଛିଡ଼ା ହୋଇ ରହିଲେ । ତାହା ଦେଖି ଶ୍ରୀକୃଷ୍ଣ ଦୃଢ଼ତାର ସହିତ କହିଲେ—"ମୁଁ ଆପଣମାନଙ୍କର ମଙ୍ଗଳ ଲାଗି ସମସ୍ତ ପ୍ରକାର ଚେଷ୍ଟା କରିବି । ମୁଁ ଧର୍ମରାଜ ଯୁଧିଷ୍ଠିରଙ୍କୁ ସମ୍ରାଟ୍ କରିବାକୁ ଚାହେଁ । ତାଙ୍କୁ ସମ୍ରାଟ ପଦରେ ଅଭିଷିକ୍ତ ହୋଇଥିବାର ଦେଖିଲେ ମୋ' ମନ ଶାନ୍ତ ହେବ ।"

ଦ୍ରୌପଦୀ ଆଖିରୁ ଲୁହ ଝରାଇ କହିଲେ—"ପ୍ରଭୋ, ଆପଣ ମୋର ଉନ୍ମୁକ୍ତ ବେଣୀ ସମ୍ବନ୍ଧରେ ନିଶ୍ଚୟ ବିଚାର କରିବେ । କୁରୁସଭା ·ମଧ୍ୟରେ ଆପଣ ବସ୍ତ୍ରରୂପ ଧାରଣ କରି ମୋର ମାନ ମହତ ରକ୍ଷା କରିଥିଲେ । ମୋ' ପ୍ରତିଜ୍ଞା ବିଷୟ ଆପଣ ଯେପରି ଭୁଲି ନ ଯାନ୍ତୁ..." ।

ଶ୍ରୀକୃଷ୍ଣ ଟିକିଏ ବିଚଳିତ ହେଲା ପରି କହିଲେ—"ମୁଁ ହସ୍ତିନାକୁ ବାହାରି ଥିବା ସମୟରେ କେହି ମୋତେ କିଛି କହନ୍ତୁ ନାହିଁ । ମୋର ସବୁ କଥା ମନେ ଅଛି... ।"

ଏହିପରି କହି ଶ୍ରୀକୃଷ୍ଣ ଦିବ୍ୟରଥରେ ବସି ହସ୍ତିନା ଅଭିମୁଖେ ପ୍ରସ୍ଥାନ କଲେ । ଶ୍ରୀକୃଷ୍ଣଙ୍କ ଆଗମନ ବାର୍ତ୍ତା ଶୁଣି ଧୃତରାଷ୍ଟ୍ର ଅତ୍ୟନ୍ତ ବିଚଳିତ ହୋଇ ପଡ଼ିଲେ । ସେ ଭୀଷ୍ମ, ଦ୍ରୋଣ ଓ ବିଦୁରଙ୍କ ସହିତ ପରାମର୍ଶ କରି ଶ୍ରୀକୃଷ୍ଣଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଜଣାଇବା ଲାଗି ଆୟୋଜନ କରିବାକୁ ଲାଗିଲେ । ହସ୍ତିନାପୁରର ରାସ୍ତା, ଘାଟ, ପୁର, ପାଟଣା ତୋରଣାଦିରେ ସଜ୍ଜିତ ହେବାକୁ ଲାଗିଲା । ସର୍ବତ୍ର ସୁଗନ୍ଧ ଦ୍ରବ୍ୟରେ ଆମୋଦିତ ହୋଇ ଉଠିଲା ।

ହସ୍ତିନାର ରାଜପଥରେ ଶ୍ରୀକୃଷ୍ଣଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରାଗଲା । କୁଳକନ୍ୟାମାନେ ପ୍ରାସାଦ ଶିଖରରୁ ଶ୍ରୀକୃଷ୍ଣଙ୍କ ମସ୍ତକରେ ପୁଷ୍ପ ବୃଷ୍ଟି କରିବାକୁ ଲାଗିଲେ ଏବଂ ଶ୍ରେଷ୍ଠ ଶ୍ରେଷ୍ଠ କନ୍ୟାମାନେ ଭଗବାନଙ୍କ ଗଳାରେ ପୁଷ୍ପମାଲ୍ୟ ପିନ୍ଧାଇ ଦେଲେ । ଶ୍ରୀକୃଷ୍ଣ ସମସ୍ତଙ୍କଠାରୁ ସମ୍ବର୍ଦ୍ଧନା ପାଇ ଧୃତରାଷ୍ଟ୍ରଙ୍କ ବାସଭବନରେ ଉପସ୍ଥିତ ହେଲେ । ଧୃତରାଷ୍ଟ୍ର ଆସନରୁ ଉଠି ଶ୍ରୀକୃଷ୍ଣଙ୍କୁ ସମ୍ବର୍ଦ୍ଧନା ଜଣାଇବା ସଙ୍ଗେ ସଙ୍ଗେ ତାଙ୍କୁ ଅର୍ଚ୍ଚନା କରିବାକୁ ଲାଗିଲେ । ଦୁର୍ଯ୍ୟୋଧନ ମଧ୍ୟ ଭଗବାନଙ୍କୁ ଭୋଜନ ପାଇଁ ନିମନ୍ତ୍ରଣ ଜଣାଇଲେ; କିନ୍ତୁ ପାର୍ଥସାରଥି ଦୁର୍ଯ୍ୟୋଧନଙ୍କ ନିମନ୍ତ୍ରଣ ସ୍ୱୀକାର ନକରି, ନିଜ ରଥରେ ବସି ବିଦୁରଙ୍କ ବାସଭବନକୁ ଚାଲିଗଲେ ।

ସେତେବେଳେ ବିଦୁର ନିଜ ବାସଭବନରେ ନଥିଲେ । ତାଙ୍କ ପତ୍ନୀ ଗଙ୍ଗା ରଜରେ ନିଜର କେଶ ସମ୍ମାର୍ଜନ କରୁଥିଲେ । କାରଣ, ଗଙ୍ଗାରଜ କେଶ ପକ୍ଷରେ ଅତ୍ୟନ୍ତ ହିତକର । ଗଙ୍ଗାରଜ କେଶରେ ଲଗାଇଲେ ତାହା ସ୍ନିଗ୍ଧ ତଥା ଅଧିକ ଶ୍ୟାମଳ ହୋଇଥାଏ ଏବଂ କେଶର ରୁକ୍ଷତା ମଧ୍ୟ ଦୂର ହୋଇଯାଏ । ତାହା କେଶର ମଳ ଦୂର କରିବା ସଙ୍ଗେ ସଙ୍ଗେ ମନ ମଧ୍ୟରୁ ମଳିନତା ଦୂର କରିଦିଏ । ଯେଉଁଠାରେ ଗଙ୍ଗାରଜ ନ ମିଳେ, ସେଠାରେ ସ୍ତ୍ରୀ ଲୋକମାନେ ପ୍ରହ୍ଲାଦଙ୍କ ଜନ୍ମ ସ୍ଥାନ ମୁଲତାନର ମୃତ୍ତିକା ଲଗାଇ କେଶ ପ୍ରକ୍ଷାଳନ କରନ୍ତି ।

ଯେଉଁ ସ୍ଥାନରେ ଉପରୋକ୍ତ ଦୁଇ ପ୍ରକାର ଦ୍ରବ୍ୟ ମିଳେ ନାହିଁ, ସେଠାରେ ସ୍ତ୍ରୀମାନେ ସ୍ୱଚ୍ଛଜଳାଶୟର ମୃତ୍ତିକା ଲଗାଇ କେଶ ପ୍ରକ୍ଷାଳନ କରିବା ପରେ, ପୁଣି ଅଁଳା ଜଳରେ କେଶ ଧୋଇ ଦିଅନ୍ତି । ଅଁଳା ଜଳ କେବଳ କେଶ ପକ୍ଷରେ ହିତକର ନୁହେଁ, ତାହା ଅନ୍ତରକୁ ଶୁଦ୍ଧ କରିଦିଏ । ଆୟୁର୍ବେଦ ଓ ଧର୍ମଶାସ୍ତ୍ରରେ ଜଳର ଉପକାରିତା ସମ୍ବନ୍ଧରେ ଅନେକ ବାକ୍ୟ ରହିଛି । ଅଁଳା ଜଳରେ କେଶ ଧୋଇବା ପରେ, ସ୍ତ୍ରୀମାନେ ଅଗୁରୁ ଧୂମରେ କେଶ ଗୁଚ୍ଛକୁ ଶୁଷ୍କ କରି ଦିଅନ୍ତି । ତା' ଫଳରେ କେଶ ଚିକ୍କଣ ତଥା ଶ୍ୟାମଳ ବର୍ଣ୍ଣ ଧାରଣ କରି ବହୁଦିନ ସ୍ଥାୟୀ ହୋଇଥାଏ ।

ବିଦୁରଙ୍କ ଗୃହରେ ଶ୍ରୀକୃଷ୍ଣ ପ୍ରବେଶ କରିବା ସମୟରେ ବିଦୁରଙ୍କ ପତ୍ନୀ ଗଙ୍ଗାରଜ ଶରୀରରେ ଲେପନ କରିବା ସଙ୍ଗେ ସଙ୍ଗେ ଉଲଗ୍ନା ହୋଇ ସ୍ନାନ କରୁଥିଲେ । ହଠାତ୍‌କେବେଳେ ଶ୍ରୀକୃଷ୍ଣଙ୍କ ଡାକ ଶୁଣି ସେ ନିଜର ବାହ୍ୟଜ୍ଞାନ ହରାଇ ବସିଲେ । ସେତେବେଳେ ନିଜର ଅସ୍ତିତ୍ୱ ତଥା ଅବସ୍ଥା ସମ୍ବନ୍ଧରେ ତାଙ୍କର ଧାରଣା ହେଲା ନାହିଁ । ସେ ଶ୍ରୀକୃଷ୍ଣଙ୍କ ପ୍ରତି ବାତ୍ସଲ୍ୟ, ତଦଗତମନା ହୋଇ ଉଠିଲେ । ଶରୀରର ନଗ୍ନତା ପ୍ରତି ତାଙ୍କର ଧାରଣା ରହିଲା ନାହିଁ । ସେ ତଦ୍‌ଗତମନା ହୋଇ ସେହି ଉଲଗ୍ନାବସ୍ଥାରେ ଧାଇଁ ଆସି ଦୁଆର ଖୋଲିଦେଲେ । ବିଦୁରଙ୍କ ପତ୍ନୀଙ୍କୁ ସେପରି ଅବସ୍ଥାରେ ଦେଖି ଶ୍ରୀକୃଷ୍ଣ ବ୍ୟସ୍ତଭାବ ସହିତ ନିଜର ପୀତାମ୍ବର ତାଙ୍କୁ ପିନ୍ଧାଇ ଦେଇ ସେହିଠାରେ ଗୋଟିଏ ସାଧାରଣ ଆସନରେ ବସି ପଡ଼ିଲେ । ସର୍ବାନ୍ତର୍ଯ୍ୟାମୀ ପ୍ରଭୁ ଶ୍ରୀକୃଷ୍ଣ ବିଦୁରପତ୍ନୀଙ୍କର ଅବସ୍ଥା ଜାଣି ପାରି ଅତ୍ୟନ୍ତ ପ୍ରୀତ ହୋଇଥିଲେ ।

ଶ୍ରୀକୃଷ୍ଣ ସେଠାରେ ବସି ପଡ଼ି କିଛି ଖାଇବା ଲାଗି ମାଗିଲେ । ଏହା ଶୁଣି ବିଦୁରଙ୍କ ପତ୍ନୀ ଭାବିଲେ—"ଆହା, ମୋ' ଶ୍ୟାମ ସୁନ୍ଦର ଭୋକିଲା ଅଛନ୍ତି, ମୁଁ ତାଙ୍କୁ କ'ଣ ଖାଇବାକୁ ଦେବି ? ଏଡ଼େ ବିଶାଳ ରାଜପ୍ରାସାଦରେ ତାଙ୍କୁ କେହି ଖାଇବାକୁ ଦେଇ ପାରିଲେ ନାହିଁ ? ସେ ଧାଇଁ ଧାଇଁ ଘର ଭିତରକୁ ପଶିଯାଇ କିଛି କଦଳୀ ନେଇ ଆସି, ନିଜର ଆରାଧ୍ୟ ଦେବଙ୍କୁ ଖାଇବା ଲାଗି ଦେଲେ । ସେ କୃଷ୍ଣଗତମନା ହୋଇ ଥିବାରୁ, ତାଙ୍କର ବାହ୍ୟ ଜ୍ଞାନ ନଥିଲା । ସେ ନିଜର ବାଲି ଜରଜର ହାତରେ କଦଳୀରୁ ଚୋପା ଛଡ଼ାଇ ଭିତରର ସିନ୍ଧ ଅଂଶ-ତକ ତଳକୁ ଫିଙ୍ଗି ଦେଇ ଚୋପାତକ ଶ୍ରୀକୃଷ୍ଣଙ୍କୁ ଖାଇବା ଲାଗି ଦେଲେ । ଶ୍ରୀକୃଷ୍ଣଙ୍କ ମନରେ ତିଳେ ହେଲେ ବିକାର ଜାତ ହେଲା ନାହିଁ । ସେ ବାଲିଜରଜର କଦଳୀ ଚୋପାତକ ପରମ ଆନନ୍ଦରେ ଖାଇବାକୁ ଲାଗିଲେ ।

ଏହି ସମୟରେ ବିଦୁର ଶ୍ରୀକୃଷ୍ଣଙ୍କ ଆଗମନ ବାର୍ତ୍ତା ପାଇ ଶୀଘ୍ର ଘରକୁ ଆସି ନିଜ ପତ୍ନୀର ଆଚରଣରେ ହର୍ଷ, ବିସ୍ମୟ ଓ ଲଜ୍ଜାରେ ଅଭିଭୂତ ହୋଇ ପଡ଼ି କହିଲେ—"ଯାଃ, ତୁ ଗୋଟିଏ ପାଗିଳୀ । ତୋର ମୁଣ୍ଡ ଠିକ୍ ନାହିଁ, ତୁ ଘର ଭିତରକୁ ଯାଃ...." ।

ହଠାତ୍ ବିଦୁରଙ୍କ ପତ୍ନୀ ବାହ୍ୟଜ୍ଞାନ ଫେରି ପାଇଲେ । ସେ ନିତାନ୍ତ ଲଜ୍ଜିତା ହୋଇ ଘରଭିତରକୁ ପଶିଯାଇ ଦ୍ୱାର ବନ୍ଦ କରି ଦେଇ କାନ୍ଦିବାକୁ ଲାଗିଲେ ।

ଭଗବାନ ଶ୍ରୀକୃଷ୍ଣ ଖାଇବା ପାଇଁ ହାତ ବଢ଼ାଇ ଥିଲେ । ବିଦୁର ଶୀଘ୍ର ଶୀଘ୍ର ହାତ ଗୋଡ଼ ଧୋଇ କଦଳୀ ଗୁଡ଼ିକ ପରିଷ୍କାର ଜଳରେ ଧୂଆ ଧୋଇ କରି,

ସେ ଗୁଡ଼ିକ ଛଡ଼ାଇ ତାଙ୍କ ହାତରେ ସମର୍ପଣ କଲେ । ଶ୍ରୀକୃଷ୍ଣ ସେ ଗୁଡ଼ିକୁ ଖାଇ କହିଲେ—"ବିଦୁର, ଆପଣ ଯେତେ କ୍ଷୋଭ ନ ଭାବିବେ, ଗୋଟିଏ କଥା କହିବି" ।

ବିଦୁର ହାତଯୋଡ଼ି କହିଲେ—"ମହାପ୍ରଭୋ, ଆଜ୍ଞା କରନ୍ତୁ" ।

ଶ୍ରୀକୃଷ୍ଣ ହସି ହସି କହିଲେ—"ଆପଣଙ୍କ ଭକ୍ତିର ତୁଳନା ନାହିଁ; କିନ୍ତୁ ମୁଁ ଆପଣଙ୍କ ପତ୍ନୀଙ୍କ ହାତରୁ ଖାଉଥିବା ବେଳେ ମୋତେ ଚୋପା ଗୁଡ଼ିକ ଯେତେ ମିଠା ଲାଗୁଥିଲା, ଆପଣଙ୍କ ପ୍ରଦତ୍ତ କଦଳୀରୁ ମୁଁ ସେପରି ଆନନ୍ଦ ପାଇ ପାରୁନାହିଁ" !

ଏହା ଶୁଣିବା କ୍ଷଣି ବିଦୁରଙ୍କ ଆଖିରୁ ଲୁହ ଝରି ପଡ଼ିଲା । ସେ ଅନୁଭବ କଲେ— ମୋ ପତ୍ନୀ ଆଦୌ ଭୁଲ କରୁ ନଥିଲା, ମୁଁ ପ୍ରକୃତରେ ଭୁଲ କରୁଛି । ଯେଉଁ ପ୍ରଭୁ ସମଗ୍ର ବିଶ୍ୱକୁ ପରିତୃପ୍ତ କରି ପାରୁଛନ୍ତି, ସେ କିପରି ମୋ' ଦ୍ୱାରା ପ୍ରଦତ୍ତ କଦଳୀରେ ସନ୍ତୁଷ୍ଟ ହୋଇ ପାରନ୍ତେ ? ଏ କେବଳ 'ଭାବ'ରେ ପରିତୃପ୍ତ ହୁଅନ୍ତି । ମୋ' ସ୍ତ୍ରୀ ଯେପରି ଭାବରେ ତଦ୍‌ଗତମନା ହୋଇ ପ୍ରଭୁଙ୍କୁ ଖୁଆଇ ଥିଲେ, ମୁଁ ସେପରି କରି ପାରୁନାହିଁ । ସେ ଭୂମିରେ ଲୋଟି ଯାଇ ଗଦ୍‌ଗଦ୍ କଣ୍ଠରେ କହିଲେ—"ଭକ୍ତବତ୍ସଳ, ଆପଣଙ୍କ କୃପା ଅସୀମ, ଆପଣ କେବଳ ସ୍ନେହ ଓ ଭାବରେ ବଶ ହୋଇ ପାରନ୍ତି । ମୁଁ ଅଧମ, ତାହା ବୁଝିପାରିଲି ନାହିଁ । ମୁଁ ଗରିବ କ'ଣ ବା ଦେଇ ପାରିବି ? ଆପଣ ତହିଁରେ ସନ୍ତୁଷ୍ଟ ନୁହନ୍ତି । ଦୁର୍ଯ୍ୟୋଧନର ରାଜପ୍ରାସାଦରେ କେଉଁ ଦ୍ରବ୍ୟ ବା ଅଭାବ ଥିଲା ? ତାକୁ ଛାଡ଼ି କେବଳ ସ୍ନେହରେ ବଶବର୍ତ୍ତୀ ହୋଇ ମୋ' କୁଡ଼ିଆରେ ପାଦ ଦେଇଛନ୍ତି । ଆପଣ କୃପା କରି ଯାହାର 'ଭାବ'ରେ ସନ୍ତୁଷ୍ଟ ହୁଅନ୍ତି, ତା'ର ଠାରୁ ଦ୍ରବ୍ୟ ଗ୍ରହଣ କରନ୍ତି ।"

ଶ୍ରୀକୃଷ୍ଣ ବିଦୁରଙ୍କର ବିନୟପୂର୍ଣ୍ଣ ବାକ୍ୟ ଶୁଣି କହିଲେ—"ଆପଣ ମୋର ଆତ୍ମା । ମୁଁ ଏହାକୁ ନିଜର ଘର ବୋଲି ମନେ କରି, ଆପଣଙ୍କ ଅନୁପସ୍ଥିତିରେ ମଧ୍ୟ ଏଠାକୁ ଆସିଛି ।"

ବିଦୁର ଭଗବାନ୍‌ଙ୍କର ଅମୃତମୟ ବାଣୀ ଶୁଣି ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ଅନେକ ପ୍ରକାର ବ୍ୟଞ୍ଜନ ଓ ଭୋଜ୍ୟ ପଦାର୍ଥ ଆଣି ତାଙ୍କ ଆଗରେ ପରଷି ଦେଲେ । ଭଗବାନ ଶ୍ରୀକୃଷ୍ଣ ପ୍ରଥମେ ସେହି ପଦାର୍ଥ ଗୁଡ଼ିକ ବ୍ରାହ୍ମଣ ଓ ଅତିଥିମାନଙ୍କୁ ଖାଇବାକୁ ଦେଇ, ପରେ ସେହି ପଦାର୍ଥ ଗୁଡ଼ିକ ଭୋଜନ କରି ଆପ୍ୟାୟିତ ହେଲେ ।"

"ହେ ରାଜନ୍ ପରୀକ୍ଷିତ, ଯେଉଁ ଘରେ ଭଗବାନ୍ ବିନା ନିମନ୍ତ୍ରଣରେ ପଦାର୍ପଣ କରିଥିଲେ, ଯେଉଁଠାରେ ତାଙ୍କର ପାଦଧୌତ ଜଳ ଏବଂ ଜଗଦ୍‌ବନ୍ଦ୍ୟ ପାଦପଦ୍ମ ପଡ଼ିଥିଲା, ସେ ଘରଟି ହେଉଛି ଜଗତର ପବିତ୍ରତମ ସ୍ଥଳ । ସେହି ଦିନରେ ବିଦୁର ପ୍ରକୃତରେ ହୋଇଟି କୃତକୃତ୍ୟ ହୋଇଥିଲେ । ସେହି ଦିବ୍ୟ ଭବନକୁ ଛାଡ଼ି

ମହାତ୍ମା ବିଦୁର, ଦୁଷ୍ଟମାନଙ୍କ ଅତ୍ୟାଚାରରେ ଅତିଷ୍ଠ ହୋଇ, ତୀର୍ଥ ଯାତ୍ରାରେ ଚାଲି ଯାଇଥିଲେ । ସେହି ଯାତ୍ରାରେ ମୈତ୍ରେୟଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା ।"

ଏହା ଶୁଣି ପରୀକ୍ଷିତ ପଚାରିଲେ—"ହେ ମହର୍ଷି, ମୋତେ ଆପଣ ବିଦୁର ମୈତ୍ରେୟଙ୍କ ସମ୍ବାଦ ଶୁଣାନ୍ତୁ ।"

"ଆଚ୍ଛା ରାଜନ୍, ଆପଣ ସେହି ପାବନଚରିତ ଶୁଣିବା ଲାଗି ଏତେ ବ୍ୟାକୁଳ କାହିଁକି ?"

"ଭଗବନ୍.... ।" କହିଲେ ରାଜା ପରୀକ୍ଷିତ—"ମହାମୁନି ମୈତ୍ରେୟ ଥିଲେ ଜ୍ଞାନର ନିଧି ଓ ଭକ୍ତିର ଭଣ୍ଡାର । ଏହା ମୁଁ ସମସ୍ତଙ୍କ ମୁଖରୁ ଶୁଣି ଆସୁଛି । ମହାତ୍ମା ବିଦୁରଙ୍କ ସମ୍ବନ୍ଧରେ କହିବାର କଅଣ ଅଛି ? ମୁଁ ଜନ୍ମକାଳରୁ ତାଙ୍କ ମହିମା ସମ୍ବନ୍ଧରେ ଶୁଣି ଆସୁଛି । ସେଇଥିପାଇଁ ସେ ଦୁହିଁଙ୍କ ସମ୍ବାଦ ଶୁଣିବା ଲାଗି ମୋର ଉତ୍ସାହ ଜାତ ହୋଇଛି । ସେ ଦୁଇଜଣଙ୍କ ଆଲୋଚନା ସାଧାରଣ ଧରଣର ହୋଇ ନଥିବ; ତାହା ନିଶ୍ଚିତ ଭାବରେ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ହୋଇଥିବ ।"

ପରୀକ୍ଷିତଙ୍କ ମୁଖରୁ ଆଗ୍ରହ ତଥା ଅନୁରୋଧ ପୂର୍ଣ୍ଣ ବାଣୀ ଶୁଣି ତାଙ୍କୁ ପ୍ରଶଂସା କରି କହିଲେ ଶୁକଦେବ—"ହେଉ ମହାଶୟ, ମୁଁ ଆପଣଙ୍କୁ ସେହି ମହତ୍ତ୍ୱପୂର୍ଣ୍ଣ ଆଲୋଚନା ଶୁଣାଇବି । ଆପଣ ଏକାଗ୍ରମନା ହୋଇ ତାହା ଶ୍ରବଣ କରନ୍ତୁ ।

"ରାଜନ୍ ! ବନ କେ ଦୂତ୍ ଦେବକୀନନ୍ଦନ୍ ଆଯେ
କୌରବ କରି ସତ୍କାର୍ ରାଜ ମହଲନ ମହିଁ ଲାଯେ ॥
ନାନା ବ୍ୟଞ୍ଜନ୍ ଧରେ ନ ତନ୍ କୀ ଓର୍ ନିହାରେ
କରିକେ ଶିଷ୍ଟାଚାର ବିଦୁରକେ ଭୱନ୍ ସିଧାରେ ॥
ପତ୍ନୀ ପଗଲୀ ପ୍ରେମକୀ ଛିଲ୍‌କା ହରି ହିଁ ଜମା ରହୀ
ବିଦୁର ମିଶୀ କେଲା ଦଇ ଖାଇ କହୀ ବୋ ରସ୍‌ନହିଁ ॥



# ଧୃତରାଷ୍ଟ୍ରଙ୍କୁ ବିଦୁରଙ୍କର ଶୁଭ ସନ୍ଦେଶ

ଯଦୋପହୂତୋ ଭବନଂ ପ୍ରବିଷ୍ଟୋ—
ମନ୍ତ୍ରାୟ ପୃଷ୍ଟଃ କିଲ ପୂର୍ବଜେନ ।
ଅଥାହ ତନ୍ମନ୍ତ୍ରଦୃଶାଂ ବରୀୟାନ୍
ଯନ୍ମନ୍ତ୍ରିଣୋ ବୈଦୁରିକଂ ବଦନ୍ତି ॥

(ଭା. ୩ । ୧ । ୧୦)

"ତା ଘର ମହଁ ବସି ବିଦୁର ବନ୍ଧୁକୁଁ ସମ୍ମତ ଦେଓଂ ।
ବିଦୁର ନୀତି ବିଖ୍ୟାତ ଜାହି ସଜ୍ଜନ ସବ ସେଓଂ ॥
ପୁଛ୍ଛୀ ଜବ ଧୃତରାଷ୍ଟ୍ର ସତ୍ୟ ସମ୍ମତ ଯୁହ ଦୀହ୍ନୀଂ ।
ରାଜନ୍ ! ଘୋର ଅନୀତି ବନ୍ଧୁ ପ୍ରତିନ ସଁଗ କୀହ୍ନୀଂ ॥
ଭ୍ରାତା ଭୂତଲେ ଗଇତେ ଆଗେ କୀ ସୋଚେ୍ ସଇ ।
ଧର୍ମରାଜ ତେ ରାଜ କୁଁ ଦେହୁ ଗଇ ସୋ ତୋ ଗଈ'॥

ଅର୍ଥାତ୍—ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜନ୍ ଧୃତରାଷ୍ଟ୍ର ବିଦୁରଙ୍କୁ ଡକାଇ ଆଣି ତାଙ୍କଠାରୁ ସମ୍ମତି ଶୁଣିବା ଲାଗି ଆଗ୍ରହ ପ୍ରକାଶ କଲେ । ଅନ୍ଧରାଜାଙ୍କ ଅନୁରୋଧରେ ସେ ଯେଉଁ ନୀତି ବ୍ୟାଖ୍ୟା କରିଥିଲେ ତାହା ଜନସମାଜରେ 'ବିଦୁରନୀତି' ନାମରେ ନାମିତ ହୋଇଛି ।

ଜୀବ ହେଉଛି—ଅଲଙ୍କ; ସେ ସଂସାରରେ ପ୍ରବିଷ୍ଟ ହେବା ମାତ୍ରେ ସଦା-ସର୍ବଦା ଶଙ୍କାକୁଳ ହୋଇ ରହିଥାଏ । ନାନା ପ୍ରକାର ସନ୍ଦେହ ଓ ଆଶଙ୍କା ତାକୁ ଘେରି ରହିଥାଏ; କିନ୍ତୁ ଯେଉଁମାନେ ଭଗବତ ଭକ୍ତ, ଯେଉଁମାନେ ଶ୍ୟାମସୁନ୍ଦରଙ୍କ ଚରଣାରବିନ୍ଦରେ ଆତ୍ମ ନିୟୋଗ କରି ଥାଆନ୍ତି, ସେମାନେ ପ୍ରତ୍ୟେକ କର୍ମକୁ ଭଗବାନ୍‌ଙ୍କ ଚରଣରେ ଅର୍ପଣ କରି, ସେହି ବିଶ୍ୱନିୟନ୍ତାଙ୍କ କୃପାଦୃଷ୍ଟିକୁ ଆନନ୍ଦରେ

ଗ୍ରହଣ କରି ନଥାନ୍ତି । କାରଣ ସେମାନେ ଜାଣନ୍ତି, ସେହି ବିଶ୍ୱର ନିୟାମକ ପରମାତ୍ମା ସର୍ବଭୂତର ହିତ ସାଧନ ଉଦ୍ଦେଶ୍ୟରେ ସକଳ କାର୍ଯ୍ୟ ସମ୍ପାଦନ କରୁଛନ୍ତି । ତେଣୁ ତାଙ୍କର କାର୍ଯ୍ୟ ହିଁ ଜଗତର ହିତ ସାଧନ କରିପାରେ ।

ପରମାତ୍ମା କେବେହେଲେ ଜଗତର ଅହିତ ସାଧନ କରନ୍ତି ନାହିଁ । କାରଣ ତାଙ୍କ ନିକଟରେ ଅହିତର ବସ୍ତୁ ନାହିଁ । ଯାହାଙ୍କ ପାଖରେ ଯେଉଁ ଦ୍ରବ୍ୟର ଅଭାବ, ସେ ତାହାର ପ୍ରୟୋଗ କରିବେ କିପରି ? ତେଣୁ ଈଶ୍ୱରାନୁରାଗୀ ଭକ୍ତ ଯେଉଁ ଅବସ୍ଥାରେ ରହିଲେ ମଧ୍ୟ ତାଙ୍କ ପାଇଁ ବିଧି ଯେଉଁ ବିଧାନ କରିଥା'ନ୍ତି, ତାହା ମଙ୍ଗଳପ୍ରଦ ହୋଇଥାଏ । ସେହି ବିଶ୍ୱ ନାଟକର ସୂତ୍ରଧର ଯେପରି ଭାବରେ ଅଭିନୟ ସଞ୍ଚାଳନ କରନ୍ତି, ତାହା ଭକ୍ତ ଜନତାର ହୃଦୟଗ୍ରାହ୍ୟ ହୋଇଥାଏ ଏବଂ ଭକ୍ତମାନେ ତଦନୁସାରେ ନୃତ୍ୟରତ ହୋଇ ଥାଆନ୍ତି ।

ବିଦୁର ହସ୍ତିନାର ରାଜଦରବାରରେ ପ୍ରଧାନମନ୍ତ୍ରୀ ଭାବେ ହୋଇ ରହିଥିବା ସମୟରେ ତାଙ୍କ ମନରେ ଥରେ ହେଲେ ଅଭିମାନ ନ ଥିଲା କିମ୍ବା ଯେତେବେଳେ ସେ ଭିକ୍ଷୁକ ହୋଇ ରାଜପୁରରୁ ବିତାଡ଼ିତ ହେଲେ ତାଙ୍କ ମନକୁ ଅନୁତାପ ଅଥବା ଦୁଃଖ ସ୍ପର୍ଶ କରି ନଥିଲା ।

ବିଦୁରଙ୍କ ମନୋଭାବ ସମ୍ପର୍କରେ ବ୍ୟାଖ୍ୟାକରି କହିଲେ ଶୁକଦେବ— "ହେ ରାଜନ୍ ! ଦୁଷ୍ଟ କୌରବମାନଙ୍କ ଅତ୍ୟାଚାରରେ ଅତିଷ୍ଠ ହୋଇ ବିଦୁର ପରିବାର, ଗୃହ ତଥା ଆତ୍ମୀୟ ସ୍ୱଜନଙ୍କ ମୋହ ତ୍ୟାଗ କରି, ଧର୍ମଶାଳାଟିକୁ ଛାଡ଼ି ବାହାରି ପରିବ୍ରାଜକ ବେଶରେ ତୀର୍ଥଯାତ୍ରାରେ ବାହାରି ପଡ଼ିଲେ ।"

ଏହା ଶୁଣି ରାଜା ପରୀକ୍ଷିତ ପଚାରିଲେ—"ହେ ମହାତ୍ମନ୍, ମୋ' ପିତା-ମହଙ୍କ ପିତା ବିଦୁରଙ୍କୁ ଅତ୍ୟନ୍ତ ସେହ୍ନ କରୁଥିଲେ ଏବଂ ପ୍ରତ୍ୟେକ କାର୍ଯ୍ୟରେ ତାଙ୍କ ସହିତ ମନ୍ତ୍ରଣା କରୁଥିଲେ । ସେ ବିଦୁରଙ୍କ ପରି ଜଣେ ବୁଦ୍ଧିମାନ୍ ଭାଇକୁ ରାଜପୁରରୁ ବିତାଡ଼ିତ କରିଦେଲେ କାହିଁକି ?"

ଏହାର ଉତ୍ତର ଦେଇ କହିଲେ ଶୁକଦେବ—"ହେ କୁରୁବଂଶତିଳକ ପରୀକ୍ଷିତ, ଭାଗ୍ୟ ହେଉଛି—ବଳବାନ୍ । ଯେତେବେଳେ ଯାହା ଭାଗ୍ୟରେ ଲେଖାଥାଏ, ତାହା ଅବଶ୍ୟ ଘଟେ । ହସ୍ତିନାରୁ ବିଦୁରଙ୍କର ଅନ୍ନଜଳ ଶେଷ ହୋଇ ଯାଇଥିଲା । ତେଣୁ ଧୃତରାଷ୍ଟ୍ର ନିଜ ମୁଖରେ ବିଦୁରଙ୍କୁ ଚାଲିଯିବା ପାଇଁ ଆଦେଶ ଦେଇ ନ ଥିଲେ ହେଁ କୌରବମାନେ ତାଙ୍କ ପ୍ରତି ଏପରି ଅବମାନନା ପ୍ରଦର୍ଶନ କଲେ ଯେ, ତାହା ବିଦୁରଙ୍କ ପକ୍ଷରେ ନିତାନ୍ତ ଅସହ୍ୟ ହୋଇ ଉଠିଲା

ଧୃତରାଷ୍ଟ୍ର ମଧ୍ୟ ଦୁଷ୍ଟ ପୁତ୍ରମାନଙ୍କ ଆଚରଣ ବିରୁଦ୍ଧରେ ପଦେ ହେଲେ କିଛି କହି ପାରିଲେ ନାହିଁ । ତେଣୁ ବିଦୁର ଅନୁଭବ କଲେ ଯେ, ଅନ୍ଧରାଜା ଧୃତରାଷ୍ଟ୍ର ମୌନ ରହି ପୁତ୍ରମାନଙ୍କ କାର୍ଯ୍ୟକଳାପକୁ ସମର୍ଥନ କରୁଛନ୍ତି । ତେଣୁ ସେ ସେଠାରେ ଆଉ ଅଧିକ ଅପମାନିତ ହେବା ଲାଗି ପସନ୍ଦ କଲେନାହିଁ ।

"ରାଜନ୍, ପାଣ୍ଡୁଙ୍କ ବିୟୋଗ ପରେ ତୁମର ପିତାମହମାନେ ଅନାଥ ହୋଇ ଯାଇ ଜ୍ୟେଷ୍ଠତାତ ଧୃତରାଷ୍ଟ୍ରଙ୍କ ଆଶ୍ରୟ ଗ୍ରହଣ କଲେ । ସେମାନଙ୍କୁ ରାଜପୁରରେ ଦେଖି ଦୁର୍ଯ୍ୟୋଧନର ମନରେ ବିଷବୀଜ ଅଙ୍କୁରିତ ହେବାକୁ ଲାଗିଲା ।

ପାପୀର ମନ ସର୍ବଦା ଶଙ୍କାକୁଳ ହୋଇଥାଏ । ନ୍ୟାୟତଃ ଦୁର୍ଯ୍ୟୋଧନ ସିଂହାସନର ଅଧିକାରୀ ନ ଥିଲେ କିମ୍ବା ଅନ୍ଧ ହୋଇ ଥିବାରୁ, ନିୟମ ଅନୁସାରେ ଧୃତରାଷ୍ଟ୍ର ମଧ୍ୟ ସିଂହାସନରେ ବସିବା ଲାଗି ଅଯୋଗ୍ୟ ଥିଲେ । ତେଣୁ ରାଜା ପାଣ୍ଡୁ ସିଂହାସନରେ ବସି ପ୍ରଜାପାଳନ କରୁଥିଲେ । ହଠାତ ସେ ରାଜ୍ୟର ଦାୟିତ୍ୱ ଜ୍ୟେଷ୍ଠ ଭାଇଙ୍କ ଉପରେ ନ୍ୟସ୍ତ କରି ବନକୁ ଚାଲି ଯାଇଥିଲେ । ସେ କେବଳ ଦାୟିତ୍ୱରୁ କିଛିଦିନ ଅପସରି ଯାଇଥିବାରୁ, ବଡ଼ଭାଇ ରାଜ୍ୟ ପରିଚାଳନା କରୁଥିଲେ ।

ମହାରାଜ ପାଣ୍ଡୁଙ୍କର ସ୍ୱର୍ଗାରୋହଣ ପରେ, ଧର୍ମରାଜ ସିଂହାସନର ଅଧିକାରୀ ହେବା ଉଚିତ ଥିଲା; କିନ୍ତୁ ପିତାଙ୍କ ଅନ୍ଧତ୍ୱର ସୁଯୋଗ ନେଇ ଦୁର୍ଯ୍ୟୋଧନ ସିଂହାସନକୁ ଅଧିକାର କରି ବସିଥିଲେ । ତେଣୁ ପାଣ୍ଡବମାନଙ୍କ ନ୍ୟାଯ୍ୟ ଦାବିକୁ ସେ ଉପେକ୍ଷା କରି ତାଙ୍କ ପ୍ରତି ଶତ୍ରୁତା ଆଚରଣ କରିବାକୁ ଲାଗିଲେ । ଦୁର୍ଯ୍ୟୋଧନ ଭାବିଲେ—ପାଣ୍ଡବ ରୂପକ କଣ୍ଟକ ମାର୍ଗରୁ ଅପସରି ଗଲେ, ସେ ନିଷ୍କଣ୍ଟକ ଭାବରେ ଚକ୍ରବର୍ତ୍ତୀ ହୋଇ ପାରିବେ । ତେଣୁ ସେ ସଦାସର୍ବଦା ପାଣ୍ଡବଙ୍କ ବିନାଶ ଲାଗି ଚିନ୍ତା କରିବାକୁ ଲାଗିଲେ । ଅବଶ୍ୟ ଧୃତରାଷ୍ଟ୍ର ପାଣ୍ଡବମାନଙ୍କର ବିନାଶ କିମ୍ବା କୌଣସି ପ୍ରକାର ଅପକାର ଚାହୁଁ ନ ଥିଲେ; କିନ୍ତୁ ପୁତ୍ରମାନଙ୍କର କାର୍ଯ୍ୟକଳାପ ବିରୁଦ୍ଧରେ ସେ ପଦେହେଲେ କିଛି କହୁ ନ ଥିଲେ । ଦୁର୍ଯ୍ୟୋଧନ କୌଣସିମତେ ପିତାଙ୍କୁ ସନ୍ତୁଷ୍ଟ କରାଇ, ପାଣ୍ଡବମାନଙ୍କ ବିରୁଦ୍ଧରେ ଅଭିଯାନ ଚଳାଇବାରେ ଆଦୌ ପଶ୍ଚାତ୍‌ପଦ ହେଉ ନ ଥିଲେ । ରାଜନ୍, ପୁତ୍ର ସ୍ନେହରେ ବଶବର୍ତ୍ତୀ ହୋଇ ଧୃତରାଷ୍ଟ୍ର ନିଜର ବୁଦ୍ଧି ହରାଇ ବସିଥିଲେ । ତେଣୁ ସେ ସବୁ ଜାଣି ମଧ୍ୟ ନୀରବ ରହୁଥିଲେ ।

"କିନ୍ତୁ ବିଦୁର ଥିଲେ ନିର୍ଭୀକ ତଥା ନ୍ୟାୟବାନ୍ । ସେ ବେଶ୍ ଜାଣିଥିଲେ ଯେ, ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କ ବିରୁଦ୍ଧରେ ସାଂଘାତିକ ଷଡ଼ଯନ୍ତ୍ର ଚଳାଇଛି । ତେଣୁ ସେ ପାଣ୍ଡବମାନଙ୍କୁ ସମସ୍ତ ପ୍ରକାର ସାହାଯ୍ୟ କରୁଥିଲେ ଏବଂ ବଡ଼ଭାଇ ଧୃତରାଷ୍ଟ୍ରଙ୍କୁ ନିର୍ଭୀକ ଭାବରେ ନ୍ୟାୟୋଚିତ ଉପଦେଶ ଦେଉଥିଲେ ।

ବିଦୁର ଥିଲେ—ରାଜ୍ୟର ନ୍ୟାୟମନ୍ତ୍ରୀ । ସେ ସର୍ବଦା ଧୃତରାଷ୍ଟ୍ରଙ୍କୁ ସମୁଚିତ ଉପଦେଶ ଦେଇ ରାଜ୍ୟର ହିତସାଧନରେ ବ୍ରତୀ ଥିଲେ; କିନ୍ତୁ ଦୁର୍ଯ୍ୟୋଧନ ବେଶ୍ ଜାଣିଥିଲେ ଯେ ବିଦୁର ସର୍ବଦା ପାଣ୍ଡବମାନଙ୍କ କାର୍ଯ୍ୟକଳାପକୁ ସମର୍ଥନ କରୁଛନ୍ତି । ତେଣୁ ଦୁର୍ଯ୍ୟୋଧନ ନିଜର ଦୁଷ୍ଟ ବୁଦ୍ଧି ବଳରେ ମତ୍ତ ହୋଇ ବିଦୁରଙ୍କ ମନ୍ତ୍ରଣା ଗ୍ରହଣ କଲେ ନାହିଁ । ସେ ରାଜକାର୍ଯ୍ୟରେ ଦୁଃଶାସନ, ଶକୁନି ଓ କର୍ଣ୍ଣଙ୍କ ପରାମର୍ଶ ଅନୁସାରେ ପଥ ନିର୍ଦ୍ଧାରଣ କରୁଥିଲେ । ସେ ତିନିଜଣ ଥିଲେ ନିତାନ୍ତ ଦୁଷ୍ଟ ତଥା ଅସହିଷ୍ଣୁ । ସେମାନେ ଦୁର୍ଯ୍ୟୋଧନଙ୍କୁ ଅନ୍ଧ ଭାବରେ ସମର୍ଥନ କରୁଥିଲେ ଏବଂ ତାଙ୍କର ଆଦେଶକୁ ବେଦବାକ୍ୟ ମନେ କରି କାର୍ଯ୍ୟ କରୁଥିଲେ । ସେହିମାନଙ୍କ ପରାମର୍ଶରେ ଦୁର୍ଯ୍ୟୋଧନ ଗଙ୍ଗାକୂଳରେ ଗୋଟିଏ ଲକ୍ଷାଗୃହ ନିର୍ମାଣ କରି ସେଥିରେ ପାଣ୍ଡବମାନଙ୍କୁ ରଖାଇବାର ବ୍ୟବସ୍ଥା କଲେ । ସେମାନଙ୍କ ପରାମର୍ଶ ଥିଲା— ପାଣ୍ଡବମାନେ ସେହି ଘରେ ମାତା ସହିତ ସୁଖପୂର୍ବକ ରାତିରେ ନିଦ୍ରାଭିଭୂତ ହୋଇଥିବା ସମୟରେ, ସେଥିରେ କୌରବମାନେ ନିଆଁ ଲଗାଇ ଦେବେ । ତାହା ଫଳରେ କୌରବଙ୍କ କଣ୍ଟକ ପାଣ୍ଡବମାନେ ଜଉଗୃହରେ ଭସ୍ମ ହୋଇଯିବେ ଏବଂ କୌରବମାନଙ୍କୁ ମଧ୍ୟ କେହି ଦୋଷ ଦେଇ ପାରିବେ ନାହିଁ ।

କିନ୍ତୁ କୌରବମାନଙ୍କର ଏପରି କୂଟମନ୍ତ୍ରଣା କୌଣସିମତେ ବିଦୁର ଜାଣି ପାରିଲେ । ସେ ନିଜ ବୁଦ୍ଧିବଳରେ ସେହି ଲକ୍ଷାଗୃହରୁ ଗୋଟିଏ ସୁଡ଼ଙ୍ଗପଥ ଖୋଳାଇ ପାଣ୍ଡବମାନଙ୍କୁ ବିପଦ ସମୟରେ ନିରାପଦରେ ବାହାରକୁ ନେଇଯିବା ଲାଗି ଆୟୋଜନ କରିଥିଲେ । ବିଦୁରଙ୍କ କୌଶଳରେ ସଫଳତାର ସହିତ ପାଣ୍ଡବମାନେ ଜଉଗୃହଦାହରୁ ରକ୍ଷା ପାଇ, ଛଦ୍ମବେଶରେ ଭିକ୍ଷାମାଗି କାଳଯାପନ କଲେ ।

ବହୁଦିନ ପରେ ପାଣ୍ଡବମାନେ ଦ୍ରୌପଦୀଙ୍କ ସହିତ ବିବାହ କରି ବନରେ କାଳଯାପନ କରୁଥିବା ସମୟରେ; ଧୃତରାଷ୍ଟ୍ର ସେମାନଙ୍କୁ ଡକାଇ ଆଣି ଇନ୍ଦ୍ର-ପ୍ରସ୍ଥରେ ରଖାଇଲେ । ସେଠାରେ ପାଣ୍ଡବମାନେ ରହି ରାଜ୍ୟର ଅର୍ଦ୍ଧାଂଶ ଭୋଗ କରିବା ସଙ୍ଗେ ସଙ୍ଗେ ନ୍ୟାୟପୂର୍ଣ୍ଣ ଭାବରେ ପ୍ରଜାପାଳନ କରିବାକୁ ଲାଗିଲେ; କିନ୍ତୁ ଦୁର୍ଯୋଧନ ନିଜର ଦୁଷ୍ଟବୁଦ୍ଧି ବଳରେ ପାଣ୍ଡବମାନଙ୍କ ବିନାଶ କରିବା ଲାଗି କୂଟମନ୍ତ୍ରଣା ଚଳାଇଲେ । ଧୃତରାଷ୍ଟ୍ର ପୁତ୍ରମାନଙ୍କର ଦୁଷ୍ଟବୃତ୍ତି ସମ୍ବନ୍ଧରେ ବେଶ ଅବଗତ ଥିଲେ ମଧ୍ୟ ପୁତ୍ର ସ୍ନେହରେ ବଶବର୍ତ୍ତୀ ହୋଇ, ସେହି ସବୁ କାର୍ଯ୍ୟକୁ ସମର୍ଥନ କରିବାକୁ ଲାଗିଲେ ।

ଇନ୍ଦ୍ରପ୍ରସ୍ଥରେ ଧର୍ମରାଜ ଯୁଧିଷ୍ଠିର ଗୋଟିଏ ରାଜସୂୟ ଯଜ୍ଞ ଆରମ୍ଭ କଲେ । ସେହି ଅବସରରେ ତାଙ୍କର ବିପୁଳ ସମ୍ପତ୍ତି ଦେଖି ଦୁର୍ଯୋଧନ ମନେ ମନେ ଜଳିଗଲା । ତେଣୁ ସେ ଯୁଧିଷ୍ଠିରଙ୍କୁ ରାଜ୍ୟଭ୍ରଷ୍ଟ କରିବା ପାଇଁ ଜୁଆଖେଳ ଆରମ୍ଭ କଲା । ଜୁଆ ଖେଳର ଅନିଷ୍ଟ ଜାଣିଶୁଣି ମଧ୍ୟ ଧୃତରାଷ୍ଟ୍ର ନିଜ ପୁଅମାନଙ୍କୁ ବାରଣ କଲେ-

ନାହିଁ । ବରଂ ଜୁଆ ଖେଳରେ ଦୁର୍ଯ୍ୟୋଧନ ଜିତୁଥିବାର ଶୁଣି ଧୃତରାଷ୍ଟ୍ର ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ ଉଠିଲେ ।

ଦୁଷ୍ଟ ଦୁର୍ଯ୍ୟୋଧନ ଛଳରେ ଯୁଧିଷ୍ଠିରଙ୍କର ସର୍ବସ୍ୱ ଜୟକରି ତାଙ୍କୁ ଭାଇମାନଙ୍କ ସହିତ ତେର ବର୍ଷ ବଣକୁ ପଠାଇ ଦେଲେ । ସେମାନେ ନିରାପଦରେ ବନବାସ ଜୀବନ କଟାଇ ଫେରିବା ପରେ ମଧ୍ୟ ସେମାନଙ୍କୁ ତାଙ୍କର ଅର୍ଦ୍ଧାଂଶ ରାଜ୍ୟ ଫେରାଇଲେ ନାହିଁ । ପୁତ୍ରସ୍ନେହରେ ବଶୀଭୂତ ହୋଇ ଧୃତରାଷ୍ଟ୍ର ନିଜର ଦୁଷ୍ଟ ପୁତ୍ରମାନଙ୍କ କଥାକୁ ସମର୍ଥନ କଲେ ।

ଧର୍ମଭୀରୁ ତଥା ମହାପରାକ୍ରମଶାଳୀ ଯୁଧିଷ୍ଠିର ଦୁର୍ଯ୍ୟୋଧନ ସହିତ ଯୁଦ୍ଧ କରିବା ଲାଗି ପ୍ରସ୍ତୁତ ହେଲେନାହିଁ । ସେ ବାରମ୍ବାର କୌରବମାନଙ୍କୁ କ୍ଷମା କରିବାକୁ ଲାଗିଲେ । ନଇଲେ କେଉଁ ବୀର ନିଜ ପତ୍ନୀଙ୍କୁ ରାଜସଭାରେ ଉଲଗ୍ନ କରାଇବାର ଦୃଶ୍ୟ ଦେଖି ମୌନ ରହିପାରିବ ? ସତୀ ସାଧ୍ୱୀ ଦ୍ରୌପଦୀ ରାଜସଭାରେ କରୁଣ ବିଳାପ କରୁଥିବା ସମୟରେ ମଧ୍ୟ ଧୃତରାଷ୍ଟ୍ର ନିଜ ପୁତ୍ରମାନଙ୍କୁ କୁକୃତ୍ୟରୁ ନିବର୍ତ୍ତାଇଲେ ନାହିଁ । ଏ ସମସ୍ତ ଅପମାନକୁ ଭୁଲିଯାଇ ମହାମନା ଯୁଧିଷ୍ଠିର କୌରବମାନଙ୍କ ସହିତ ସନ୍ଧି କରିବାକୁ ପ୍ରସ୍ତୁତ ହୋଇଥିଲେ । ସେ ସନ୍ଧି ସର୍ତ୍ତରେ ସମ୍ପୂର୍ଣ୍ଣ ରାଜ୍ୟ ନ ମାଗି, କେବଳ ପାଞ୍ଚଖଣ୍ଡି ଗ୍ରାମ ନେଇ ସନ୍ତୁଷ୍ଟ ହେବା ଲାଗି ପ୍ରସ୍ତାବ ଦେଇଥିଲେ । ସେ ଯୁଦ୍ଧର ବିଭୀଷିକାରୁ କୌରବ ଓ ପାଣ୍ଡବମାନଙ୍କୁ ରକ୍ଷା କରିବା ଲାଗି ସମସ୍ତ ପ୍ରକାର ଚେଷ୍ଟା କରିଥିଲେ । ସେଇଥି ପାଇଁ ସେ ଦ୍ୱାରକାଧୀଶ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଦୂତ ରୂପେ ହସ୍ତିନାକୁ ପଠାଇ ଥିଲେ । ଶ୍ରୀକୃଷ୍ଣ ମଧ୍ୟ ସେଠାକୁ ଯାଇ ସମସ୍ତ ପ୍ରକାର ଚେଷ୍ଟା କରି ବିଫଳ ହୋଇଥିଲେ । ସେ ସାମ, ଦାନ, ଦଣ୍ଡ ଓ ଭେଦ ନୀତି ପ୍ରୟୋଗ କରି ଦୁର୍ଯ୍ୟୋଧନଙ୍କୁ ଅନେକ ପ୍ରକାର ବୁଝାଇଥିଲେ; କିନ୍ତୁ ଦୁର୍ଯ୍ୟୋଧନ ତାଙ୍କ ପ୍ରସ୍ତାବ ଆଦୌ ସ୍ୱୀକାର କଲାନାହିଁ । ବରଂ ତାଙ୍କୁ ବନ୍ଦୀ କରିବା ଲାଗି ଅପଚେଷ୍ଟା କରିଥିଲା ।

"ପରିଶେଷରେ ଯୁଧିଷ୍ଠିର ଅନ୍ୟ କୌଣସି ଉପାୟ ନ ଦେଖି ଶ୍ରୀକୃଷ୍ଣଙ୍କ ପରାମର୍ଶ ଅନୁସାରେ ଯୁଦ୍ଧକରିବା ଲାଗି ପ୍ରସ୍ତୁତ ହୋଇଥିଲେ । ଯୁଦ୍ଧର ବିଭୀଷିକାରେ ଉଦ୍ବିଗ୍ନ ହୋଇ ଧୃତରାଷ୍ଟ୍ର ବିଦୁରଙ୍କୁ ଡକାଇ କହିଲେ—"ଭାଇ ଭାଇ ମଧ୍ୟରେ ଯୁଦ୍ଧ ହେବାକୁ ମୁଁ ଆଦୌ ଚାହେଁନାହିଁ । ମୁଁ ଶାନ୍ତି ଚାହୁଁଛି; କିନ୍ତୁ ଶାନ୍ତିସ୍ଥାପନର କୌଣସି ଲକ୍ଷଣ ମୁଁ ଦେଖି ପାରୁ ନାହିଁ । ଏ ମୁହୂର୍ତ୍ତରେ ତୁମେ କିଛି ଗୋଟିଏ ଉପାୟ ସ୍ଥିର କର ।"

"ଜ୍ୟେଷ୍ଠଭ୍ରାତାଙ୍କର ଅନୁରୋଧ ଶୁଣି କହିଲେ ବିଦୁର—"ମହାରାଜ, ସବୁ ଦୋଷ ଆପଣଙ୍କର । ଏହା ଆପଣଙ୍କ ଦୋଷରୁ ଘଟିଛି । ଆପଣ ଏହି କଳି-

ମଞ୍ଜି ପୋଡୁଛନ୍ତି । ଆପଣ ଦୁର୍ଯ୍ୟୋଧନର ଦୁଷ୍ଟତା ତଥା ମନୋମୁଖୀ କାର୍ଯ୍ୟ କଳାପକୁ ସମର୍ଥନ କରି ନ ଥିଲେ, ଆଜି ଏପରି ଘଟିବାକୁ ସୁବିଧା ମିଳି ନ ଥାନ୍ତା ! ପାଣ୍ଡବମାନଙ୍କ ଉପରେ ଯେତେ କିଛି ଅନ୍ୟାୟ ହୋଇ ଯାଇଛି; ସେଥିପାଇଁ ଆପଣ ହିଁ ଏକମାତ୍ର ଦାୟୀ । ଆପଣ ପାଣ୍ଡବମାନଙ୍କ ପ୍ରତି ହୋଇଥିବା ସମସ୍ତ ଅତ୍ୟାଚାରକୁ ପୁତ୍ରସ୍ନେହରେ ବଶବର୍ତ୍ତୀ ହୋଇ ସମର୍ଥନ କରିଛନ୍ତି ।”

ବିଦୁରଙ୍କ ନିର୍ଭୀକ ବାଣୀ ଶୁଣି କହିଲେ ଧୃତରାଷ୍ଟ୍ର—“ଭାଇ ବିଦୁର, ତୁମେ କିପରି ଏପରି କହୁଛ ? ମୁଁ ପାଣ୍ଡବମାନଙ୍କୁ ନିଜର ପୁଅଠାରୁ ସ୍ନେହ କରେ । ଏହା କେବଳ ଦୁଷ୍ଟ ଦୁର୍ଯ୍ୟୋଧନର ଖେଳ ।”

“ନାଃ....ମହାରାଜ” କହିଲେ ବିଦୁର—“ଦୁର୍ଯ୍ୟୋଧନ କିଏ ସେ ? ଧର୍ମନୀତି ଅନୁସାରେ ଆପଣ ଜୀବିତ ଥାଉଁ ଥାଉଁ ଦୁର୍ଯ୍ୟୋଧନ ଏତେ ଉତ୍ପାତ କରିବାକୁ ସାହସ କଲା କିପରି ? ପିତାର ଇଚ୍ଛା ବିରୁଦ୍ଧରେ ପୁତ୍ର, ପତିର ଇଚ୍ଛା ବିରୁଦ୍ଧରେ ପତ୍ନୀ କୌଣସି ପ୍ରକାର ଅନ୍ୟାୟ କାର୍ଯ୍ୟ କରିବା ଧର୍ମଶାସ୍ତ୍ର ବିରୋଧୀ । ଆପଣ ଦୁର୍ଯ୍ୟୋଧନର ସମସ୍ତ ଅନ୍ୟାୟକୁ ସମର୍ଥନ କଲେ କାହିଁକି ?

“ଯାହା ହେବାର ହୋଇଗଲାଣି, ଏଥର ତୁମେ ଶାନ୍ତି ସ୍ଥାପନର ଉପାୟ ଚିନ୍ତାକର” କହିଲେ ଧୃତରାଷ୍ଟ୍ର ।

“ମହାରାଜ, ଆପଣ ପାଣ୍ଡବମାନଙ୍କୁ ସେମାନଙ୍କର ପ୍ରାପ୍ୟ ଦେଇ ଦିଅନ୍ତୁ । ସେମାନେ ଆଉ ଯୁଦ୍ଧ କରିବାଲାଗି ପ୍ରବୃତ୍ତ ହେବେ ନାହିଁ” କହିଲେ ବିଦୁର ।

ତାହା ଶୁଣି କହିଲେ ଧୃତରାଷ୍ଟ୍ର—“ମୁଁ ପାଣ୍ଡବମାନଙ୍କୁ ସେମାନଙ୍କର ରାଜ୍ୟ ଫେରାଇ ଦେବାକୁ ପ୍ରସ୍ତୁତ ଅଛି । ତା’ ସତ୍ତ୍ୱେ ସେମାନେ ପୂର୍ବ ବୈର ତାକୁ ସ୍ମରଣ କରି, ମୋ’ ପୁତ୍ରମାନଙ୍କୁ ଗୋଟି ଗୋଟି କରି ନିପାତ କରିବେ ।”

ଏହା ଶୁଣି ବିଦୁର ନିଜ କଥା ଉପରେ ଜୋର ଦେଇ କହିଲେ— “ମହାରାଜ, ପାଣ୍ଡବମାନେ ଧର୍ମାତ୍ମା; ସେମାନେ କୌଣସି ପ୍ରକାର ଅନ୍ୟାୟ କାର୍ଯ୍ୟ କରିବେ ନାହିଁ । ସେମାନେ ଅନେକ ଅବସରରେ ଆପଣଙ୍କ ପୁତ୍ରମାନଙ୍କୁ କ୍ଷମା କରିଛନ୍ତି ଏବଂ ସେମାନେ ରାଜ୍ୟ ପାଇଗଲେ ପୂର୍ବପରି କୌରବମାନଙ୍କୁ କ୍ଷମା କରି ଦେବେ, ନହେଲେ ଭୀମସେନ ଆପଣଙ୍କ ପୁଅମାନଙ୍କୁ ଗୋଟି ଗୋଟି କରି ନିପାତ ନ କରି ଛାଡ଼ିବ ନାହିଁ ।”

“ବିଦୁର, ତୁମେ ଭୀମସେନକୁ ଅତ୍ୟଧିକ ପ୍ରଶଂସା କରି ମୋତେ ଭୟ ଦେଖାଇବାକୁ ଚେଷ୍ଟା କରୁଛ” ! ଟିକିଏ ଉତ୍ତ୍ୟକ୍ତ ହୋଇ କହିଲେ ଧୃତରାଷ୍ଟ୍ର ।

"ମହାରାଜ, ମୁଁ ଆପଣଙ୍କୁ ଭୟ ଦେଖାଉ ନାହିଁ । ଆପଣ ନିଜେ ଭୀମସେନଙ୍କୁ ଭୟ କରି ରାତିରେ ଭଲ ଭାବରେ ଶୋଇପାରୁ ନାହାନ୍ତି । ପ୍ରତ୍ୟେକ ପାଣ୍ଡବ ଜଣେ ଜଣେ ମହାବୀର । ସେମାନେ ଦିବ୍ୟାସ୍ତ୍ରଦ୍ୱାରା ସୁସଜ୍ଜିତ । ଭୀମସେନ ସମସ୍ତଙ୍କୁ ଯୁଦ୍ଧ କରିବା ଲାଗି ବରାବର ଉତ୍ତେଜିତ କରୁଛନ୍ତି । ବିଶେଷତଃ ଦ୍ରୌପଦୀଙ୍କ ବସ୍ତ୍ର ହରଣର ଉଦାହରଣ ଦେଇ ସେ ପ୍ରତ୍ୟେକ ଭାଇଙ୍କୁ ଯୁଦ୍ଧ କରିବା ଲାଗି ଉତ୍ସାହିତ କରୁଛି । ସେମାନଙ୍କୁ ଅଦ୍ୟାପି ଧର୍ମରାଜ ଶାନ୍ତ କରି ରଖିଛନ୍ତି । ନଚେତ୍ ସେମାନେ କେଉଁ ଦିନରୁ ଆପଣଙ୍କ ପୁତ୍ରମାନଙ୍କୁ ମାରିଦେଇ ସାରନ୍ତେଣି । ଯଦି ଏହି ପରି ସଙ୍ଘଟିତ ହୁଏ, ତେବେ ପାଣ୍ଡବମାନେ ଆପଣଙ୍କ ପୁତ୍ରମାନଙ୍କୁ ବଧ କରି ବିଜୟୀ ହେବେ" କହିଲେ ବିଦୁର ।

"ବିଦୁର, ଯୁଦ୍ଧରେ କିଏ ଜୟ କରିବ, ତାହା ନିଶ୍ଚିତ ଭାବରେ କୁହାଯାଇ ପାରିବ ନାହିଁ । ମୋ' ପୁଅମାନେ ମଧ୍ୟ କମ୍ ଶକ୍ତିଶାଳୀ ନୁହନ୍ତି ? ସେମାନଙ୍କ ନିକଟରେ ଏଗାର ଅକ୍ଷୌହିଣୀ ସେନା ଅଛନ୍ତି । ଏହା ସତ୍ତ୍ୱେ ତୁମେ କପରି କହୁଛ ଯେ, ପାଣ୍ଡବମାନେ ମୋ' ପୁତ୍ରମାନଙ୍କୁ ଯୁଦ୍ଧରେ ନିଶ୍ଚିତ ଭାବରେ ପରାସ୍ତ କରିଦେବେ ?" କହିଲେ ଧୃତରାଷ୍ଟ୍ର ।

ତାହା ଶୁଣି କହିଲେ ବିଦୁର,—"ମହାରାଜ, ଏକେତ ପାଣ୍ଡବମାନେ ବଳଶାଳୀ; ତା' ପରେ ପୁଣି ଶ୍ରୀକୃଷ୍ଣ ସେମାନଙ୍କ ସହାୟ ହୋଇଛନ୍ତି । ଶ୍ରୀକୃଷ୍ଣ ଯାଦବମାନଙ୍କର ଆରାଧ୍ୟ ଦେବ । ସେ ପୃଥିବୀର ସମସ୍ତ ବଳବାନ୍ ରାଜାମାନଙ୍କୁ ପରାସ୍ତ କରି ଦ୍ୱାରକାରେ ଏକ ଅଭେଦ୍ୟ ଦୁର୍ଗ ନିର୍ମାଣ କରିଛନ୍ତି । ସେ ଦେବ ଓ ବ୍ରାହ୍ମଣମାନଙ୍କର ରକ୍ଷକ । ସେଭଳି ଜଣେ ମହାମନା ତଥା ପରମାରାଧ୍ୟ ବ୍ୟକ୍ତିଙ୍କୁ ସାହାଯ୍ୟକାରୀ ରୂପେ ଲାଭ କରି ପାଣ୍ଡବମାନେ ଅଧିକ ବଳଶାଳୀ ହୋଇ ଉଠିଛନ୍ତି । ମୋ' କଥାମାନି ଆପଣ ପାଣ୍ଡବମାନଙ୍କୁ ସେମାନଙ୍କ ରାଜ୍ୟ ଫେରାଇ ଦିଅନ୍ତୁ ।"

ସୂତ ମହର୍ଷି କହିଲେ—"ହେ ମୁନିଗଣ, ବିଦୁର ଅନେକ ପ୍ରକାର ବୁଝାଇଲେ ମଧ୍ୟ ଧୃତରାଷ୍ଟ୍ର ଆଦୌ ବୁଝିଲେ ନାହିଁ । ତେଣୁ ବିଦୁର ବେଶ୍ ବୁଝି ପାରିଲେ ଯେ, କୌରବମାନଙ୍କର କାଳ ପୁରି ଆସିଲାଣି ।"

### ଛପ୍‌ପୟ

"ଜିନ୍‌କେ ହିରଦୈ ଶ୍ୟାମ ତିନ୍ହେ ଫିର କୌନ ଅନ୍ଦେଶୋ ।
ନିଶ୍ଚୟ ତିନ୍‌କୀ ବିଜୟ ଜାସୁ ରଥ ହାଙ୍କୈ କେଶୋ ॥
ଧର୍ମନୀତି ତେଂ ଡରେଁ ରାଜ୍ୟ ସ୍ନେହ ସଙ୍ଗ୍ ନ କାଟେଁ ।
ପାପ ପୁଣ୍ୟ ହୁଁ ଜାହୁଁ ବିପୁଲ ଧନ କାମ ନ ଆଟେଁ ॥
ଆୟେ ମୁମୁକ୍ଷି ବାନ୍ଧିକେ ହାଥ୍ ପସାରେ ଜାହୁଁ ଗେ ।
ପୁଣ୍ୟ କରେଁ ସୁଖ୍ ପାହୁଁ ଗେ ପାପ କରେଁ ପଛତାହୁଁ ଗେ ।



# ଦୁଷ୍ଟ ପୁତ୍ରଙ୍କୁ ତ୍ୟାଗ କରିଦେବା ଲାଗି ବିଦୁରଙ୍କ ଉପଦେଶ

ସ ଏଷ ଦୋଷଃ ପୁରୁଷଦ୍‌ବିଡ଼ାସ୍ତେ ।
ଗୃହାନ୍ ପ୍ରବିଷ୍ଟୋ ଯମପତ୍ୟ ମତ୍ୟା ।
ପୁଷ୍ଣାସି କୃଷ୍ଣାଦ୍ ବିମୁଖୋ ଗତଶ୍ରୀ-
ସ୍ତ୍ୟଜାଶ୍ୱ ଶୈବଂ କୁଳ କୌଶଳାୟ ॥

(ଭାଗବତ ୩ । ୧ । ୧୩)

ଛପ୍‌ପୟ

ରାଜନ୍ ନିକସେ ମୈଲ୍ ଦେହ ତେଂ କୋଇ ନ ରାଖେ ।
ତୀଙ୍ଗର୍ ତନ ମହଁ ହୋୟଁ ତନୟ କୋଇ ନାହିଁ ଭାଖେ ॥
ବିଷ୍ଠା ବହୁ ମଲ-ମୂତ୍ର ଦେହ୍ ହୀ ତେଂ ଜତ ହୋୱେଂ ।
ତନ୍‌ତେ ହୋୱେଂ ପୃଥକ୍ ପରସି କେ ସବତନ ଧୋୱେଂ ॥
ସ୍ୱୟଂ ତରେଂ ତାରେଂ କୁଲ ହୁଁ, ତେ ସତପୁତ୍ର କହାୱତେ ।
ନହିଁ ତୋ ମଲକେ କୀଟ ସମ ଋଷି ମୁନି ଛନ୍ଦେଂ ବତାୱତେ ॥

ଅର୍ଥାତ୍—ମହାତ୍ମା ବିଦୁର ମହାରାଜ ଧୃତରାଷ୍ଟ୍ରଙ୍କୁ କହିଲେ—"ରାଜନ୍, ଆପଣ କହୁଛନ୍ତି—ଦୁର୍ଯ୍ୟୋଧନ ଆପଣଙ୍କ ଉପଦେଶ ମାନୁ ନାହିଁ । ତେଣୁ ଆପଣ କୁଳର ମଙ୍ଗଳ ନିମିତ୍ତ ତାକୁ ତ୍ୟାଗ କରି ଦିଅନ୍ତୁ । ଆପଣ ଦୁର୍ଯ୍ୟୋଧନକୁ ଅତ୍ୟନ୍ତ ସ୍ନେହ ଓ ଆଦରରେ ପାଳନ କରୁଛନ୍ତି; କିନ୍ତୁ ସେ ହେଉଛି—ଦୋଷର ମୂର୍ତ୍ତିମାନ୍ ସ୍ୱରୂପ । ଅନ୍ୟ କଥା କ'ଣ କହିବା, ସେ ଶ୍ରୀହରିଙ୍କ ସହିତ ଶତ୍ରୁତା କରିବାକୁ ପ୍ରସ୍ତୁତ ହୋଇଛି । ଯଦି ତାକୁ ତ୍ୟାଗ ନ କରନ୍ତି, ତେବେ ଆପଣ ତା'ର ପାପରୁ ଶ୍ରୀହୀନ ହୋଇ ପଡ଼ିବେ ।

ଶରୀରର କୌଣସି ସ୍ଥାନରେ ଦୁଷ୍ଟବ୍ରଣ ହେଲେ, ତାହା ଯଦି ଔଷଧ ପ୍ରୟୋଗ ଫଳରେ ଭଲ ନ ହୁଏ, ତେବେ ବୁଦ୍ଧିମାନ୍ ଚିକିତ୍ସକ ସେହି ଅଂଶଟିକୁ କାଟି ପରିଷ୍କାର କରି ଦେଇ, ସମୁଦାୟ ଶରୀରଟିକୁ ଆଶୁ ବିପଦରୁ ରକ୍ଷା କରନ୍ତି ।

ମହାରାଜ, ଆଜି ଯେଉଁ ବିପଦ ଆସି ଉପସ୍ଥିତ ହୋଇଛି, ତା'ର ଏକମାତ୍ର କାରଣ ହେଉଛି—ଦୁର୍ଯ୍ୟୋଧନ ।"

ଏହା ଶୁଣି ଧୃତରାଷ୍ଟ୍ର ଧୀରେ ଉତ୍ତର ଦେଲେ—"ଭାଇ, ମୁଁ ଏହା ଭଲ ଭାବରେ ଜାଣିଛି । ଦୁର୍ଯ୍ୟୋଧନର ବୁଦ୍ଧି ବାମ ହୋଇ ଯାଇଛି । ସେ ପିଲାଟି ଦିନରୁ ପାଣ୍ଡବମାନଙ୍କ ବିରୁଦ୍ଧରେ ଦ୍ୱେଷ ଆଚରଣ କରି ଆସୁଛି । ସେ ପାଣ୍ଡବମାନଙ୍କର ସୁଖ ସମୃଦ୍ଧି ଦେଖି ସହ୍ୟ କରିପାରୁ ନାହିଁ । ସର୍ବଦା ସେମାନଙ୍କୁ ଅପମାନିତ କରିବା ଲାଗି ଚେଷ୍ଟା କରୁଛି ।"

ଏହି ସମୟରେ ବିଦୁର ଧୃତରାଷ୍ଟ୍ରଙ୍କ କଥାରେ ବାଧା ଦେଇ କହିଲେ—"ସେ ଯାହା କିଛି କରୁଛି; ସବୁଥିରେ ଆପଣଙ୍କ ସମ୍ମତି ରହିଛି ।"

ଧୃତରାଷ୍ଟ୍ର ବ୍ୟଥିତ ହୋଇ କହିଲେ—"ବିଦୁର, ତମେ କିପରି ଏହା କହି ପାରୁଛ ? ମୁଁ ପାଣ୍ଡବମାନଙ୍କୁ ନିଜ ପୁତ୍ରମାନଙ୍କଠାରୁ ଅଧିକ ସ୍ନେହ କରେ । ସେମାନେ ପିତୃହୀନ ହୋଇ ଥିବାରୁ, ସେମାନଙ୍କ ପ୍ରତି ମୋ' ମନରେ ଅତ୍ୟନ୍ତ ସ୍ନେହ ଓ ଶ୍ରଦ୍ଧା ରହିଛି ।"

ବିଦୁର ଅତ୍ୟନ୍ତ ବିନୀତ ଭାବରେ ଉତ୍ତର ଦେଲେ—"ମହାରାଜ, ପରମାତ୍ମା ଆପଣଙ୍କ ମନରେ ଏହିପରି ଭାବ ସଦାସର୍ବଦା ଜାଗ୍ରତ କରି ରଖି ଥାଆନ୍ତୁ । ସାନ ଭାଇ ଭାବରେ କୌଣସି ପ୍ରକାର କଟୁ କଥା ଆପଣଙ୍କୁ କହିବା ମୋ' ପକ୍ଷରେ ଉଚିତ ନୁହେଁ; କିନ୍ତୁ କର୍ତ୍ତବ୍ୟର ତାଡ଼ନାରେ ମୁଁ ଏପରି କଟୁ ମନ୍ତବ୍ୟ ଦେବାକୁ ବାଧ୍ୟ ହେଉଛି । ଆପଣ ଯଦି ପାଣ୍ଡବମାନଙ୍କୁ ନିଜର ପୁତ୍ର ପରି ମନେ କରିଥାଆନ୍ତେ, ତେବେ ସେମାନଙ୍କୁ ବଳ୍‌କଳ ପିନ୍ଧାଇ ବନକୁ ପଠାଇ ନଥାନ୍ତେ ! ସେମାନେ ପ୍ରତିଜ୍ଞା ପୂରଣ କରି ଫେରି ଆସିବା ପରେ ମଧ୍ୟ ଆପଣ ଉପଯୁକ୍ତ ପିତା ଭାବରେ ସେମାନଙ୍କ ସମ୍ପତ୍ତି ଫେରାଇ ଦେଇ ଥାଆନ୍ତେ !"

ଧୃତରାଷ୍ଟ୍ର ପୁଣି ଉତ୍ତେଜିତ ହୋଇ କହିଲେ—"ମୁଁ ବରାବର ଦୁର୍ଯ୍ୟୋଧନକୁ ବୁଝାଉଛି । କଳହ ନ କରିବା ଲାଗି ତାକୁ ପ୍ରବର୍ତ୍ତାଉଛି । ପାଣ୍ଡବମାନଙ୍କୁ ଇନ୍ଦ୍ରପ୍ରସ୍ଥ ଫେରାଇ ଦେବା ଲାଗି ଉପଦେଶ ଦେଉଛି; କିନ୍ତୁ ସେ ମୋ ଉପଦେଶ ପାଳନ କରୁନାହିଁ ।"

"ହଁ.......ମୁଁ ସେହି କଥା କହୁଛି" କହିଲେ ସ୍ପଷ୍ଟବାଦୀ ବିଦୁର—"ସେ ଆପଣଙ୍କ କଥା ପାଳନ କରୁନାହିଁ; କିନ୍ତୁ ଆପଣ ତା'ର ପ୍ରତ୍ୟେକ କାର୍ଯ୍ୟକୁ ସମର୍ଥନ କରି ଚାଲିଛନ୍ତି ।"

ଧୃତରାଷ୍ଟ୍ର ନିତାନ୍ତ ବିଚଳିତ ହୋଇ କହିଲେ—"ବିଦୁର' ଭାଇ ମୋର ! ମୁଁ କ'ଣ କରିବି ? ମୋର କିଛି ହେଲେ ଉପାୟ ନାହିଁ । ପୁତ୍ର ସ୍ନେହରେ ବଶୀଭୂତ ହୋଇ ମୁଁ ତା'ର ସମସ୍ତ ଅପରାଧକୁ କ୍ଷମା କରିଦେଇ ତାର ପ୍ରତ୍ୟେକ କାର୍ଯ୍ୟକୁ ସମର୍ଥନ କରୁଛି । ପିତାର ହୃଦୟ ପୁତ୍ରର ମମତାରେ ଦ୍ରବୀଭୂତ ହୋଇଥାଏ । ସେ ମୋର ଶରୀରରୁ ଜନ୍ମଲାଭ କରିଛି । ତା' ପ୍ରତି ମୋ' ମନରେ ଅତ୍ୟନ୍ତ ସ୍ନେହ ପୂରି ରହିଛି । ସେଇଥି ପାଇଁ ମୁଁ ତା'ର ପ୍ରତ୍ୟେକ କାର୍ଯ୍ୟକୁ ସମର୍ଥନ କରି ଚାଲିଛି ।"

ଏହା ଶୁଣି ବିଦୁର ଟିକିଏ ବିଦ୍ରୂପାତ୍ମକ ସ୍ୱରରେ କହିଲେ—"ମହାରାଜ, ଶରୀରରୁ ଜାତ ହେଲେ କ'ଣ ହେଲା ? ଶରୀରରୁ ଜାତ ହୋଇଥିବା ଶ୍ମଶ୍ରୁ, କେଶ ଆଦିକୁ ଆମେମାନେ ଶରୀରର ସୌନ୍ଦର୍ଯ୍ୟ ଲାଗି କାଟି ପରିଷ୍କାର କରି ଦେଉ ନାହିଁ କି ? ଶରୀରର ମଙ୍ଗଳ ଦୃଷ୍ଟିରୁ ଆମେ ମଳ ମୂତ୍ର ତ୍ୟାଗ କରି ଦେଉଥାଉଁ । ରୋଗ ମଧ୍ୟ ଶରୀରରୁ ଜାତ ହେଉଛି; କିନ୍ତୁ ଶରୀରର ମଙ୍ଗଳ ନିମିତ୍ତ କଟୁ ଔଷଧ ବ୍ୟବହାର କରି ସେହି ରୋଗକୁ ଆମେମାନେ ଦୂର କରୁ ନାହିଁ କି ?"

ଏହା ଶୁଣି କହିଲେ ଧୃତରାଷ୍ଟ୍ର—"ବିଦୁର, ତୁମେ ଅତ୍ୟନ୍ତ ବୁଦ୍ଧିମାନ୍ । ସେଇଥି ପାଇଁ ବିଦ୍ୱାନ୍‌ମାନେ ତୁମକୁ ପ୍ରଶଂସା କରୁଛନ୍ତି । ଭାଇ, ତୁମେ ଠିକ୍ କଥା କହୁଛ । ତୁମେ ନିର୍ଜୀବ ମଳମୂତ୍ର ତଥା କେଶ ଓ ଶ୍ମଶ୍ରୁ ସହିତ ଜୀବିତ ପୁତ୍ରମାନଙ୍କୁ କିପରି ତୁଳନା କରୁଛ ?"

ରାଜା ଧୃତରାଷ୍ଟ୍ରଙ୍କ ବାଣୀ ଶୁଣି ବିଦୁର କହିଲେ—"ସଜୀବ ହେଲେ ମଧ୍ୟ ସିଂହ ବ୍ୟାଘ୍ରାଦି ଦୁଷ୍ଟ ଜୀବମାନଙ୍କୁ ବନବାସୀମାନେ ନିପାତ କରି ଥାଆନ୍ତି । ନିଜ ପ୍ରିୟତମ ହାତୀଟି ପାଗଳ ହୋଇଗଲେ, ଆମେ ସେହି ସଜୀବ ହାତୀଟିକୁ ମାରି ଦେଉଥାଉଁ । ଶରୀରରେ ବ୍ରଣ ହୋଇ ସେଥିରେ କୀଟ ଜାତ ହେଲେ, ଆମେ ସେମାନଙ୍କର ନିରାକରଣ ପାଇଁ ଚେଷ୍ଟା କରୁଥାଉଁ । ସେମାନଙ୍କୁ କେବେ ହେଲେ ପୁତ୍ରପରି ପାଳନ କରାଯାଏ ନାହିଁ । ଯେଉଁ ପୁତ୍ର କୁଳର ଅମଙ୍ଗଳ କରେ, ତାହାକୁ ମଳମୂତ୍ର ପରି ତ୍ୟାଗ କରିଦେବା ବଂଶ ପକ୍ଷରେ କଲ୍ୟାଣକର ।"

ଧୃତରାଷ୍ଟ୍ର ନିତାନ୍ତ ଲଜ୍ଜିତ ହୋଇ କହିଲେ—"ବିଦୁର, ତୁମେ ଠିକ୍ କଥା କହୁଛ ! ଯେଉଁ ପୁତ୍ର କୁଳର କଳଙ୍କ ହୁଏ, ତାକୁ ତ୍ୟାଗ କରିଦେବା ବୁଦ୍ଧିମାନ୍‌ର କାର୍ଯ୍ୟ; କିନ୍ତୁ ପୁତ୍ର ଯେତେ କୁପୁତ୍ର ହେଲେ ମଧ୍ୟ ଧର୍ମାତ୍ମା ପିତା ତାକୁ ତ୍ୟାଗ କରି ପାରେ ନାହିଁ ।"

ଏହା ଶୁଣି ବିଦୁର ରାଗି ଯାଇ କହିଲେ—"ନାଃ....ମହାରାଜ, ଆପଣଙ୍କ ମୁହଁରେ ଏପରି କଥା ଶୋଭା ପାଉନାହିଁ । ଯଦି ଗୋଟିଏ କୁଳ ପାଇଁ ସମଗ୍ର ଗ୍ରାମଟି କଳଙ୍କିତ ହେଉଥାଏ, ତେବେ ଗ୍ରାମର ମଙ୍ଗଳ ଦୃଷ୍ଟିରୁ, ସେହି କୁଳଟିକୁ

ତ୍ୟାଗ କରି ଦିଆଯାଏ । ଯଦି ଗୋଟିଏ ବ୍ୟକ୍ତି ପାଇଁ ସମସ୍ତ କୁଳର ଅମଙ୍ଗଳ ଘଟୁଥାଏ, ତେବେ ବୁଦ୍ଧିମାନ୍ ଲୋକ ସେହି ବ୍ୟକ୍ତିଟିକୁ ଗୃହରୁ ବହିଷ୍କୃତ କରି ଦିଅନ୍ତି । ଅନ୍ୟାୟ ଆଚରଣକାରୀ ପୁତ୍ରକୁ ତ୍ୟାଗ କରି ଦେଇଥିବାର ବହୁ ଉଦାହରଣ ରହିଛି । ଆପଣ ସଗର ରାଜାଙ୍କ ପୁତ୍ର ଅସମଞ୍ଜସଙ୍କ ଚରିତ ଶୁଣିଛନ୍ତି । ସେ ଦୁଷ୍ଟସ୍ୱଭାବ ଦଳରେ ନଗରର ବାଳକମାନଙ୍କୁ ସରଯୂନଦୀକୁ ଫିଙ୍ଗି ଦେଉଥିଲେ । ଏଥିପାଇଁ ସଗର ରାଜା ସେହି ଦୁଷ୍ଟପୁତ୍ରକୁ ତ୍ୟାଗ କରି ଦେଇଥିଲେ । ପ୍ରଜାମାନଙ୍କର ମଙ୍ଗଳ ପାଇଁ ରାଜା ସଗର ଏପରି କଠୋର ଆଚରଣ କରିଥିଲେ ।

"ସୂର୍ଯ୍ୟବଂଶର ରାଜା ଇକ୍ଷ୍ୱାକୁ ବିକୁକ୍ଷି ନାମକ ପୁତ୍ରକୁ ତ୍ୟାଗ କରି ଦେଇ ଶ୍ରାଦ୍ଧର ମହତ୍ତ୍ୱ ରକ୍ଷା କରିଥିଲେ । ଜଗଜ୍ଜନନୀ ସୀତାଙ୍କ ପ୍ରତି ଅଶିଷ୍ଟ ବ୍ୟବହାର କରି ଥିବାରୁ, ଦେବରାଜ ଇନ୍ଦ୍ର ନିଜ ପୁତ୍ର ସ୍ୱପୁତ୍ର ଜୟନ୍ତକୁ ଶରଣ ପ୍ରଦାନ କରି ନଥିଲେ । ଏପରି ଉଦାହରଣ ଗୋଟିଏ ଦୁଇଟି ନୁହେଁ, ଅନେକ ରହିଛି ।

"ରାଜନ୍ ଆପଣ ଅତ୍ୟନ୍ତ ବୁଦ୍ଧିମାନ୍ ! ଜ୍ଞାନ ଦୃଷ୍ଟିରେ ଦେଖନ୍ତୁ, ସଂସାରରେ କିଏ କାହାର ପୁତ୍ର ? ସମସ୍ତେ ପୂର୍ବ ଜନ୍ମର ସମ୍ପର୍କୀୟ ଭାଇ ବନ୍ଧୁ ପୁତ୍ର ଅଟନ୍ତି । ଅନେକ କ୍ଷେତ୍ରରେ ଦୁଷ୍ଟ ରାକ୍ଷସମାନେ ଜୀବନର ଘୋର ଅପରାଧ ପାଇଁ ପୁତ୍ରରୂପେ ଗୃହରେ ଜନ୍ମ ଗ୍ରହଣ କରିଥାନ୍ତି । ଆପଣ ଦୁର୍ଯ୍ୟୋଧନକୁ ନିଜର ସୁପୁତ୍ର ବୋଲି ମନେ କରନ୍ତୁ ନାହିଁ । ସେ ଅବଗୁଣର ଏକ ମୂର୍ତ୍ତିମାନ୍ ସ୍ୱରୂପ । ସ୍ୱୟଂ କଳିଯୁଗ ଆପଣଙ୍କ କୋଳରେ ପୁତ୍ର ରୂପରେ ଜନ୍ମ ଗ୍ରହଣ କରିଛି । କୌଣସି ବ୍ୟକ୍ତି ପ୍ରତି ଦ୍ୱେଷ କରିବା ମହାପାପ; କିନ୍ତୁ ଦୁର୍ଯ୍ୟୋଧନ ପୁରୁଷୋତ୍ତମ ଶ୍ରୀକୃଷ୍ଣଙ୍କ ପ୍ରତି ଶତ୍ରୁତା ଆଚରଣ କରୁଛି । ସେ ଆପଣଙ୍କ ସମ୍ମୁଖରେ ପୁରୁଷୋତ୍ତମଙ୍କୁ ବନ୍ଦୀ କରିବା ଲାଗି ପ୍ରସ୍ତୁତ ହୋଇ ଯାଇଥିଲା । ଏହି କ୍ରୂରକର୍ମୀ ପୁତ୍ର ପୁରୁଷୋତ୍ତମଙ୍କୁ ବନ୍ଦୀ କରିପାରିଲା କି ? ଯେଉଁ ପୁତ୍ର ଭଗବଦ୍ ବିମୁଖ, ତା'ର ମୁଖଦର୍ଶନ କରିବା ମହାପାପ ! ଭଗବାନ୍ ତାହାକୁ ଦୟା କରି କ୍ଷମା ଦାନ କରିଛନ୍ତି । ନଇଲେ ସେ ଇଚ୍ଛା କରିଥିଲେ, ଉନ୍ମୁକ୍ତ ରାଜସଭାରେ ଶିଶୁପାଳକୁ ହତ୍ୟା କଲା ପରି, ଦୁର୍ଯ୍ୟୋଧନକୁ ନିମିଷକେ ସମୁଚିତ ଦଣ୍ଡ ଦେଇ ଥାଆନ୍ତେ !

"ହେ କୀର୍ତ୍ତିମାନ୍ ରାଜନ୍, ଆପଣ କୁଳର ମଙ୍ଗଳ ଦୃଷ୍ଟିରୁ ଏହି କ୍ରୂରକର୍ମୀ ପୁତ୍ର ଦୁର୍ଯ୍ୟୋଧନକୁ ତ୍ୟାଗ କରି ଦିଅନ୍ତୁ ! ଏ, ଦୁଷ୍ଟ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ମାନୁ ନାହିଁ । ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ ଏଗାର ବର୍ଷ ବୟସରେ ଜରାସନ୍ଧ ପରି ପ୍ରବଳ ପରାକ୍ରମୀ ରାଜାର ଜାମାତା କଂସକୁ ଉନ୍ମୁକ୍ତ ରାଜସଭାରେ ବଧ କରିଥିଲେ । ଆପଣ ଯଦି ଏହି କୁଳକଳଙ୍କ ପୁଅକୁ ତ୍ୟାଗ ନକରି ପାଳନ କରନ୍ତି, ତେବେ ଆପଣଙ୍କର ଆଦୌ କଲ୍ୟାଣ ହେବ ନାହିଁ !"

"ଅପଣ ହୁଏତ ଭାବି ପାରନ୍ତି, ଶ୍ରୀକୃଷ୍ଣ ମୋର ଗୋଟିଏ ପୁତ୍ରକୁ ମାରି ଦେଲେ ଆହୁରି ଅନେକ ପୁତ୍ର ଅଛନ୍ତି; ତା' ଫଳରେ ଆପଣଙ୍କ କୁଳନାଶ ହେବ କିପରି ? କିନ୍ତୁ ଆପଣ ଏ' ଧାରଣା ମନରୁ ଦୂର କରି ଦିଅନ୍ତୁ ! ଏହାରି ପାପରେ ଆପଣଙ୍କ ବଂଶ ଧ୍ୱଂସ ହୋଇଯିବ । ମହାପ୍ରତାପୀ ଶ୍ରୀକୃଷ୍ଣଙ୍କ କୋପରେ ଅଘା, ବକା, ତୃଣା ଆଦି ଅସୁର ଧ୍ୱଂସ ପାଇଗଲା ପରି, ଆପଣଙ୍କ ପୁତ୍ରମାନେ ସମୂଳେ ନିପାତ ହୋଇଯିବେ ।"

ଏହିପରି ଭାବରେ ବିଦୁର ଅନେକ ଉଦାହରଣ ଦେଇ ଧୃତରାଷ୍ଟ୍ରଙ୍କୁ ଉପଦେଶ ଦେଇଥିଲେ ହେଁ; ସେ କୌଣସି ଅନୁକୂଳ ଉତ୍ତର ଦେଇ ନଥିଲେ ।

ସେଠାରେ ଦୁର୍ଯ୍ୟୋଧନ ବସି ବିଦୁରଙ୍କର କଟୁବାଣୀ ଶୁଣୁଥିଲା । ସେ ବିଦୁରଙ୍କ ମୁହଁରୁ ଏପରି ଅପ୍ରିୟବାଣୀ ଶୁଣି କ୍ରୋଧରେ ଅଧୀର ହୋଇ ଉଠିଲା । ତା'ର ଚକ୍ଷୁ ରକ୍ତବର୍ଣ୍ଣ ହୋଇଗଲା । ସେ କ୍ରୋଧରେ ଜର୍ଜରିତ ହୋଇ ବିଦୁରଙ୍କୁ ନିତାନ୍ତ ଅସଂଯତ ଭାଷାରେ ଭର୍ତ୍ସନା କରିବାକୁ ଲାଗିଲା ।

ଶୁକମହର୍ଷି କହିଲେ—"ହେ ମୁନିମାନେ, ହିତକଥା ଦୁଷ୍ଟଲୋକଙ୍କୁ ଭଲ ଲାଗେ ନାହିଁ । ପାପୀମାନେ ନିଜର ଭୁଲ୍ ଦେଖି ପାରନ୍ତି ନାହିଁ । ସେମାନେ କେବଳ ଅନ୍ୟର ସାମାନ୍ୟ ଦୋଷକୁ ପର୍ବତ ପ୍ରମାଣ ଦେଖି ପାରନ୍ତି; କିନ୍ତୁ ନିଜର ପ୍ରକାଣ୍ଡ ଦୋଷକୁ ସେମାନେ ସୋରିଷ ପରି ନିତାନ୍ତ ହେୟ ତଥା ତୁଚ୍ଛ ବୋଲି ମନେ କରନ୍ତି । ଦୁର୍ଯ୍ୟୋଧନ ଯେପରି ଭାବରେ କ୍ଷୁବ୍ଧ ହୋଇ ବିଦୁରଙ୍କୁ ଭର୍ତ୍ସନା କରିଥିଲା; ତାହା ମୁଁ ଆପଣମାନଙ୍କୁ ଶୁଣାଉଛି । ଆପଣମାନେ ଧୀର ସ୍ଥିର ହୋଇ ତାହା ଶ୍ରବଣ କରନ୍ତୁ ।"

"ଯୁହ ଦୁର୍ଯ୍ୟୋଧନ ଧୃଷ୍ଟ୍ରାଇଷ୍ଟ୍ରକି, ନହିଁ ପହଚାନେ
ମଧୁସୂଦନ କୁଁ, ମୂର୍ଖମନ୍ଦମତି ମାନୁଷମାନେ ।।
କପଟୀ କୁଟୀଲ କୁବୁଦ୍ଧି କ୍ରୂର କଲି କୀ ଯୁହ ମୂରତି
ତୈସେ ଛି ସବ ସଚିବ ଶକୁନି ଦୁଃଶାସନ ଖଲମତି ।।
ରାଜନ ତୃହୋ କୁଶଲତା କୁଲ୍‌କୀ ଯୁହ୍ କାରକ୍ କରେ
କୃଷ୍ଣାପଣ ଜାକୁଁ, କରେ ସବ୍ ଜଗକୋ ସଙ୍କଟ ହରେ" ।।



# ଦୁର୍ଯୋଧନର—ବିଦୁରଙ୍କୁ ତିରସ୍କାର

"କ ଏକମତ୍ରୋ ପଜୁହାବ ଜିହ୍ମଂ
ଦାସ୍ୟାଃ ସୁତଂ ଯଦ୍ ବଳିନୈବ ପୁଷ୍ଟଃ ।
ତସ୍ମିନ୍ ପ୍ରତୀପଃ ପରକୃତ୍ୟ ଆସ୍ତେ
ନିର୍ବାସ୍ୟତା ମାଶୁ ପୁରାଚ୍ଛ୍, ସାନଃ ।।"

( ଭାଗବତ ୩ । ୧ । ୫ )

## ଛପ୍ପୟ

"ସୁନତ ବିଦୁରକେ ବଚନ ଦୁଷ୍ଟ ଦୁର୍ଯୋଧନ ଅଘମତି ।
ଭୌ ହ ଚଢ଼ୀ ମୌହଁଲଲ ଅଧର ଫ'ରକେ କୋ:ପେୟାଅତ ।।
ତିରସ୍କାର କରି କହେ କ୍ରୂର କୌନ କୁଲଓ୍ୱାୟୋ ।
କାହେ ଦାସୀପୁତ୍ର ରାଜପରିଷଦ ମହଁ ଆୟୋ ।।
କାନ୍ ପକରିକେଂ କୁଟିଲ କଁ, କଢ଼ିକାରେ ହେ୍ୱୀ ମୂଢ଼ସିର୍ ।
ଦେହୁ ନିକାସୋ ଦେଶତେଂ ଲୌଟେନହିଁ ଯୁହ ଅଧମ ଫିର ।।'

ଅର୍ଥାତ୍—ଦୁଃଶାସନ ଏବଂ ଶକୁନି ସହିତ ମିଳିତ ହୋଇ ଦୁର୍ଯୋଧନ ବିଦୁରଙ୍କୁ ତିରସ୍କାର କରି କହିଲେ—"ଏ, ଦାସୀ ପୁତ୍ରଟାକୁ ରାଜସଭାକୁ କିଏ ଡକାଇ ଆଣିଛି ? ଏ' ଯାହାର ଅନ୍ନରେ ପ୍ରତିପାଳିତ, ତା'ର ବିରୁଦ୍ଧରେ ଯାଇ ଶତ୍ରୁର ପ୍ରଶଂସା କରିବାରେ ଲାଗିଛି । ଏହି ଦୁଷ୍ଟଟାକୁ ବର୍ତ୍ତମାନ ନଗରରୁ ବାହାର କରିଦିଅ ! ତାକୁ ଆଉ ପ୍ରାଣଦଣ୍ଡ ଦେବ କଅଣ ? ଏହାକୁ ଶୀଘ୍ର ନିର୍ବାସନ ଦଣ୍ଡରେ ଦଣ୍ଡିତ କର ।

ଅବସରର ସୁଯୋଗ ନେଇ ଅନୁକୂଳ ବାକ୍ୟ ପ୍ରକାଶ କରିବାରେ ଅନେକ ଧୂରନ୍ଧର ବ୍ୟକ୍ତି ଅଛନ୍ତି । ସେମାନେ କାହାର ହିତାହିତ ଚିନ୍ତା ନ କରି, କେବଳ ଶ୍ରୁତି ମଧୁର ବାକ୍ୟ ଦ୍ୱାରା ଅନ୍ୟକୁ ମୁଗ୍ଧ କରନ୍ତି । ଯଦି ସେମାନଙ୍କୁ ପଚରା-

ଯାଏ—ତୁମେ ହିତାହିତ ଚିନ୍ତା ନ କରି ଏପରି କଥା ଗାହିଁକି କହିଲ ? ତେବେ ସେମାନେ ଉତ୍ତର ଦିଅନ୍ତି—"ଭାଇ, ଆମର ସେଥିରେ ଯାଏ ଆସେ କେତେ ? ସତ କଥା କହିଥିଲେ, ସେ ଅପ୍ରସନ୍ନ ହୋଇ ଥାଆନ୍ତେ ! ଆମେ ଗାଈର ନା ଗୋବରର ? ଆମେ ସୁବିଧା ଦେଖି ତାଙ୍କ ମନଲାଖି ପଦଟିଏ କହିଦେଲୁ ।"

ଏପରି ବ୍ୟକ୍ତି କେବେହେଲେ ବନ୍ଧୁ ନୁହନ୍ତି । ଆଉ ଗୋଟିଏ ପ୍ରକାର ଲୋକ ଅଛନ୍ତି, ସେମାନେ ସୁବିଧା ଦେଖି ଶତ୍ରୁତା ସାଧି ନଥାନ୍ତି । ଅନ୍ୟମାନେ ହେଉଛନ୍ତି ବନ୍ଧୁ; ସେମାନେ ବନ୍ଧୁର ମଙ୍ଗଳ ଉଦ୍ଦେଶ୍ୟରେ ଯେତେ ଅପ୍ରିୟ ହେଲେ ମଧ୍ୟ ହିତ କଥା କହି ଆମକୁ ଭଲ ବାଟ ଦେଖାଇ ଦିଅନ୍ତି ।

ବିଦୁର ଧୃତରାଷ୍ଟ୍ରଙ୍କୁ ଅପ୍ରିୟ ସତ୍ୟ କଥା କହିଦେବା ମାତ୍ରେ ଦୁର୍ଯ୍ୟୋଧନ କ୍ରୋଧରେ ଥରିବାକୁ ଲାଗିଲେ । ସେ ଦାନ୍ତ କମୋଡ଼ି ଆଖି ଲାଲ୍ ଲାଲ୍ କରି କହିଲେ—"ଏହି ଦୁଷ୍ଟ ଦାସୀ ପୁତ୍ରଟାକୁ ରାଜ ପରିଷଦ୍‌କୁ କିଏ ଡାକି ଆଣିଛି ? ଏହାପରି ଗୋଟିଏ ନିର୍ଲଜ୍ଜ ତଥା ଅବମାନିତ ଲୋକର ଆବଶ୍ୟକତା ରାଜସଭାରେ କ'ଣ ଅଛି ? ଏ, ଗୋଟାଏ ଶୂଦ୍ର; ଏହାର ମୁହଁ ଗୁହିଁବା ଉଚିତ ନୁହେଁ ! ରାଜସଭାରେ ପ୍ରିୟବାଦୀ ଲୋକମାନେ ମଧୁର ବଚନରେ ରାଜାଙ୍କୁ ମୁଗ୍ଧ କରନ୍ତି । ଏ, ହେଉଛି ଗୋଟାଏ ବିଷମୁଖ ! ଏହାର ମୁହଁରୁ କେବଳ ବିଷ ଉଦ୍‌ଗୀରଣ ହେଉଛି । ଏ, କେବେହେଲେ ଶିଷ୍ଟାଚାର ରକ୍ଷା କରି କଥା କହି ଜାଣେ ନାହିଁ । ଏ ଶୂଦ୍ରଦାସୀ ପୁତ୍ରଟା କେଉଁ ଅଧିକାର ବଳରେ ଏପରି ବଢ଼ି ବଢ଼ି କଥା କହି ଗୁଲିଛି ? ଆମେ ରାଜା, ଆମର ସ୍ୱତନ୍ତ୍ରତା ରହିଛି ! ଆମେ ଯାହା ଇଚ୍ଛା କରିବୁ, ତାହା କରି ପାରିବୁ !! ଆମର ଅଧିକାରରେ ବ୍ୟାଘାତ ଘଟାଇବାର କ୍ଷମତା ଏହାକୁ ଦେଲା କିଏ ସେ ?

"ଏ ଦୁଷ୍ଟ ଗୁକରଟା ଆମରି ପୋଷା କୁକୁର ହୋଇ, ଆମରି ଅନ୍ନରେ ପ୍ରତିପାଳିତ ହୋଇ ଆମ ଉପରେ ଅଧିକାର ଜମାଇ ବସୁଛି । ଏ, ଯେଉଁ ପତ୍ରରେ ଖାଉଛି, ସେହିଠାରେ ମଳତ୍ୟାଗ କରୁଛି । ନୀଚତାର ଗୋଟିଏ ସୀମା ରହିଛି । ଏ ଅଇଁଠା ଖିଆଟା ନୀଚତାର ସୀମା ଲଙ୍ଘନ କରି ଗୁଲିଛି । ଏ ଆମର ବେତନ ଭୋଗୀ ହୋଇ ଆମ ଶତ୍ରୁଙ୍କ ସହିତ ହାତ ମିଳାଇଛି । ଆମର ଛିଦ୍ରାନ୍ୱେଷଣ କରି ଶତ୍ରୁକୁ ପୁଷ୍ଟ କରୁଛି । ଆମକୁ ହୀନବୀର୍ଯ୍ୟ, ନପୁଂସକ କହି ନିରୁତ୍ସାହିତ କରିବା ସଙ୍ଗେ ସଙ୍ଗେ ଶତ୍ରୁର ପ୍ରଶଂସାରେ ଶତମୁଖ ହୋଇଛି । ଏ କୁରୁ ରାଜସଭାରେ ବସିବାକୁ ଯୋଗ୍ୟ ନୁହେ । ଏ କଟୁଭାଷୀର ମୁହ ଗୁହିଁବା ଉଚିତ ନୁହେ । ଏହାକୁ ବଧ କଲେ ମଧ୍ୟ ଅନ୍ୟାୟ ହେବନାହିଁ । ଏହି ନିର୍ଲଜ୍ଜକୁ ଏହିକ୍ଷଣି ବାନ୍ଧି ନେଇ ନଗର ବାହାରେ ଗ୍ଡ଼ି ଦେଇ ଆସ । ଯଦି ସେ ଭୁଲ୍‌ରେ ସୁଦ୍ଧା ଏଠାରେ ପାଦ ପକାଏ, ତେବେ ତା'ର ଶରୀରକୁ କିଟି କିଟି କରି କୁକୁର ବିଲୁଆଙ୍କ ଆଗରେ ପକାଇ ଦିଆଯିବ ।"

ଦୁର୍ଯ୍ୟୋଧନ ବିଦୁରଙ୍କୁ ବିଶେଷତଃ ନିଜର ସମ୍ପର୍କୀୟ ପିତୃବ୍ୟଙ୍କୁ ଏପରି ହୀନବାକ୍ୟରେ ତିରସ୍କାର କରୁଥିବାର ଶୁଣି ସମସ୍ତେ ବିସ୍ମିତ ହୋଇଗଲେ। କାହାରି ମୁହଁରୁ ପଦେ ହେଲେ କଥା ବାହାରିଲା ନାହିଁ। ସେଠାରେ ଉପସ୍ଥିତ ଲୋକମାନେ ସ୍ଥାଣୁପରି ବସି ରହିଲେ। ବିଦୁର ସାମ୍ରାଜ୍ୟର ହିତ ଦୃଷ୍ଟିରୁ ସମ୍ରାଟଙ୍କ ସାନଭାଇ ତଥା ପ୍ରଧାନମନ୍ତ୍ରୀ ଭାବରେ କହୁଥିଲେ। ତାଙ୍କର ଧାରଣା ଥିଲା, ଧୃତରାଷ୍ଟ୍ରଙ୍କୁ ବହୁ ପୂର୍ବରୁ ଚେତାଇ ଦେଇ ସେ କୁରୁବଂଶକୁ ଧ୍ୱଂସ ମୁଖରୁ ରକ୍ଷା କରି ପାରିବେ। ତାଙ୍କ ମନରେ ଆହୁରି ମଧ୍ୟ ଦୃଢ଼ ଧାରଣା ହୋଇଥିଲା, ଧୃତରାଷ୍ଟ୍ର ଅନ୍ଧ ହେଲେ ମଧ୍ୟ ଜ୍ଞାନୀ ଓ ବିବେକ-ଶୀଳ ପୁରୁଷ। ସେ ତାଙ୍କ କଥାର ଗୁରୁତ୍ୱ ଅନୁଭବ କରି, ସେହି ଅନୁସାରେ କାର୍ଯ୍ୟପନ୍ଥା ସ୍ଥିର କରିବେ; କିନ୍ତୁ ଫଳ ହେଲା ବିପରୀତ। ରାଜା ଧୃତରାଷ୍ଟ୍ରଙ୍କ ସମ୍ମୁଖରେ ଦୁର୍ଯ୍ୟୋଧନ ବିଦୁରଙ୍କୁ ଅକଥ୍ୟ ତଥା ଅସହ୍ୟ ଭାଷାରେ ତିରସ୍କାର କଲା। ତେଣୁ ବିଦୁରଙ୍କ ମନରେ ଭୀଷଣ କଷ୍ଟ ହେଲା। ସେ ମାନସିକ ଯନ୍ତ୍ରଣାରେ ଛଟପଟ ହୋଇ ଧୃତରାଷ୍ଟ୍ରଙ୍କ ମୁହଁକୁ ଚାହିଁ ରହିଲେ। ତାଙ୍କର ଧାରଣା ଥିଲା, ଧୃତରାଷ୍ଟ୍ର ଦୁର୍ଯ୍ୟୋଧନକୁ ଏଥିଲାଗି ନିନ୍ଦା କରିବେ ଏବଂ ଭବିଷ୍ୟତରେ ଏପରି କୁବାକ୍ୟ ନ କହିବା ଲାଗି ସାବଧାନ କରାଇ ଦେବେ; କିନ୍ତୁ ଅନ୍ଧରାଜା ଧୃତରାଷ୍ଟ୍ର ଦୁର୍ଯ୍ୟୋଧନକୁ କିଛି ନ କହି ମୌନ ରହିଲେ। ଏହା ଲକ୍ଷ୍ୟ କରି ବିଦୁର ଭାବିଲେ—'କୌରବକୁଳର ପାପବୃକ୍ଷରେ ସୁନ୍ଦର ତଥା ମନ ମୋହକ ଫଳ ଫଳିଲାଣି। ସେହି ଫଳକୁ ସମଗ୍ର କୌରବ ବଂଶ ଭୋଗ କରିବେ। ସେହି ଫଳର ସ୍ୱାଦ ଚାଖିବାକୁ ଆଉ ବେଶି ସମୟ ନାହିଁ। ପାପଫଳର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ସମସ୍ତେ ପ୍ରତିଦ୍ୱନ୍ଦିତା ଲଗାଇ ତାକୁ ଖାଇବାକୁ ଚେଷ୍ଟା କରିବେ। ତା' ଫଳରେ କୌରବ ବଂଶ ସମୂଳେ ଧ୍ୱଂସ ହୋଇଯିବ।

ବିଦୁର ଏହା ଚିନ୍ତାକରି ମନେ ମନେ ଅତ୍ୟନ୍ତ ଦୁଃଖିତ ହେଲେ। ସେ ଅତ୍ୟନ୍ତ ନମ୍ରତାର ସହିତ କହିଲେ—"ଦୁର୍ଯ୍ୟୋଧନ, ମୋତେ ବାହାର କରିଦେବା ପାଇଁ ତୁମକୁ କଷ୍ଟ କରିବାକୁ ପଡ଼ିବ ନାହିଁ। ତୁମ ରାଜ୍ୟ ତୁମେ ସମ୍ଭାଳ, ମୁଁ ମୋର ଦାୟିତ୍ୱରୁ ମୁକ୍ତ ହୋଇ ଆଜି ଏହି ମୁହୂର୍ତ୍ତରେ ନଗର ତ୍ୟାଗ କରି ଚାଲି ଯାଉଛି। ତୁମେ ଜୀବନରେ ଥିବା ପର୍ଯ୍ୟନ୍ତ ମୁଁ ଆଉ ଏ ନଗରରେ ପାଦ ପକାଇବି ନାହିଁ।"

ବିଦୁର ଏତିକି କହି, ନିଜ ଆସନରୁ ଉଠି ପଡ଼ିଲେ। ତଥାପି ଧୃତରାଷ୍ଟ୍ର ତାଙ୍କୁ ରାଜ୍ୟ ଛାଡ଼ି ଚାଲି ନଯିବା ପାଇଁ ପଦେ ହେଲେ ଅନୁରୋଧପୂର୍ଣ୍ଣ ବାଣୀ କହିଲେ ନାହିଁ। ଯଦି ଧୃତରାଷ୍ଟ୍ର ପଦଟିଏ ହେଲେ କିଛି କହିଥା'ନ୍ତେ, ତେବେ ବିଦୁର ତାଙ୍କୁ ଅସହାୟ ଅବସ୍ଥାରେ ତଥା ଦୁଷ୍ଟ ପୁତ୍ର ହାତରେ ସମର୍ପଣ କରି ଦେଇ ଚାଲିଯାଇ ନଥାନ୍ତେ। ତେଣୁ ତାଙ୍କ ନିର୍ବାସନ ଦଣ୍ଡକୁ ସେ ବାଧ୍ୟତାଙ୍କ

ବରଦାନ ବୋଲି ମନେ କରୁଥିଲେ । ସେ ଦୁର୍ଯ୍ୟୋଧନଙ୍କୁ ପଦେ ହେଲେ କିଛି ଉତ୍ତର ଦେଲେନାହିଁ । ସେ ବେଶ୍ ଅନୁଭବ କଲେ ଯେ, ଏହା ମାୟାପତି ମାଧବଙ୍କର ମାୟା । ସେହି ମାୟା ଜାଲରେ ପଡ଼ି ଦୁର୍ଯ୍ୟୋଧନ ଧ୍ୱଂସ ଆଡ଼କୁ କ୍ଷିପ୍ର ଗତିରେ ଅଗ୍ରସର ହେଉଛି । ବିଶ୍ୱର କୌଣସି ସୁହୃଦ ବା ସୁପୁରୁଷ ତାକୁ ଧ୍ୱଂସର ଅତଳ ଗର୍ଭରୁ ରକ୍ଷା କରି ପାରିବ ନାହିଁ ।

ବିଦୁର ରାଜସଭାରୁ ଉଠିପଡ଼ି, ଏକମୁହାଁ ହୋଇ ବାହାରକୁ ବାହାରି ଆସି ରାଜଦ୍ୱାରରେ ନିଜ ଧନୁଟିକୁ ରଖିଦେଇ ଶୀଘ୍ର ସେଠାରୁ ଚାଲି ଆସିଲେ ।

ଏହା ଶୁଣିବା ମାତ୍ରେ ପରୀକ୍ଷିତ ପଚାରିଲେ— "ମହର୍ଷି, ବିଦୁର ରାଜଦ୍ୱାରରେ ଧନୁଟିକୁ ଥୋଇଦେଇ ଆସିବାର ଉଦ୍ଦେଶ୍ୟ କ'ଣ ?"

ଏହା ଶୁଣି କହିଲେ ଶୁକଦେବ—"ମହାରାଜ, ଧନୁ ସେଠାରେ ଥୋଇ ଦେଇ ଚାଲିଯିବାର ଅନେକ ଗୁଡ଼ାଏ କାରଣ ରହିଛି । ପ୍ରଥମତଃ—ହୁଏତ ସେ ଭାବିଥିବେ, ରାଜକାର୍ଯ୍ୟରେ ନିଯୁକ୍ତ ନ ରହିଲେ, ଧନୁ ମୋର କ'ଣ ଆବଶ୍ୟକ ହେବ ?

ଦ୍ୱିତୀୟରେ—ସେ ଅବଧୂତ ହୋଇ ପରିଭ୍ରମଣରେ ଯିବା ଲାଗି ମନେ ମନେ ସ୍ଥିର କରିଥିଲେ । ତେଣୁ ତାଙ୍କ ସହିତ ଧନୁଟି ଥିଲେ, ହୁଏତ ଲୋକମାନେ ତାଙ୍କୁ ରାଜପୁରୁଷ ବୋଲି ଭାବି, ତାଙ୍କ ପରିଚୟ ଜାଣିବା ଲାଗି ଆଗ୍ରହୀ ହେବେ । ତେଣୁ ସେ ଧନୁଟିକୁ ତ୍ୟାଗ କରି ଦେଇଥିଲେ ।

ତୃତୀୟରେ—ସେ ଭାବିଲେ, ମୁଁ ଧନୁ ନେଇଗଲେ, କୌରବମାନେ ହୁଏତ ସନ୍ଦେହ କରିବେ ଯେ ମୁଁ ପାଣ୍ଡବମାନଙ୍କ ଦଳରେ ଯୋଗ ଦେଇ କୌରବମାନଙ୍କ ବିରୁଦ୍ଧରେ ସଂଗ୍ରାମ କରିବି । ସେ ତେଣୁ ଧନୁଟିକୁ ଥୋଇ ଦେଇ ଯିବା ଲାଗି ଉଚିତ ମନେ କରିଥିଲେ ।

ଚତୁର୍ଥରେ—ସେ ଭାବିଥିଲେ—ହତ୍ୟା ଓ ସଂହାରର ମୂଳ କାରଣ ହେଲା ଧନୁ । ସେ ଧନୁଟିକୁ ଛାଡ଼ିଦେଇ ଗଲେ, ତାଙ୍କ ମନରୁ ହିଂସା, ଦ୍ୱେଷ ବିଦୂରିତ ହୋଇଯିବ । ହୁଏତ ତା'ଫଳରେ କୌରବମାନେ ଧନୁର ଧ୍ୱଂସକାରୀ ଶକ୍ତି ସମ୍ବନ୍ଧରେ ଧାରଣା କରି ଯୁଦ୍ଧରୁ ନିବୃତ୍ତ ହେବେ ।

ପଞ୍ଚମରେ—ବିଦୁର ଭାବିଥିଲେ, ମୁଁ କୌରବମାନଙ୍କ ଅନ୍ନ ଖାଉଥିବା ପର୍ଯ୍ୟନ୍ତ ତାଙ୍କ ଧନୁ ଧାରଣ କରିଥିଲି । ଆଜି ଯେତେବେଳେ ମୁଁ ରାଜ୍ୟ ଛାଡ଼ି ଚାଲିଯାଉଛି, ଏ ଧନୁଟିକୁ ସମର୍ପଣ କରି ଦେଇ ଯିବା ଉଚିତ ହେବ । ତେଣୁ ପ୍ରଧାନମନ୍ତ୍ରୀ ପଦରୁ ତ୍ୟାଗପତ୍ର ଦେବାର ସୂଚନା ଦେଇ ଧନୁଟିକୁ ଥୋଇ ଦେଇ ଯାଇଥିଲେ ।

ଫଳରେ—ସେ ଭାବିଥିବେ, ଧନୁଧାରଣ କରିଥିବା ପର୍ଯ୍ୟନ୍ତ ମୁଁ କୌରବ-ମାନଙ୍କର ଅମଙ୍ଗଳ ଚିନ୍ତା କରିବି ନାହିଁ । ମୁଁ ପାଣ୍ଡବମାନଙ୍କ ମଙ୍ଗଳ କାମନାରେ ବ୍ରତୀ ହୋଇଥିବାରୁ, କୌରବମାନଙ୍କ ଧନୁ ତ୍ୟାଗ କରିଦେବା ମୋ' ପକ୍ଷରେ ଉଚିତ ହେବ ।

ପରୋକ୍ଷରେ ବିଦୁର ଭାବିଥିବେ—ଯେତେବେଳେ ଧର୍ମରାଜ ସିଂହାସନାରୂଢ଼ ହେବେ, ସେତିକିବେଳେ ମୁଁ ଫେରି ଆସି ଏହି ଧନୁ ଧାରଣ କରିବି । ତେଣୁ ନିଃଶସ୍ତ୍ର ହୋଇ ସେ ନଗରରୁ ବାହାରି ଗଲେ ।

"ଭୈଚକ୍‌କେ ସେ ଭୟେ ବନ୍ଧୁ କୌଁ ବିଦୁର ନିହାରେଁ
କରେ ନୀଚତା ନୀଚ ନ ତାକୌଁ ଉନକ ବିଚାରେଁ ।।
କିନ୍ତୁ ଅନ୍ଧକୌଁ ମୌନ ନିରଖି କୈ ଅତି ଘବରାୟେ
ସୋଚେ ଅବ ତୋ ଅନ୍ତ ଦିବସ ଇନ୍ ସବ୍‌କେ ଆୟେ ।।
ବୋଲେ ଭୈୟା ସ୍ୱୟଂହୀ ତେର ଘରତେଂ ଜାଉଁ ଗୋ
ଅବ୍ କବହୁଁ ଜୀଭବନ ମହଁ ନ୍ହୀ ତୋକୌଁ ନ ଦିଖାଉଁ ଗୋ ।।



# ବିଦୁରଙ୍କ ତୀର୍ଥଭ୍ରମଣ

"ସ ନିର୍ଗତଃ କୌରବ ପୁଣ୍ୟ ଲବ୍ଧୋ—
ଗଜାହ୍ୱୟାତ୍ତୀର୍ଥପଦଃ ପଦାନି ।
ଅନ୍ୱାକ୍ରମତ୍ ପୁଣ୍ୟଚିକୀର୍ଷୟୋର୍ବ୍ୟାଂ
ସ୍ୱାଧିଷ୍ଠିତୋ ଯାନି ସହସ୍ରମୂର୍ତ୍ତିଃ ॥
(ଭାଗବତ ୩ । ୧ । ୧୭)

ଛପ୍ପୟ

ପରମଭାଗବତ ବିଦୁର ଭଏଉ ବାହାର ଜବ ପୁରତେଂ
ମାନୋ ସଦ୍ ଗୁଣ ପୁଣ୍ୟ ସଭୀ ନିକସେଂ ବା ଧରତେଂ ॥
କରବେ କୌଁ ବ୍ୟାପାର ବଣିକଧନ ଲେକେ ଧାୱେଂ
ତେୟାଁ ଲୀଏଉ ସଁଗ ପୁଣ୍ୟ ବୃଦ୍ଧି ହିତ ତୀରଥ ଜାୱେଂ ॥
ଦରୱାଜେ ପର ଧନୁଷ ଧରି ନଂଗେ ପାଇନ ଚଲି ଦଏଉ
ଶତ୍ରୁମିତ୍ର ସମ୍ବନ୍ଧ ତଜି ତ୍ୟକ୍ତ ଦଣ୍ଡ ମାନୋ ଭଏଉ" ॥

ଅର୍ଥାତ୍—ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜନ୍, କୌରବମାନେ ଅଶେଷ ପୁଣ୍ୟ ବଳରେ ବିଦୁରଙ୍କୁ ମନ୍ତ୍ରୀ ପଦରେ ଲାଭ କରିଥିଲେ । ସେହି ଧର୍ମାତ୍ମା ବିଦୁର ହସ୍ତିନା ପୁରରୁ ବାହାରି ଗଲେ । ସେ ପୁଣ୍ୟ ଅଭିଳାଷରେ ପବିତ୍ର ପୁଣ୍ୟ-କ୍ଷେତ୍ରମାନଙ୍କରେ ବିଚରଣ କରିବାକୁ ଲାଗିଲେ । ସେହି ତୀର୍ଥମାନଙ୍କରେ ଭଗବାନ୍ ଭିନ୍ନଭିନ୍ନ ସହସ୍ର ରୂପରେ ବିରାଜମାନ କରିଥିଲେ ।

ଯେଉଁମାନେ ହିତବଚନ ଶୁଣି ସାଧୁପୁରୁଷମାନଙ୍କୁ ତିରସ୍କାର କରନ୍ତି, ସେମାନଙ୍କର ବିପଦ ଅବଶ୍ୟମ୍ଭାବୀ ବୋଲି ବିଚାରିବାକୁ ହେବ । ମୃତ୍ୟୁର ବଶବର୍ତ୍ତୀ ହୋଇ ସେମାନେ ସର୍ବସ୍ୱ ହରାଇବାକୁ ଉଦ୍ୟତ ହୋଇ ଗଲେଣି ବୋଲି ବୁଝିବାକୁ ହେବ । ଯେଉଁମାନେ ଅମର କଲ୍ୟାଣକାମୀ, ସେମାନେ ନିଜ ଆତ୍ମ ଉପରେ

ଅସନ୍ତୁଷ୍ଟ ହୋଇ ଚାଲି ଯାଆନ୍ତି, ତେବେ ଆମର କଲ୍ୟାଣ ହେବ ନାହିଁ । ଏ କଥା ଜାଣି ଯେଉଁମାନେ ଅନୁତାପ ନ କରନ୍ତି, ସେମାନଙ୍କୁ ଦୁରାତ୍ମା ବୋଲି ବୁଝିବାକୁ ହେବ । ଏହା ଶୁଣି ମହାରାଜ ପରୀକ୍ଷିତ ପଚାରିଲେ—"ପ୍ରଭୋ, ମହାତ୍ମା, ପରମଭାଗବତ ବିଦୁର ହସ୍ତିନାରୁ ଚାଲିଯିବା ପରେ କ'ଣ ହେଲା ଏବଂ କେଉଁଠାରେ ଯାଇ ରହିଲେ; ତାହା ମୋତେ ବିସ୍ତୃତ ଭାବରେ ଶୁଣାନ୍ତୁ ।"

ମହାରାଜ ପରୀକ୍ଷିତଙ୍କର ଔତ୍ସୁକ୍ୟ ଲକ୍ଷ୍ୟ କରି କହିଲେ ଶୁକଦେବ—"ତା'ପରେ ଆଉ ହେବ କଅଣ ? ଯାହା ହେବାର କଥା ତାହାହିଁ ହେଲା କୌରବମାନେ ଅନେକ ଜନ୍ମର ପୁଣ୍ୟ ଫଳରେ ବିଦୁରଙ୍କ ପରି ମନ୍ତ୍ରୀ ଲାଭ କରିଥିଲେ । ସେହି ପୁଣ୍ୟ ସମାପ୍ତ ହୋଇ ଯାଆନ୍ତେ ଦୁର୍ଯ୍ୟୋଧନ ବିଦୁରଙ୍କ ପ୍ରତି ଦୁର୍ବ୍ୟବହାର ପ୍ରଦର୍ଶନ କରିଥିଲେ । ପୃଥିବୀର ସମସ୍ତ ରାଜା ତାଙ୍କୁ ଧର୍ମରାଜଙ୍କ ରାଜସୂୟ ଯଜ୍ଞ ସମୟରେ ଦର୍ଶନ କରିଥିଲେ ଏବଂ କୌରବମାନଙ୍କର ପ୍ରଧାନମନ୍ତ୍ରୀ ବୋଲି ଜାଣିଥିଲେ । ଆଜି ତାଙ୍କୁ ଦୀନବେଶରେ ଏକାକୀ ଚାଲି ଯାଉ ଥିବାର ଲକ୍ଷ୍ୟ କରି, ସେମାନଙ୍କ ମନରେ ଅନେକ ପ୍ରଶ୍ନ ଉଙ୍କି ମାରିଥିଲା । ବିଦୁର କାହାରିକୁ ଦୋଷ ନ ଦେଇ, ଶ୍ରୀହରିଙ୍କ ପାଦପଦ୍ମରେ ମନୋନିବେଶପୂର୍ବକ, ନିଜର ବେଶ ବଦଳାଇ ଚାଲିଯିବାକୁ ଲାଗିଲେ । ସେ ରାଜଚିହ୍ନ ଗୁଡ଼ିକୁ ଶରୀରରୁ ବାହାର କରି ଦେଇ, ସାଧୁ ବେଶରେ ପୃଥିବୀରେ ପରିଭ୍ରମଣ କରିବାକୁ ଲାଗିଲେ । ତାଙ୍କର ଖାଇବା ପିଇବାରେ ସେପରି କିଛି ବାଧିବାନ୍ଧି ନିୟମ ନ ଥିଲା । ଯାହା ଯେତେବେଳେ ମିଳୁଥିଲା, ସେ ତାହା ଆନନ୍ଦରେ ଗ୍ରହଣ କରିଥିଲେ । ଯେଉଁ ଦିନ କିଛି ମିଳୁ ନ ଥିଲା ସେ ସେଦିନ ଉପବାସରେ ରହି ଯାଉଥିଲେ । ସେ ଯେଉଁ ତୀର୍ଥକୁ ଯାଉଥିଲେ, ସେଥିରେ ପ୍ରଥମେ ସ୍ନାନ କରି ଭଗବତ ଆରାଧନାରେ ମଜ୍ଜି ଯାଉଥିଲେ, ମାର୍ଗରେ ରାତି ହୋଇ ଯାଉଥିଲେ, ସେ ଭୂମିରେ ପତ୍ର ବିଛାଇ ଶୋଇ ପଡ଼ୁଥିଲେ । ଯେଉଁଠାରେ ତାଙ୍କର ଆତ୍ମୀୟ ସ୍ୱଜନ ରହୁଥିଲେ, ସେ ସେହି ସେହି ସ୍ଥାନକୁ ଆଦୌ ଯାଉ ନଥିଲେ । ମହାତ୍ମା ବିଦୁର ଏହିପରି ଭାବରେ ଅଜ୍ଞାତବାସ କରୁଥିଲେ । ସେ ବିଶେଷତଃ ଆଖପାଖ ଦେଶମାନଙ୍କୁ ନ ଯାଇ ସୁଦୂର ଦାକ୍ଷିଣାତ୍ୟ ଅଞ୍ଚଳକୁ ଚାଲିଗଲେ ।

ଦାକ୍ଷିଣାତ୍ୟ ଅଞ୍ଚଳରେ ଅନେକ ବିଶାଳ ଗୋପୁରବିଶିଷ୍ଟ ଶିବ, ଶକ୍ତି ଓ ବିଷ୍ଣୁ ମନ୍ଦିର ଥିଲା । ସେ ସମୁଦ୍ର ତୀରବର୍ତ୍ତୀ ଦାକ୍ଷିଣାତ୍ୟର ନଗରମାନଙ୍କରେ ବହୁବିଧ ଦେବସ୍ଥାନ ଅବଲୋକନ କରି ପରମପ୍ରୀତ ହୋଇଥିଲେ । ଦାକ୍ଷିଣାତ୍ୟର ନଦ, ନଦୀ, ବନ, ପର୍ବତ, କୁଞ୍ଜ ଓ ଝରଣାମାନ ଦେଖି ବିଦୁରଙ୍କ ମନରେ ଅପୂର୍ବ ପୁଲକ ଜାତ ହୋଇଥିଲା ।

ବିଦୁର ଥିଲେ ବହୁ ଭାଷାଭିଜ୍ଞ ଜଣେ ସୁଚତୁର ବିଦ୍ୱାନ୍ । ଏପରି କି, ସେ ମ୍ଲେଚ୍ଛ ଭାଷାରେ ମଧ୍ୟ ବ୍ୟୁତ୍ପନ୍ନ ଥିଲେ; କିନ୍ତୁ ଦାକ୍ଷିଣାତ୍ୟରେ ପ୍ରଚଳିତ ଭାଷାଗୁଡ଼ିକୁ

ସେ ଆଦୌ ବୁଝିପାରୁ ନ ଥିଲେ । ମାର୍ଗରେ କୌଣସି ସାଧୁସନ୍ଥ ମିଳିଗଲେ, ସେ ସେମାନଙ୍କ ସହିତ ମନ ଖୋଲି ଆଲୋଚନା କରୁଥିଲେ. ଅନ୍ୟଥା ସେ ସର୍ବଦା ମୌନବ୍ରତ ଅବଲମ୍ବନ କରୁଥିଲେ । ଆବଶ୍ୟକ ପଡ଼ିଲେ ସେ ସଙ୍କେତରେ ନିଜର ମନୋଭାବ ବ୍ୟକ୍ତ କରୁଥିଲେ ।

ଥରେ ଜଣେ ସାଧୁ ବିଦୁରଙ୍କ ସହିତ ସାକ୍ଷାତ୍ କରି ଗୋଟିଏ କୌତୂହଳୋଦ୍ଦୀପକ କାହାଣୀ ଶୁଣାଇଥିଲେ । କାହାଣୀଟି ଥିଲା—ଦାକ୍ଷିଣାତ୍ୟ ଅଞ୍ଚଳର ଭାଷା ଗୁଡ଼ିକ ସମ୍ବନ୍ଧରେ ।

ଶ୍ରୀରାମଚନ୍ଦ୍ର ମହାପ୍ରଭୁ ଅଯୋଧ୍ୟାରେ ରାଜସୂୟ ଯଜ୍ଞ କରି ସାରିବା ପରେ, କେତେ ଜଣଙ୍କୁ ଭାଷା ଅଧ୍ୟୟନ ଲାଗି ବିଭିନ୍ନ ସ୍ଥାନକୁ ପଠାଇଲେ । ସେହି ଅବସରରେ ସେ ସାନଭାଇ ଲକ୍ଷ୍ମଣଙ୍କୁ ଦାକ୍ଷିଣାତ୍ୟର ଭାଷା ଶିଖିବା ଲାଗି ପଠାଇ ଥିଲେ । ସମସ୍ତେ ବିଭିନ୍ନ ଅଞ୍ଚଳର ଭାଷା ଶିଖି ଆସି ଶ୍ରୀରାମଚନ୍ଦ୍ରଙ୍କ ଆଗରେ ନିଜ ନିଜର ଅଭିଜ୍ଞତା ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଆଞ୍ଚଳିକ ଭାଷାଗୁଡ଼ିକ ସମ୍ବନ୍ଧରେ ଜଣାଇଲେ । ଲକ୍ଷ୍ମଣଙ୍କର ପାଳି ପଡ଼ିଲା । ସେ ଗୋଟିଏ ଲୁଟିଆରେ କିଛି ଗୋଡ଼ି ଭରାଇ ଆଣି ଶ୍ରୀରାମଙ୍କ ଆଗରେ ଘଡ଼୍ ଘଡ଼୍ କରି ବଜାଇଲେ । ଏହା ଦେଖି ରାମଚନ୍ଦ୍ର ହସି ହସି କହିଲେ "ତୁମେ ଏ କ'ଣ କରୁଛ ? ମୋତେ ଦାକ୍ଷିଣାତ୍ୟ ଅଞ୍ଚଳର ଭାଷାଗୁଡ଼ିକ ସମ୍ପର୍କରେ ସମ୍ୟକ୍ ଧାରଣା ଦିଅ ।"

ଲକ୍ଷ୍ମଣ ଶ୍ରୀରାମଙ୍କ ଆଗରେ ହାତଯୋଡ଼ି କହିଲେ—"ପ୍ରଭୋ, ଏହି ଲୁଟିଆରୁ ଯେଉଁ ଶବ୍ଦ ନିର୍ଗତ ହେଉଛି, ତାହାହିଁ ଦାକ୍ଷିଣାତ୍ୟର ଭାଷା ।"

ସାଧୁ ମହୋଦୟଙ୍କର କୌତୂହଳ ପୂର୍ଣ୍ଣ ଆଖ୍ୟାୟିକା ଶୁଣି ବିଦୁର ଅତ୍ୟନ୍ତ ପ୍ରୀତହେଲେ । ସେ ଦାକ୍ଷିଣାତ୍ୟର ସମସ୍ତ ତୀର୍ଥ ପର୍ଯ୍ୟଟନ କରିବା ପରେ, ଶେଷରେ ଯାଇ ପ୍ରଭାସ ତୀର୍ଥରେ ପହଞ୍ଚିଲେ । ପ୍ରଭାସ ତୀର୍ଥ ଥିଲା—ଦ୍ୱାରକାପୁରୀର ନିକଟରେ । ବିଦୁର ସେଠାରେ ପହଞ୍ଚି ଶୁଣିଲେ ଯେ. ମହାଭାରତ ଯୁଦ୍ଧ ଶେଷ ହୋଇ ଯାଇଛି । କୌରବମାନଙ୍କ ସହିତ ଅଠର ଅକ୍ଷୌହିଣୀ ସେନା ସେହି ଭୟାବହ ଯୁଦ୍ଧରେ ନିହତ ହୋଇଛନ୍ତି । ଭଗବାନ୍ ବାସୁଦେବଙ୍କ ଅନୁକମ୍ପାରୁ ଧର୍ମରାଜ ଯୁଧିଷ୍ଠିର ଏକଚ୍ଛତ୍ରାଧୀଶ ସମ୍ରାଟ ପଦରେ ଅଭିଷିକ୍ତ ହୋଇଛନ୍ତି ।

ବିଦୁର କୌରବମାନଙ୍କ ଆଚରଣରୁ ଏ ପ୍ରକାର ଭୟାବହ ଘଟଣା ଘଟିବ ବୋଲି ବେଶ୍ ଜାଣିଥିଲେ; କିନ୍ତୁ କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ଯୁଦ୍ଧ ହେବ ବୋଲି ସେ ଆଦୌ ଭାବି ନଥିଲେ । ଯେତେବେଳେ ସେ ଜାଣିଲେ ଯେ, ଯୁଦ୍ଧର ସମ୍ଭାବନାକୁ କୌଣସିମତେ ଏଡ଼ାଇ ହେବନାହିଁ; ତେଣୁ ସେ ବାଧ୍ୟ ହୋଇ ଅନ୍ଧରାଜାଙ୍କୁ ଚେତାବନୀ ଶୁଣାଇ ଦେଲେ କିନ୍ତୁ; ତା'ର ଫଳ ହେଲା ବିପରୀତ । ଦୁର୍ଯ୍ୟୋଧନଠାରୁ ସେ କଟୁ ମନ୍ତବ୍ୟ ଶୁଣି ତୀର୍ଥଯାତ୍ରାରେ ବାହାରିଗଲେ ।

କୌରବମାନଙ୍କର ବିନାଶ ସମ୍ବାଦ ଶୁଣି ବିଦୁର ମନେ ମନେ ଅତ୍ୟନ୍ତ ବ୍ୟାକୁଳ ହେଲେ ଏବଂ ସେମାନଙ୍କ ଆତ୍ମାର ସଦ୍‌ଗତି କାମନା କରି ସେ ପ୍ରାଚୀ ନଦୀର ସଙ୍ଗମ ସ୍ଥଳରେ ସ୍ନାନ କରି; ତ୍ରିତ, ଉଶନ, ମନୁ, ପୃଥୁ, ଅଗ୍ନି, ଅସିତ, ବାୟୁ, ସୁଦାସ, ଗୌ, ଗୁହତଥା ଶ୍ରାଦ୍ଧଦେବ ଆଦି ନାମରେ ନାମିତ ତୀର୍ଥରେ ସ୍ନାନ ଓ ତର୍ପଣ କରିଥିଲେ ।

ବିଦୁର ଦାକ୍ଷିଣାତ୍ୟର ବିଶାଳ ଗୋପୁରବିଶିଷ୍ଟ ମନ୍ଦିର, ବିଶେଷତଃ ଶିବମନ୍ଦିର ଏବଂ ମନ୍ଦିରରେ ଥିବା ବିଶାଳକାୟ ବୃଷଭମାନଙ୍କୁ ଦେଖି ଅତ୍ୟନ୍ତ ପ୍ରୀତ ହୋଇଥିଲେ । ଦାକ୍ଷିଣାତ୍ୟର ମନ୍ଦିରଗୁଡ଼ିକରେ ଥିବା କାରୁକାର୍ଯ୍ୟ ଓ ବିଶାଳ ବୃଷଭ ମୂର୍ତ୍ତିମାନ ତାଙ୍କ ମନରେ ଅଶେଷ ଆନନ୍ଦ ଜାତ କରାଇଥିଲା । ସେ ଉତ୍ତରାଞ୍ଚଳରେ ଏତେ ବିଶାଳ ବୃଷଭ ଦେଖି ନଥିଲେ ।

ତତ୍ପରେ ବିଦୁର ଅନ୍ୟାନ୍ୟ ବହୁସ୍ଥାନ ପରିଭ୍ରମଣ କରି ଶଙ୍ଖ, ଚକ୍ର, ଗଦା, ପଦ୍ମ ପରିଶୋଭିତ ବିଷ୍ଣୁ ମୂର୍ତ୍ତିମାନ ଅବଲୋକନ କରିଥିଲେ । ସେହି ସମୟରେ ତାଙ୍କ ଆଖି ଆଗରେ ନାଚି ଉଠୁଥିଲା—ଶ୍ୟାମସୁନ୍ଦର ଶ୍ରୀକୃଷ୍ଣଙ୍କ ଭବ୍ୟ ମୂର୍ତ୍ତି । ସେ ସେହି ଦିବ୍ୟରୂପକୁ ମାନସପଟଳରେ ଦର୍ଶନ କରି, ଘଣ୍ଟା ଘଣ୍ଟା ଧରି ଭାବୋନ୍ମତ୍ତ ହୋଇ ଉଠୁଥିଲେ । ସେ ମନେ ମନେ ଭାବୁଥିଲେ—ଆହା, ମୋର ଶ୍ୟାମସୁନ୍ଦର କେଉଁଠି ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀରୂପେ ବିରାଜମାନ କରିଛନ୍ତି ଏବଂ ଅନ୍ୟ କୌଣସି ମନ୍ଦିରରେ ଶିବଲିଙ୍ଗ ରୂପେ ପୂଜିତ ହେଉଛନ୍ତି । ତାଙ୍କର ଲୀଳା ଅପାର ଏବଂ ସ୍ୱରୂପ ମଧ୍ୟ ଭିନ୍ନ ଭିନ୍ନ । ତେଣୁ ତାଙ୍କ ମନରେ ଶିବ ଓ ବିଷ୍ଣୁ ମନ୍ଦିର ପ୍ରତି କୌଣସି ଭେଦଭାବ ଜାତ ହୋଇ ନ ଥିଲା । ସେ ସର୍ବଦା ଓ ସର୍ବତ୍ର ଶ୍ୟାମସୁନ୍ଦର ବାସୁଦେବଙ୍କ ଲୀଳାର ମାଧୁରୀ ଅବଲୋକନ କରି ଉତ୍ତର ପଥ ଅଭିମୁଖେ ଅଗ୍ରସର ହେଲେ । ସେ ବାଟରେ ସୌରାଷ୍ଟ୍ର, ସୌବୀର, ମତ୍ସ୍ୟ, କୁରୁ ଓ ଜାଙ୍ଗଲ ଆଦି ଦେଶ ପରିଭ୍ରମଣ କରି ଯମୁନା ତଟରେ ଥିବା ନନ୍ଦନନ୍ଦନଙ୍କ ଲୀଳା ଭୂମି ପରମ-ପାବନ ବ୍ରଜ ଭୂମିରେ ପଦାର୍ପଣ କଲେ । ସେଠାରେ ଧୂଳିରେ ସେ ଲୋଟି ପଡ଼ି ଜୀବନକୁ ଧନ୍ୟ ମନେ କରିଥିଲେ । ସେହି ଧୂଳିରେ ବିଚରଣ କରିବା ଲାଗି ବ୍ରହ୍ମାଦି ଦେବଗଣ ମନେ ମନେ ଅହୋଭାଗ୍ୟ ବୋଲି ମନେ କରୁଥିଲେ । ସେହି ଭୂମିରେ ଲୋଟି ପଡ଼ି ବିଦୁର ଭାବ ସମାଧିରେ ମଗ୍ନ ହୋଇପଡ଼ିଲେ । ତାଙ୍କର ଶରୀର ରୋମାଞ୍ଚିତ ହୋଇଗଲା ଏବଂ ଚକ୍ଷୁରୁ ଅଶ୍ରୁ ନିର୍ଗତ ହେବାକୁ ଲାଗିଲା । ଏହି ଦଶାରେ ତନ୍ମୟ ହୋଇ ବିଦୁର ଭଗବତ୍ ଚିନ୍ତାରେ ନିମଗ୍ନ ହୋଇଗଲେ ।

## ଛପ୍ପୟ

ବନ ଉପବନ ବର ପୁଣ୍ୟ ସରୋବର ସରିତା ସୁନ୍ଦର ।
ଚିହ୍ନିତ ଦେଖେ ଶଙ୍ଖ ଚକ୍ର ତେଂ ମନହର ମନ୍ଦିର ॥
କହୁଁ କୃଷ୍ଣ ଧର ବସ୍ତ୍ର ରୂପ ଶ୍ରୀରଙ୍ଗ ବିରାଜେଂ ।
ବିଶ୍ୱନାଥ ଶ୍ରୀଶମ୍ଭୁ ବିବିଧ ରୂପନ ମହଁ ରାଜେଂ ॥
ସବ୍ ତୀରଥ୍ କୀ ସାର ଜୋ ଆଚ୍ଛେ ତା ବ୍ରଜଭୂମି ମହଁ ।
ନୀଲ ବାଲ୍ କ୍ରୀଡ଼ା କରୀ, ମାଖନ ଖାୟୋ ଚୋର କହଁ ॥



## ବିଦୁରଙ୍କ ସହିତ ଉଦ୍ଧବଙ୍କ ଭେଟ

"ସ ବାସୁଦେବାନୁଚରଂ ପ୍ରଶାନ୍ତମ୍
ବୃହସ୍ପତେଃ ପ୍ରାକ୍ତନୟଂ ପ୍ରତୀତମ୍ ।
ଆଲିଙ୍ଗ୍ୟ ଗାଢ଼ଂ ପ୍ରଣୟେନ ଭଦ୍ରଂ
ସ୍ୱାନାମ ପୃଚ୍ଛଦ୍ ଭଗବତ୍ ପ୍ରଜାନାମ୍ ।।"

( ଭାଗବତ ୩ । ୧ । ୨୫ )

### ଛପ୍ପୟ

"ଦେଖି ରସମୟ ଭୂମି ବିଦୁର ହୃଦୟ-ମହେ ହର୍ଷାୟେ ।
କୃଷ୍ଣ ବିରହ ମେଂ ବିକଲ ଓ୍ୱ ହାଁ । ତବ ଉଦ୍ଧବ ଆୟେ ।।
ପଥଭ୍ରମ ବଶ ଜୈଁଯା ଭୂଲ ମିଲେ ପରକୀୟା ଉପପତ ।।
ଗଙ୍ଗା ଯମୁନା ସଦୃଶ ମିଲେ ମନ ମୋଦଭୟୋ ଅତ ।।
ଉଦ୍ଧବ ତେଂ ବୋଲେ ବିଦୁର କୁଶଲ କୃଷ୍ଣ କୁଲ କୀ କହୋ ।
କୃଷ୍ଣ ବିନା କସ ଭମତ ହୋ ସଙ୍ଗ ସଦା ତୁମ ତୋ ରହୋ ।।"

ଅର୍ଥାତ୍—ବ୍ରଜଭୂମିରେ ଶ୍ରୀ ବିଦୁର ଭଗବାନ୍‌ଙ୍କ ପଛେ ପଛେ ଭ୍ରମଣ କରୁଥିବା ଶାନ୍ତଶିଷ୍ଟ ତଥା ବୃହସ୍ପତି ସଦୃଶ ପ୍ରସିଦ୍ଧ ବିଦ୍ୱାନ୍ ଉଦ୍ଧବ ମହୋଦୟଙ୍କ ସହିତ ସାକ୍ଷାତ୍ କରିଥିଲେ । ଉଦ୍ଧବ ତାଙ୍କୁ ଦେଖିବା କ୍ଷଣି ସଙ୍ଗେ ସଙ୍ଗେ ଗାଢ଼ ଆଲିଙ୍ଗନ କଲେ ଏବଂ ବିଦୁରଙ୍କୁ ଶ୍ରୀକୃଷ୍ଣଙ୍କ କୁଶଳ ବାର୍ତ୍ତାମାନ ପଚାରିବା ଅବସରରେ ପ୍ରଭୁଙ୍କ ସ୍ୱଜନ ପୌରାଦିଙ୍କ ସମ୍ବନ୍ଧରେ ପଚାରି ଥିଲେ ।

ଭଗବତ ଦର୍ଶନରେ ଯେଉଁ ଆନନ୍ଦ ତାହା ଯେ ଅନୁଭବ କରିଛି, ସେହି କେବଳ ଜାଣେ । ସେହି ସୁନ୍ଦର ମୁହୂର୍ତ୍ତର ତୁଳନା ନାହିଁ । ଏହି ଦୁଃଖମୟ ଜଗତରେ ଯେଉଁ ବ୍ୟକ୍ତି ଜଣେ ଭକ୍ତ ସହିତ ଅନ୍ୟ ଜଣେ ଭକ୍ତର ମିଳନ ଦେଖିଛି,

ତା'ର ଜୀବନ ଧନ୍ୟ । ଉଭୟଙ୍କ ମିଳନରେ ଯେଉଁ ଅନିର୍ବଚନୀୟ ଆନନ୍ଦର ଉଦ୍ରେକ ହୁଏ, ତାହା କେହି ଭାଷାରେ ବର୍ଣ୍ଣନା କରି ପାରିବ ନାହିଁ । ସାଧାରଣ ମଣିଷ ଯେତେବେଳେ ଦୁଇଜଣ ଭକ୍ତଙ୍କର ଶାଶ୍ୱତ ମିଳନକୁ ଦେଖିବାରେ ସମର୍ଥ ହୁଏ, ତା'ର ହୃଦୟ ପ୍ରେମମୟ ହୋଇଯାଏ ।

ଜଣେ ଭକ୍ତ ଅନ୍ୟ ଜଣେ ଭକ୍ତଙ୍କୁ ଦେଖିଲେ, ପ୍ରଥମେ ତାଙ୍କୁ ପ୍ରଣାମ କରିବା ଲାଗି ଇଚ୍ଛା କରେ ଏବଂ ଅନ୍ୟ ଭକ୍ତ ମଧ୍ୟ ଅନୁରୂପ ଇଚ୍ଛା କରିଥାଏ । ଦୁହିଁଙ୍କ ହୃଦୟରେ ଭକ୍ତବତ୍ସଳ ଶ୍ୟାମ ସୁନ୍ଦର ବିରାଜମାନ କରୁଥାଆନ୍ତି । ନିଜ ସମ୍ମୁଖରେ ଜଣେ ଭକ୍ତଙ୍କୁ ଦେଖି ଅନ୍ୟ ଜଣେ ଭୂମିରେ ଲୋଟି ପଡ଼ି ପ୍ରଣାମ ନିବେଦନ କରେ । ଅନ୍ୟ ଜଣକ ମଧ୍ୟ ଅନୁରୂପ ଆଚରଣ କରିଥାଏ; ଯେତିକିବେଳେ ସ୍ୱୟଂ ଭକ୍ତବତ୍ସଳ ସଦାନନ୍ଦମୟ ଶ୍ୟାମସୁନ୍ଦର ଉଭୟ ଭକ୍ତଙ୍କ ମଧ୍ୟ ଭାଗରେ ଅବତୀର୍ଣ୍ଣ ହୋଇ ଦୁହିଁଙ୍କ ପ୍ରଣାମ ଗ୍ରହଣ କରନ୍ତି ।

ଶାସ୍ତ୍ରକାରମାନେ ପ୍ରଣାମ କରିବା ସମ୍ବନ୍ଧରେ ଅନେକ ନିୟମ ପ୍ରଣୟନ କରିଛନ୍ତି । ସେହି ଅନୁସାରେ ଜଣେ ଉଚ୍ଚକୁଳର ବ୍ୟକ୍ତି ପ୍ରଥମେ ନୀଚକୁଳସମ୍ଭୂତ ବ୍ୟକ୍ତିଙ୍କୁ ପ୍ରଣାମ କରନ୍ତି ନାହିଁ; କିନ୍ତୁ ଭକ୍ତିମାର୍ଗରେ ସେହି ନିୟମ ଭିନ୍ନ ରୂପ ଧାରଣ କରିଥାଏ । ଯେଉଁ ବ୍ୟକ୍ତି ବୈଷ୍ଣବୀ ଦୀକ୍ଷାରେ ଦୀକ୍ଷିତ ହୋଇଥାଏ, ସେ ଯେତେ ନୀଚକୁଳରେ ଜନ୍ମ ଗ୍ରହଣ କରିଥିଲେ ହେଁ ଅନ୍ୟ ଜଣେ ଭକ୍ତ ପକ୍ଷରେ ସେ ବ୍ୟକ୍ତି ଆଦରଣୀୟ, ସମ୍ମାନନୀୟ ତଥା ଅଲଙ୍ଘନୀୟ । ଯେଉଁ ହୃଦୟରେ ନନ୍ଦନନ୍ଦନ ବିରାଜମାନ କରିଥାନ୍ତି, ଯେଉଁ ବ୍ୟକ୍ତି ପାବନ ଭୂମିରେ ବିଚରଣ କରି ଆତ୍ମାକୁ ପବିତ୍ରମୟ କରି ପାରିଛି, ତା'ର ଆଲିଙ୍ଗନରେ ଯେଉଁ ଅନିର୍ବଚନୀୟ ଆନନ୍ଦ ଜାତ ହୁଏ, ତାହା କେବଳ ଅନୁଭବୀ ହିଁ ଅନୁଭବ କରିପାରେ ।

ଯେଉଁମାନେ ଦୁଇଜଣ ଭକ୍ତଙ୍କର ପ୍ରେମମୟ ମିଳନକୁ ଦର୍ଶନ କରିବାର ସୌଭାଗ୍ୟ ଅର୍ଜନ କରିଛନ୍ତି, ସେମାନେ ଧନ୍ୟ । ଯେଉଁ ନେତ୍ର ସେହି ପବିତ୍ର ଦୃଶ୍ୟ ଅବଲୋକନ କରିଛି, ସେ ନେତ୍ର ମଧ୍ୟ ଧନ୍ୟ ! ଯେଉଁ କର୍ଣ୍ଣ ହରିନାମ କୀର୍ତ୍ତନକୁ ଶୁଣିବାର ଅବସର ଲାଭ କରିଛି, ସେହି କର୍ଣ୍ଣ ସାର୍ଥକ ହୋଇ ଯାଇଛି । ସଂସାରରେ ସବୁ କିଛି ସୁଲଭ ହୋଇପାରେ; କିନ୍ତୁ ପ୍ରେମ ପାଗଳ ଭକ୍ତଙ୍କ ଦର୍ଶନ ଆଦୌ ସୁଲଭ ନୁହେଁ । ଭକ୍ତମାନଙ୍କ ଦର୍ଶନ କେବଳ ପୁଣ୍ୟପୀଠମାନଙ୍କରେ ସମ୍ଭବ ହୋଇପାରେ । ଯେଉଁ ଧାମରେ ପରମେଶ୍ୱର ଭଗବାନ୍ ବିଚରଣ କରି ସେଠାର ପ୍ରତ୍ୟେକ ଧୂଳିକଣାକୁ ପ୍ରେମମୟ କରି ତୋଳି ଥାଆନ୍ତି, ସେହି ଧାମରେ ଏବଂ ତା'ର ଆଖପାଖରେ ଭକ୍ତମଣ୍ଡଳୀ ଠୁଳ ହୋଇଥାଏ । ସେମାନେ ସେହି ଭୂମିରେ ଲୋଟି ଜୀବନକୁ ପ୍ରେମମୟ କରି ଗଢ଼ି ଥାଆନ୍ତି ।

ଶ୍ରୀବୃନ୍ଦାବନ ଧାମରେ ପ୍ରବେଶ କରି ବିଦୁର ମନେ ମନେ ପରମ ଆନନ୍ଦରେ ମଗ୍ନ ହୋଇ ଉଠିଲେ । ସେ ସେହି ପତ୍‌ପଙ୍କଜ ଧୂଳିକଣାରେ ଲୋଟି ନିଜ ଜୀବନକୁ ଧନ୍ୟ କରିବାକୁ ଲାଗିଲେ । ସେ ଯମୁନାର କୂଳେ କୂଳେ ପରିଭ୍ରମଣ କରି ପୁଲକି ଉଠିଲେ । ସେହି କଳିନ୍ଦତନୟାର ତଟରେ ଲୀଳାମୟ ଶ୍ୟାମସୁନ୍ଦର ଗୋପିକାମାନଙ୍କର ବାହ୍ୟାଭରଣ ଦୂର କରି ସେମାନଙ୍କ ସହିତ ଅଦ୍ୱୈତ ଭାବରେ ସମ୍ମିଳିତ ହୋଇଯାଇଥିଲେ । ସେହି ପବିତ୍ରତଟରେ ନନ୍ଦନନ୍ଦନ ବ୍ରଜାଙ୍ଗନାମାନଙ୍କ ସହିତ ରାସରସରେ ନିମଜ୍ଜିତ ହୋଇଥିଲେ । ସେହି ତରଣୀତନୟାର ତଟବର୍ତ୍ତୀ କଦମ୍ବ ବୃକ୍ଷରେ ବସି ମନମୋହନ ଶ୍ରୀକୃଷ୍ଣ ମନୋହର ବଂଶୀ ବାଦନରେ ଗୋପୀମାନଙ୍କୁ ଉଚ୍ଚାଟ କରାଇଥିଲେ । ଯେଉଁ ଅମୃତମୟ ଲୀଳାକୁ ବିପାକ୍ତ କରିବାପାଇଁ କାଳିୟନାଗ ମଦନ ମୋହନ ଶ୍ରୀକୃଷ୍ଣଙ୍କୁ ଦଂଶନ କରିଥିଲା, କିନ୍ତୁ ଶ୍ୟାମସୁନ୍ଦର ଶ୍ରୀକୃଷ୍ଣ କାଳିୟନାଗର ଦର୍ପ ଚୂର୍ଣ୍ଣ କରି କାଳନ୍ଦୀ ହ୍ରଦକୁ ଅମୃତମୟ କରିଥିଲେ । ଏହି ବ୍ରଜଭୂମିର ଶୀତଳ ତରୁଛାୟାରେ ବସି, ଦିନେ ଉଦ୍ଧବ ବିରହିଣୀ ଗୋପୀମାନଙ୍କୁ ଶ୍ରୀକୃଷ୍ଣ ସନ୍ଦେଶ ଶୁଣାଇଥିଲେ ଏବଂ ସେମାନଙ୍କଠାରୁ କୃଷ୍ଣଲୀଳା ସମ୍ବନ୍ଧରେ ଅମୃତମୟ ବାଣୀ ଶୁଣି ନିଜକୁ ଧନ୍ୟ ମନେ କରିଥିଲେ । ଏହି କଦମ୍ବମୂଳର ଶୀତଳ ଛାୟାରେ ବସି ମନ୍ତ୍ରୀ ବୃହସ୍ପତି ଉଦ୍ଧବ ଗୋପୀମାନଙ୍କୁ ଶ୍ରୀକୃଷ୍ଣଙ୍କର ପ୍ରେମପତ୍ର ଶୁଣାଇଥିଲେ । ଆହା, ଉଦ୍ଧବ ମହୋଦୟଙ୍କର ଜୀବନ ଧନ୍ୟ ! ସେ ଏହି ବ୍ରଜଭୂମିରେ ଗୁଳ୍ମଲତା ହୋଇ ଜନ୍ମ ଗ୍ରହଣ କରିବାକୁ କାମନା କରିଥିଲେ ଏବଂ ଏହି ଧୂଳିକଣାରେ ପଡ଼ି ଗ୍ରାମ୍ୟ ଗୋପବଧୂଙ୍କ ପାଦରଜ ଦେହରେ ବୋଳି ହୋଇଥିଲେ । ବିଦୁର ଏହି କଥା ଚିନ୍ତା କରୁଥିବା ସମୟରେ ଉଦ୍ଧବଙ୍କ ସହିତ ତାଙ୍କର ସାକ୍ଷାତ୍ ହୋଇଥିଲା । ଉଦ୍ଧବ ଭାବ-ବିହ୍ୱଳ ହୋଇ ଚାଲୁଥିଲେ ଏବଂ ତାଙ୍କ ଚକ୍ଷୁରୁ ଅଶ୍ରୁ ନିର୍ଗତ ହେଉଥିଲା । ଏପରି ଅବସ୍ଥାରେ ଉଦ୍ଧବଙ୍କୁ ଆସୁଥିବାର ଦେଖି ବିଦୁର ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ ।

ପ୍ରଥମେ ସେ ଭାବିଥିଲେ ଯେ, ସେ ସ୍ୱପ୍ନ ଦେଖୁଛନ୍ତି । ସେ ଦୁଇ ହାତରେ ଆଖିମଳି ଦେଖିଲେ ଯେ, ଯମୁନା ପୂର୍ବପରି ଧୀର ମନ୍ଦ ଗତିରେ ବହି ଚାଲିଛି ଏବଂ ବୃନ୍ଦାବନର ବିଭିନ୍ନ ସ୍ଥାନରେ ପକ୍ଷୀମାନେ ସ୍ୱାଭାବିକ ଭାବରେ ମଧୁର କଳକୂଜନ କରୁଛନ୍ତି । ସେ ପରେ ବେଶ୍ ବୁଝି ପାରିଲେ ଯେ, ସେ ଆଦୌ ସ୍ୱପ୍ନ ଦେଖୁ ନାହାନ୍ତି । ବରଂ ସେ ଯାହାଙ୍କ ସମ୍ବନ୍ଧରେ ଭାବୁଥିଲେ, ସେହି ଉଦ୍ଧବଙ୍କ ସୌମ୍ୟ ମୂର୍ତ୍ତି ତାଙ୍କ ଆଖି ଆଗରେ ସାକାର ହୋଇ ଉଠିଛି ।

ଏତିକିବେଳେ ଉଦ୍ଧବ ତାଙ୍କ ନିକଟକୁ ଆସିଗଲେ । ସେ ମଧ୍ୟ ଭାବ-ବିହ୍ୱଳ ହୋଇ ତାଙ୍କୁ ଆଲିଙ୍ଗନ କରିବା ଲାଗି ଧାଇଁଲେ । ଦୁହେଁ ଭାବା-

ବେଗରେ ପରସ୍ପରକୁ ଆଲିଙ୍ଗନ କରିବାକୁ ଲାଗିଲେ । ଉଭୟଙ୍କ ଆଲିଙ୍ଗନ ଫଳରେ ବୃନ୍ଦାବନରେ ଗଙ୍ଗା ଯମୁନାର ସଙ୍ଗମ ପ୍ରତ୍ୟକ୍ଷ ହେବାକୁ ଲାଗିଲା । ଦୁହେଁ ପ୍ରାଣ ଖୋଲି ପରସ୍ପରକୁ ଆଲିଙ୍ଗନ କରିବାକୁ ଲାଗିଲେ । ଦୁହିଁଙ୍କ ମିଳନ ଫଳରେ ମନେ ହେଲା—ସତେ ଯେପରି, ଗୋଟିଏ ଚତୁଷ୍ପଦବିଶିଷ୍ଟ ବିଚିତ୍ର ଜନ୍ତୁ ବୃନ୍ଦାବନରେ ବିରାଜମାନ କରିଛି । ଅନେକ ସମୟ ପର୍ଯ୍ୟନ୍ତ ଦୁହେଁ ଭାବ ବିଷ୍ଟ ଅବସ୍ଥାରେ ଆଲିଙ୍ଗନାବଦ୍ଧ ହୋଇ ରହିଲେ । ତତ୍‌ପରେ ସେ ଦୁହେଁ ମନହାଦ ପୂରଣ କରି, ପରସ୍ପରଠାରୁ ପୃଥକ ହୋଇ, ସେଇଠି ଯମୁନା ପୁଳିନର ବାଲୁକାମୟ ଶଯ୍ୟାରେ ବସି ପଡ଼ିଲେ । ତାପରେ ସେ ଦୁହେଁ ପରସ୍ପରକୁ କୁଶଳ ପ୍ରଶ୍ନ ପଚାରିଲେ ।

ବିଦୁର ପ୍ରାୟ ତିରିଶବର୍ଷ ପରେ ନିଜର ସ୍ନେହୀ ବନ୍ଧୁଙ୍କୁ ଦେଖି ଅତ୍ୟନ୍ତ ବ୍ୟାକୁଳତାର ସହିତ ତାଙ୍କୁ ବିଭିନ୍ନ ପ୍ରଶ୍ନବାଣରେ ଉଚ୍ଛିନ୍ନ କରି ପକାଇଲେ । ଉଦ୍ଧବ ସଂସାରୀ ଲୋକମାନଙ୍କ ସହିତ ସମସ୍ତ ସମ୍ପର୍କ ତୁଟାଇ ଦେଇଥିଲେ; କିନ୍ତୁ ଶ୍ରୀକୃଷ୍ଣ ଥିଲେ ତାଙ୍କ ଜୀବନର ସର୍ବସ୍ୱ । ବିଦୁର ମଧ୍ୟ ବହୁଦିନ ହେଲା ସାଧାରଣ ସମ୍ପର୍କରୁ ଦୂରରେ ଥିଲେ । ସେ ମଧ୍ୟ ମନେ ମନେ ଅହରହ ଶ୍ରୀକୃଷ୍ଣଙ୍କୁ ଧ୍ୟାନ କରୁଥିଲେ ଏବଂ ତାଙ୍କର ଚରିତ ଆଲୋଚନାରେ ସମୟ ବିତାଉଥିଲେ । ସେ ଉଦ୍ଧବଙ୍କ ପାଖରେ ବସି ପଚାରିଲେ—"ମହାଶୟ, ମୋତେ ଆପଣ ଶ୍ରୀକୃଷ୍ଣଙ୍କ ସମ୍ପର୍କୀୟମାନଙ୍କ ସମ୍ବନ୍ଧରେ ପୂର୍ଣ୍ଣ ବିବରଣୀ ଦିଅନ୍ତୁ ।"

ଆଖିରେ ପ୍ରେମାଶ୍ରୁ ଛଳ ଛଳ କରି କହିଲେ ଉଦ୍ଧବ—'ବିଦୁର, ତୁମେ କାହା ବିଷୟରେ ପଚାରୁଛ ? ମୁଁ କାହାର କୁଶଳବାର୍ତ୍ତା ତୁମ ଆଗରେ ବଖାଣିବି ?"

ଏହାଶୁଣି ବିଦୁର ଅତ୍ୟନ୍ତ ସ୍ନେହପୂର୍ଣ୍ଣ ବାଣୀରେ କହିଲେ—"ମହାରାଜ, ମୁଁ ପ୍ରଭାସ କ୍ଷେତ୍ରରେ ବିଚରଣ କରୁଥିବା ସମୟରେ ଶୁଣିଲି ଯେ, କୁରୁକ୍ଷେତ୍ର ଯୁଦ୍ଧରେ ପାଣ୍ଡବମାନଙ୍କ ବ୍ୟତୀତ ମୋର ସମସ୍ତ ଆତ୍ମୀୟ ନିପାତ ହୋଇଯାଇଛନ୍ତି । ତାହା ଅବଶ୍ୟ ଥିଲା—ଅବଶ୍ୟମ୍ଭାବୀ, ସେମାନେ ଯେଉଁ ନାରକୀୟ ପଥରେ ପାଦ ବଢ଼ାଇ କ୍ଷିପ୍ର ଗତିରେ ଅଗ୍ରସର ହେଉଥିଲେ, ଧ୍ୱଂସ ବ୍ୟତୀତ ସେମାନଙ୍କ ଭାଗ୍ୟରେ ଆଉ କିଛି ହେଲେ ଲେଖା ନଥିଲା । ସେମାନେ ଜାଣିଶୁଣି ବିଷଧର ସର୍ପଠାରୁ ଆହୁରି ଭୟଙ୍କର ସ୍ୱଭାବର ପ୍ରାଣୀ ଦୁର୍ଯ୍ୟୋଧନର ଔଦ୍ଧତ୍ୟକୁ ପ୍ରଶ୍ରୟ ଦେଉଥିଲେ । ତେଣୁ ସେମାନେ ମୃତ୍ୟୁମୁଖରେ ପଡ଼ିବା ସ୍ୱାଭାବିକ । ଆପଣ ମୋତେ ଯଦୁବଂଶୀମାନଙ୍କ କୁଶଳ ସମ୍ବନ୍ଧରେ ଶୁଣାନ୍ତୁ । ସେମାନେ ଶ୍ରୀକୃଷ୍ଣଙ୍କ ଆଶ୍ରୟରେ ଥିବାରୁ କୌଣସି ବିପଦ ସେମାନଙ୍କୁ ଆକ୍ରମଣ କରି ନ ଥିବ; ତଥାପି ସେହିମାନଙ୍କ ମଙ୍ଗଳକର ସମ୍ବାଦ ଶୁଣାଇ ମୋର ଅଶାନ୍ତ ମନକୁ ଶାନ୍ତ କରନ୍ତୁ ।"

ସୂତ ମହର୍ଷି କହିଲେ—"ହେ ମୁନିମାନେ, ଦୁଇଭକ୍ତଙ୍କ ମଧ୍ୟରେ କି କି ଆଲୋଚନା ହେଲା ଏବଂ ବିଦୁର କେଉଁ କେଉଁ ବ୍ୟକ୍ତିଙ୍କ କୁଶଳ ସମ୍ବାଦ ଜାଣିବାକୁ ବ୍ୟାକୁଳ ଥିଲେ; ସେ ବିଷୟରେ ମୁଁ ଆପଣମାନଙ୍କୁ ବିସ୍ତୃତ ଭାବରେ ଶୁଣାଇବି ।"

ଏହା ଶୁଣି ଶୌନକ ଅତ୍ୟନ୍ତ ଆନନ୍ଦିତ ହୋଇ କହିଲେ—"ମହାଭାଗ, ସେହି ପ୍ରସଙ୍ଗ ଆମେମାନେ ଶୁଣିବାଲାଗି ଆଗ୍ରହୀ; ଆପଣ ଟିକିଏ ବିସ୍ତୃତ ଭାବେ ଆଲୋଚନା କରନ୍ତୁ ।

ଶୌନକଙ୍କ ଆଗ୍ରହ ଲକ୍ଷ୍ୟକରି ସୂତ ଉଦ୍ଧବ ବିଦୁର ସମ୍ବାଦ କହିବାକୁ ଉଦ୍ୟତ ହେଲେ ।

## ଛପ୍ପୟ

"ଧନ୍ୟ ଭାଗ ହୈ ଆଜ ଭକ୍ତ ଉଦ୍ଧବକୀ ଭେଁଟେ
ଦର୍ଶନ ଦେକେ ଦେବ ! ଦୁରିତ ଦୁଃଖ ସବହୀ ମେଟେ ।।
ଭୟୋ ତିରସ୍କୃତ ଫିରିହୂଁ ନ ମନ ମହଁ ହର୍ଷ ଶୋକ ହୈ
ବିଷୟ ଭୋଗ ମହଁ ଫସେଁ ୟା ବହିର୍ମୁଖ ଅଜ୍ଞଲୋକ ହୈ ।।
ୟହ ହରି କୀ ମାୟା ପ୍ରବଲ, ରଚେ ଖେଲ ଠଗିନୀ ନୟେ
ଜାତେ ତେ ଜଗ ମହଁ ବଚେ ଜେ ହରି ଶରଣାଗତ ଭୟେ ।।



## ଭଗବାନ୍‌ଙ୍କ ପରିବାରର କୁଶଳ ପ୍ରଶ୍ନ

"ତସ୍ୟ ପ୍ରପନ୍ନାଖିଳ ଲୋକପାନା—
ମବସ୍ଥିତାନାମନୁଶାସନେ ସ୍ୱେ ।।
ଅର୍ଥାୟ ଜାତସ୍ୟ ଯଦୁଷ୍ୱଜସ୍ୟ
ବାର୍ତ୍ତାଂ ସଖେ କୀର୍ତ୍ତୟ ତୀର୍ଥକୀର୍ତ୍ତେଃ" ।।

(ଭାଗବତ ୩ । ୧ । ୪୫)

ଛପ୍‌ପୟ

"ସଖେ କହୋ ଅବ୍ କୁଶଲ କେ କାରଣ ଜେ ହୈଂ
ଶରଣାଗତ ପ୍ରତିପାଲ ଅର୍ଥ ଜନ କେ ଭ ତା ତେ ହୈଂ ।।
ସଙ୍କର୍ଷଣ ବଲରାମ ଦେବ କୀ କୁଶଲ ସୁନାଓ
ହୈଂ ସୁଖତେଂ ବସୁଦେବ ସବ୍‌ନ କୀ ବାତ୍ ବତାଓ ।।
ଉଦ୍ଧବଜୀ ! ପ୍ରଦ୍ୟୁମ୍ନ ଅନିରୁଦ୍ଧାଦିକ ଯେ ସ୍ୱଜନ ହୈଂ
ତେ ଯଦୁବଂଶୀ କୁଶଲ ହୈଂ ଜେ ସବ ହରିକୀ ଶରନ ହୈଂ" ।।

ଅର୍ଥାତ୍—ବିଦୁର ଉଦ୍ଧବଙ୍କୁ ପଚାରୁଛନ୍ତି—"ହେ ସଖେ, ହେ ଉଦ୍ଧବ, ଯେଉଁମାନେ ପ୍ରସନ୍ନାଦିରୂପ, ଇନ୍ଦ୍ରାଦି ଦେବତା ଓ ଲୋକପାଳ ତଥା ନିଜ ଆଜ୍ଞାରେ ସନ୍ନିଦ୍ଧ ଅନୁଚରମାନଙ୍କ ଉପକାର ନିମିତ୍ତ ଯଦୁବଂଶରେ ଉତ୍ପନ୍ନ ହୋଇଛନ୍ତି, ସେହି ପବିତ୍ରଯଶା, ଅନନ୍ତ, ଅଜ, ଅଚ୍ୟୁତ ଭଗବାନ ବାସୁଦେବଙ୍କର ସମସ୍ତ କୁଶଳବାର୍ତ୍ତା କହି ମୋର ମନକୁ ଶାନ୍ତ ପ୍ରଦାନ କରନ୍ତୁ ।

ଆଲୋଚନାର ପାରମ୍ପରିକ ରୀତି ହେଉଛି—ପ୍ରଶ୍ନକର୍ତ୍ତାଙ୍କୁ ସ୍ୱାଗତ ଜଣାଇବା । ପ୍ରଥମେ ତାଙ୍କୁ ଯଥାଯୋଗ୍ୟ ସତ୍କାର କରି ବିଶ୍ରାମ କରିବାର ସୁବିଧା ଦେବା ଏବଂ ତତ୍ପରେ ତାଙ୍କ ନିକଟକୁ ଯାଇ କୁଶଳ ପ୍ରଶ୍ନ କରିବା ରୀତି ଆମ

ସମାଜରେ ପ୍ରଚଳିତ ରହିଛି । ତାହାପରେ ସେ ଯାହା କହିବେ ତାହାକୁ ଧୈର୍ଯ୍ୟର ସହିତ ଶୁଣିବା ହେଉଛି—ଆମର ପରମ୍ପରା, ତାଙ୍କଠାରୁ ଶୁଣି ସାରିବା ପରେ ଉପକ୍ରମ ତଥା ଉପସଂହାରପୂର୍ବକ ତାଙ୍କ ପ୍ରଶ୍ନର ସମୁଚିତ ଉତ୍ତର ଦିଆଯାଏ । ସେହି ସମୟରେ କୌଣସି ଅବାନ୍ତର କିମ୍ବା ପ୍ରସଙ୍ଗ ବହିର୍ଭୂତ ଆଲୋଚନା କରାଯାଏ ନାହିଁ । ଏହିପରି ଭାବରେ ଆଗନ୍ତୁକ ବ୍ୟକ୍ତିଙ୍କ ସହିତ ଆଲୋଚନା କଲେ, ଉଭୟ ବ୍ୟକ୍ତିଙ୍କ ମଧ୍ୟରେ ଆନ୍ତରିକତା ବୃଦ୍ଧି ପାଇଥାଏ ।

କିନ୍ତୁ ଆଜିକାଲିରେ ସେ ରୀତିର ଅନୁସରଣ କରାଯାଉ ନାହିଁ । ଉଭୟ ଆଗନ୍ତୁକ ତଥା ଅତିଥି ସତ୍କାରକ ଉପରେ ଗୋଟିଏ ଖାପଛଡ଼ା ରୀତିରେ ଆଲୋଚନା କରି କଥାର ଗୁରୁତ୍ୱ ଲଘୁକରି ଦେଉଛନ୍ତି । ସାଧାରଣତଃ ଲୋକମାନେ ଖୋଲା ହୃଦୟରେ ଆଲୋଚନା କରୁନାହାନ୍ତି ।

କିନ୍ତୁ ଉଦ୍ଧବ ଓ ବିଦୁର ଥିଲେ—ଅଭିନ୍ନ ହୃଦୟ । ତାଙ୍କ ବନ୍ଧୁତ୍ୱର ଏକମାତ୍ର ଧ୍ୟେୟ ଥିଲା--ନିଷ୍କପଟତା, ଦୁହେଁ ଯାକ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଜୀବନରେ ସର୍ବସ୍ୱବୋଲି ମନେ କରୁଥିଲେ । ଦୁହିଁଙ୍କ ଉପରେ ଭଗବାନ୍ ଶ୍ରୀକୃଷ୍ଣଙ୍କର ଅଶେଷ କରୁଣା ରହିଥିଲା । ଶ୍ରୀକୃଷ୍ଣଙ୍କୁ ସେ ଦୁହେଁ ନିଜର ସଖା, ମନ୍ତ୍ରୀ, ଆତ୍ମୀୟସ୍ୱଜନ ବୋଲି ମନେ କରି ସତ୍କାର କରୁଥିଲେ । କେବଳ ଭକ୍ତମାନେ ଭଗବାନ୍‌ଙ୍କୁ ଶ୍ରଦ୍ଧା କରୁଥିଲେ, ତା' ନୁହେଁ, ଭଗବାନ୍ ମଧ୍ୟ ଭକ୍ତମାନଙ୍କୁ ଅନୁରୂପ ଶ୍ରଦ୍ଧା କରୁଥିଲେ । ଏଇଥିପାଇଁ ବିଦୁର ଉଦ୍ଧବଙ୍କୁ ସମ୍ମାନ କରୁଥିଲେ ଏବଂ ଉଦ୍ଧବ ମଧ୍ୟ ବିଦୁରଙ୍କୁ ଜଣେ ଆଦର୍ଶ ବ୍ୟକ୍ତି ବୋଲି ଭାବୁଥିଲେ । ବହୁଦିନ ପରେ ଦୁହିଁଙ୍କର ସାକ୍ଷାତ୍ ହୋଇଥିବାରୁ, ଦୁହେଁ ଅତ୍ୟନ୍ତ ଆନନ୍ଦରେ, ଯମୁନା ପୁଲିନରେ ବସି ମନଖୋଲି ଆଲୋଚନା କରିବାକୁ ଲାଗିଲେ ।

ବିଦୁର ପ୍ରଥମେ ଆଲୋଚନା ଆରମ୍ଭକରି କହିଲେ—ଉଦ୍ଧବ ମହୋଦୟ, ଆପଣ ଏଠାକୁ କେବେ ଆସିଲେ ? ଏଠାରେ ଆପଣ ଏକାକୀ ଏପରି ବିଷଣ୍ଣ ମନରେ ବୁଲୁଛନ୍ତି କାହିଁକି ? ମୋର ପରିଭ୍ରମଣର ଏକମାତ୍ର କାରଣ ହେଉଛି—ମୁଁ ଅନେକ ଦିନ ହେବ ହସ୍ତିନା ଛାଡ଼ି ଆସିଲିଣି । ବହୁଦିନ ହେଲା ମୁଁ ମୋର ଆତ୍ମୀୟ ସ୍ୱଜନ ମାନଙ୍କ ସମ୍ବନ୍ଧରେ କିଛି ଖବର ପାଇନାହିଁ । ମୁଁ ଅବଶ୍ୟ ଅନେକ ପରିଚିତ ବ୍ୟକ୍ତିଙ୍କୁ ପୁଣ୍ୟତୀର୍ଥମାନଙ୍କରେ ଦେଖିବାର ସୁଯୋଗ ପାଇଛି; କିନ୍ତୁ ମୁଁ ଜାଣି ଶୁଣି ସେମାନଙ୍କ ସହିତ ଆଲୋଚନା କରିନାହିଁ । ମୁଁ ଛଦ୍ମବେଶରେ ତୀର୍ଥଭ୍ରମଣ କରୁଥିଲି । ଆଜି ସୌଭାଗ୍ୟକୁ ଆପଣଙ୍କ ସହିତ ସାକ୍ଷାତ୍ ହୋଇଗଲା । ଆପଣ ମୋତେ ସମସ୍ତଙ୍କ ସମ୍ବନ୍ଧରେ ଧାରଣା ଦିଅନ୍ତୁ ।

ଉଦ୍ଧବ ଅତ୍ୟନ୍ତ ଦୁଃଖିତ ହୋଇ କହିଲେ—"ବିଦୁର ମହୋଦୟ, ଆପଣ କାହା ବିଷୟରେ ଜାଣିବାକୁ ଚାହୁଁଛନ୍ତି ?

ବିଦୁର ଉଦ୍ଧବଙ୍କ କଥା ଶୁଣି କହିଲେ—"ଆପଣ ଏପରି ଭାବରେ ବିଷଣ୍ଣ ମନରେ କଥାବାର୍ତ୍ତା କରୁଛନ୍ତି କାହିଁକି ? ମୁଁ ଆଉ କାହା ବିଷୟରେ ପ୍ରଶ୍ନ କରିବି ? ଯେ ସକଳ ଜଗତର ମୂଳାଧାର, ଯାହାଙ୍କର ନାଭିକମଳରୁ ବ୍ରହ୍ମା ସମ୍ଭୂତ ହୋଇ ଜଗତର ସୃଷ୍ଟି କରିଛନ୍ତି, ଯେ ଜଗତର କୋଟି କୋଟି ଅସୁରମାନଙ୍କ ସଂହାର ନିମିତ୍ତ ମନୁଷ୍ୟରୂପ ଧାରଣ କରିଛନ୍ତି, ସେହି ଭକ୍ତାଧୀନ ବାସୁଦେବଙ୍କ ସମ୍ବନ୍ଧରେ ମୁଁ ପଚାରୁଛି । ସେ ଆନନ୍ଦରେ ସହିତ ନିଜ ବଂଶର ପ୍ରତିପାଳନ କରୁଛନ୍ତି ତ ?

"ମୋର ପରମ ମିତ୍ର ବସୁଦେବଙ୍କର କୁଶଳ ବାର୍ତ୍ତା ଶୁଣିବା ଲାଗି ମୋ' ମନରେ କୌତୂହଳ ଜାତ ହୋଇଛି । ସେ ମୋର ଭଉଣୀ କୁନ୍ତୀଙ୍କୁ ଅତ୍ୟନ୍ତ ସ୍ନେହ କରନ୍ତି । ଏବେ ସୁଦ୍ଧା ସେ କୁନ୍ତୀକୁ ଶ୍ରେଷ୍ଠ ଝିଅଟିଏ ପରି ମନେ କରି, ତା'ର ସମସ୍ତ ଅଳି ଅର୍ଦ୍ଦଳି ପୂରଣ କରୁଛନ୍ତି । ବହୁଦିନ ହେଲା ତାଙ୍କ ସହିତ ମୋର ଭେଟ ହୋଇ ନାହିଁ । ସେ ନିଜର ଭଣଜା ପାଣ୍ଡବମାନଙ୍କୁ ପୁତ୍ରଠାରୁ ଅଧିକ ସ୍ନେହ କରନ୍ତି ।

"ଭଗବାନ ବାସୁଦେବଙ୍କ ଜ୍ୟେଷ୍ଠ ପୁତ୍ର ପ୍ରଦ୍ୟୁମ୍ନ କୁଶଳରେ ଅଛି ତ ? ପ୍ରଦ୍ୟୁମ୍ନଙ୍କ ପରି ସୁନ୍ଦର ରାଜକୁମାର ସଂସାରରେ ଆଉ କେହି ଜଣେ ହେଲେ ନାହାନ୍ତି । ସେ କାମଦେବଙ୍କ ଅବତାର; ଅନଙ୍ଗର ଦେହ ଧାରଣ କରି ରୁକ୍ମିଣୀ ଦେବୀଙ୍କ ଗର୍ଭରୁ ଜାତ ହୋଇଥିଲେ । ମହାରାଣୀ ରୁକ୍ମିଣୀ ତାଙ୍କୁ ପାଇବା ଲାଗି ବହୁ ତପସ୍ୟା କରିଥିଲେ । ସଂସାରରେ ଦେହ ଧାରଣ କରିଥିବା ପ୍ରତ୍ୟେକ ବ୍ୟକ୍ତି ପୁଅଟିଏ ପାଇବା ପାଇଁ ଉତ୍କଟ ଅଭିଳାଷ ପୋଷଣ କରିଥାନ୍ତି । ଏପରିକି, ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ମଧ୍ୟ ପ୍ରଦ୍ୟୁମ୍ନଙ୍କୁ ପାଇବା ଲାଗି ହିମାଳୟକୁ ଯାଇ ଭୋଳାନାଥ ଆଶୁତୋଷଙ୍କୁ ଆରାଧନା କରିଥିଲେ । ପ୍ରଦ୍ୟୁମ୍ନ ଥିଲେ ପରାକ୍ରମୀ ଶୂର ବୀର ତଥା ସମଗ୍ର ନାରାୟଣୀ ସେନାର ସେନାନୀ । ତାଙ୍କର ଭୁଜବଳରେ ଯାଦବମାନେ ମର୍ତ୍ତ୍ୟରେ ସ୍ୱର୍ଗ ସୁଖ ଉପଭୋଗ କରୁଛନ୍ତି ।

"ହଁ, ଉଦ୍ଧବ ମହୋଦୟ, ମୁଁ ଗୋଟିଏ କଥା ଭୁଲିଯାଇଛି, ଆପଣ ସର୍ବ ପ୍ରଥମେ ଉଗ୍ରସେନଙ୍କର ଖବର ମୋତେ ଜଣାଇ ଦିଅନ୍ତୁ । ସେ ନିଜର ଦୁଷ୍ଟ ପୁତ୍ର ପାଇଁ ଘୋର ଦୁଃଖ ଭୋଗ କରିଥିଲେ । ସେ ଗୋଟିଏ କୁଳକଳଙ୍କୀ ପୁତ୍ର ଲାଗି ସର୍ବଦା ଦୁଃଖୀ ରହୁଥିଲେ । ସେ ଏବେ ଆନନ୍ଦରେ ଅଛନ୍ତି ତ ? ଭଗବାନ ଶ୍ରୀକୃଷ୍ଣ କଂସକୁ ମାରିବା ପରେ ନିଜେ ରାଜା ନ ହୋଇ ଉଗ୍ରସେନଙ୍କୁ ସାତ୍ୱତ, ବୃଷ୍ଣି, ଭୋଜ ତଥା ଦାଶାର୍ହବଂଶୀୟ ଯାଦବମାନଙ୍କର ଶ୍ରେଷ୍ଠ ନୃପେ ସିଂହାସନରେ ବସାଇ ଥିଲେ । ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ଉଗ୍ରସେନଙ୍କ ସିଂହାସନ ତଳେ ଛିଡ଼ା ହୋଇ ତାଙ୍କ ଆଜ୍ଞା ପାଳନ କରୁଥିଲେ । ଆପଣ ମୋତେ ସେହି ଉଗ୍ରସେନଙ୍କ ଖବର ଶୁଣାଇ ପରିତୃପ୍ତ କରନ୍ତୁ ।

"ହଁ, ଆହୁରି ମଧ୍ୟ ଜାମ୍ବବତୀ ପୁତ୍ର ଶାମ୍ବ ବିଷୟରେ ପଚାରିବାକୁ ମୁଁ ଭୁଲି ଯାଇଛି । ତାଙ୍କର ଅପରୂପ ସୌନ୍ଦର୍ଯ୍ୟ ଦେଖି କୁଳକାମିନୀମାନେ ବିମୋହିତ ହୋଇ ଯାଆନ୍ତି । ମାତୃସ୍ଥାନୀୟା ହେଲେ ମଧ୍ୟ ଷୋଳସହସ୍ର ମହିଷୀ ଶାମ୍ବଙ୍କ ରୂପ ଲାବଣ୍ୟର ଛଟାରେ ବିମୋହିତା ହୋଇ ଯାଉଥିଲେ । ସେ ପୂର୍ବ ଜନ୍ମରେ ପାର୍ବତୀ ଦେବୀଙ୍କ ପୁତ୍ର କାର୍ତ୍ତିକେୟ ରୂପେ ଜନ୍ମ ଗ୍ରହଣ କରି ଦେବତାମାନଙ୍କ ସେନାପତିତ୍ୱ ଗ୍ରହଣ କରିଥିଲେ । ଶାମ୍ବଙ୍କୁ ପାଇବା ଲାଗି ଜାମ୍ବବତୀ ଦେବୀ ବହୁ ବ୍ରତ ପାଳନ କରିଥିଲେ । ଶ୍ରୀକୃଷ୍ଣଙ୍କର ସେ ନେହଶୀଳ ପୁତ୍ର ଶାମ୍ବ ଶୂରବୀରମାନଙ୍କର ଅଗ୍ରଗଣ୍ୟ ଅଟନ୍ତି । ସେ ଏବେ କୁଶଳରେ ଅଛନ୍ତି ତ ?

"ସାତ୍ୟକିଙ୍କ ସମ୍ବନ୍ଧରେ ଶୁଣିବା ଲାଗି ମୋ' ମନରେ ପ୍ରବଳ ଇଚ୍ଛା ଜାତ ହୋଇଛି । ସେ ଭଗବାନ ଶ୍ରୀକୃଷ୍ଣଙ୍କର ବାହ୍ୟପ୍ରାଣ ସ୍ୱରୂପ ଅଟନ୍ତି । ତାଙ୍କୁ ଛାଡ଼ି ପ୍ରଭୁ ଦଣ୍ଡେ ହେଲେ ସ୍ଥିର ହୋଇ ରହି ପାରନ୍ତି ନାହିଁ । ଶ୍ରୀକୃଷ୍ଣଙ୍କୁ ଛାଡ଼ି ଅନ୍ୟତ୍ର କ୍ଷଣମାତ୍ର ରହିବା ତାଙ୍କ ପକ୍ଷରେ ସମ୍ଭବ ହୁଏ ନାହିଁ । ମହା ମହା ତପୀ, ଋଷି ଓ ତପସ୍ୱୀମାନେ ଯୁଗଯୁଗ ଧରି ଯେଉଁ ସାନ୍ନିଧ୍ୟ ପାଇପାରି ନାହାନ୍ତି, ସାତ୍ୟକିଙ୍କ ପକ୍ଷରେ ତାହା ଅନାୟାସରେ ସମ୍ଭବ ହୋଇପାରିଛି । ସେ ଜଣେ ମହାନ୍ ଭକ୍ତ ହେଲେ ମଧ୍ୟ ବୀରମାନଙ୍କ ମଉଡ଼ମଣି ଅଟନ୍ତି ଏବଂ ସେଇଥିପାଇଁ ଗାଣ୍ଡିବଧାରୀ ଅର୍ଜ୍ଜୁନ ତାଙ୍କୁ ଅତ୍ୟନ୍ତ ଭଲ ପାଆନ୍ତି । ଅର୍ଜ୍ଜୁନଙ୍କର ପ୍ରିୟ ଶିଷ୍ୟ ଭାବରେ ସେ ସୁଖରେ କାଳାତିପାତ କରୁଥିବେ ନିଶ୍ଚୟ ! ଆପଣ ସେହି ଭକ୍ତାଗ୍ରଣୀ ତଥା ବୀର ପୁଙ୍ଗବ ସାତ୍ୟକିଙ୍କ କୁଶଳ ସମ୍ବାଦ କହି ମୋର କର୍ଣ୍ଣପଥକୁ ପବିତ୍ର କରନ୍ତୁ ।

"ଉଦ୍ଧବ ମହୋଦୟ, ଆପଣଙ୍କୁ ଦେଖିବା ପୂର୍ବରୁ ମୁଁ ବ୍ରଜଭୂମିର ଧୂଳିକଣାକୁ ଦେଖି ଅକ୍ରୁରଙ୍କୁ ମନେ ପକାଉଥିଲି । ସେ କଂସର ଦୂତ ସାଜି ବ୍ରଜ-ଭୂମିକୁ ଆସିଥିଲେ; କିନ୍ତୁ ବୃନ୍ଦାବନରେ ଶ୍ରୀକୃଷ୍ଣଙ୍କ ଧ୍ୱଜ, ବଜ୍ର ଓ ପଦ୍ମାଦି ଚିହ୍ନିତ ପାଦପଦ୍ମର ପ୍ରତିଚ୍ଛବି ଲକ୍ଷ୍ୟ କରି, ରଥ ଉପରୁ ଡେଇଁ ପଡ଼ି ସେହି ପଦ ଚିହ୍ନରେ ଲେଟି ପଡ଼ିଥିଲେ । ଆହା, ତାଙ୍କ ପ୍ରାଣରେ କି ନିଷ୍ଠା, କି ଐକାନ୍ତିକ ଭକ୍ତିର ପ୍ରଖର ସ୍ରୋତ ଛୁଟିଥିଲା ନ ତେ ? ଶାନ୍ତ ବୁଦ୍ଧିମାନ୍ ଅକ୍ରୂର ନିଜ ପିତା ଶ୍ୱଫଲ୍‌କଙ୍କ ପରି ଅତ୍ୟନ୍ତ ଶୁଭ ଦର୍ଶନ ତଥା ମଙ୍ଗଳମୟ ଥିଲେ । ସେହି ଶ୍ରୀକୃଷ୍ଣକିଙ୍କର ଅକ୍ରୂରଙ୍କ ସମ୍ବାଦ ମୋତେ ଶୁଣାଇ ମୋର ବିକଳ ପ୍ରାଣକୁ ଆଶ୍ୱସ୍ତ କରନ୍ତୁ ।

"ମହୋଦୟ, ବସୁଦେବଙ୍କ ପତ୍ନୀମାନେ କୁଶଳରେ ଅଛନ୍ତି ତ ? ମୁଁ ଅନେକ ଦିନ ତଳେ ଦ୍ୱାରକାକୁ ଯାଇଥିଲି । ଦେବକୀ ଅତ୍ୟନ୍ତ ସୌଭାଗ୍ୟଶାଳିନୀ । ବେଦତ୍ରୟୀ ଯଜ୍ଞର ବିସ୍ତାରକାରୀ ଅର୍ଥ ତଥା ଅରଣ୍ୟ ଅଗ୍ନିକୁ ଜାତକଲା ପରି, ସେ ଭଗବାନ ମଧୁସୂଦନଙ୍କୁ ଜନ୍ମ ଦେଇଥିଲେ । ଚନ୍ଦ୍ରିକା ମୋତିକୁ, ପ୍ରଭା ପ୍ରକାଶକୁ, ପୃଥ୍ୱୀ ସୁଗନ୍ଧକୁ, ରସାୟନ ସୁବର୍ଣ୍ଣକୁ, ଲତା ଗୁଳ୍ମ ସୁଗନ୍ଧିତ ପୁଷ୍ପକୁ ଅଥବା ସିଂହୀ

ନିଜର ପ୍ରଥମ ସନ୍ତାନକୁ ଜାତ କରି ଯେପରି ସୌଭାଗ୍ୟଶାଳିନୀ ହୋଇଥାଏ; ଶ୍ରୀକୃଷ୍ଣଙ୍କୁ ପୁତ୍ରରୂପେ ଜନ୍ମ ଦେଇ ମାତା ଦେବକୀ ତତୋଽଧିକ ସୌଭାଗ୍ୟବତୀ ହୋଇଛନ୍ତି । ସେ ନିଜର ବଧୂମାନଙ୍କ ସହିତ ମଙ୍ଗଳରେ ଅଛନ୍ତି ତ ?

"ଉପାସନା କରୁଥିବା ମନ, ବୁଦ୍ଧି ଚିତ୍ତ ଓ ଅହଂକାର, ଅନ୍ତଃକରଣର ଏହି ବୃତ୍ତି ଚତୁଷ୍ଟୟ ସ୍ୱରୂପୀ ହେଉଛନ୍ତି—ପ୍ରଦ୍ୟୁମ୍ନ, ଅନିରୁଦ୍ଧ, ସଙ୍କର୍ଷଣ ଓ ବାସୁଦେବ । ମନର ଅଧିଷ୍ଠାତା ଅନିରୁଦ୍ଧ ବାଣାସୁରର ଗୁପ୍ତ ଅନ୍ତଃପୁରରେ ପ୍ରବେଶ କରି ଊଷାଦେବୀଙ୍କୁ ବିବାହ କରିଥିଲେ । ସେ ନିଜର କାର୍ଯ୍ୟଦ୍ୱାରା ସମୁଦାୟ ପରିବାରକୁ ସନ୍ତୁଷ୍ଟ କରିଛନ୍ତି । ସେ ଏବେ ମଙ୍ଗଳରେ ଆଛନ୍ତି ତ ?

"ବନ୍ଧୁ ଉଦ୍ଧବ, ମୁଁ ସମସ୍ତ ଯାଦବଙ୍କ ନାମ ଜାଣେ ନାହିଁ । ତନ୍ମଧ୍ୟରେ ଯେଉଁମାନେ ମୁଖ୍ୟ, ସେହିମାନଙ୍କ କୁଶଳ ସମ୍ବାଦ କହି ମୋତେ ପରିତୃପ୍ତ କରନ୍ତୁ । ହଁ, ମୁଁ ଭୁଲି ଯାଉଛି । ହୃଦିକ, ଚାରୁଦେଷ୍ଣ ଓ ଗଦ ପ୍ରଭୃତି ସତ୍ୟଭାମାଙ୍କ ପୁତ୍ରମାନେ ଭଲରେ ଅଛନ୍ତି ତ ?

"ଯାଦବ ଓ ପାଣ୍ଡବମାନଙ୍କ ମଧ୍ୟରେ କେବଳ ବନ୍ଧୁତା ନୁହେଁ, ସେମାନଙ୍କ ମଧ୍ୟରେ ହାର୍ଦ୍ଦିକ ସ୍ନେହ ସମ୍ବନ୍ଧ ରହିଛି । ପାଣ୍ଡବଙ୍କର ପ୍ରାଣାଧାର ହେଉଛନ୍ତି—ଶ୍ରୀକୃଷ୍ଣ । ତାଙ୍କର ଆଶ୍ରୟରେ ରହି ସେମାନେ ହୃତଗୌରବ ତଥା ଅପହୃତା ରାଜ୍ୟଲକ୍ଷ୍ମୀଙ୍କୁ ପୁଣି ସଗୌରବେ ଲାଭ କରି ପାରିଛନ୍ତି । ସେହି ପାଣ୍ଡବ-ମାନଙ୍କ ସମ୍ବାଦ ସର୍ବଦା ଶ୍ରୀକୃଷ୍ଣଙ୍କ ନିକଟକୁ ଆସୁଥିବ ! ଧର୍ମରାଜ ଏବେ ସମ୍ରାଟ୍ ହୋଇଥିବାର ସମ୍ବାଦ ମୁଁ ପାଇଛି । ସମ୍ରାଟ୍ ହେବାପରେ, ପୂର୍ବପରି ତାଙ୍କର ଧର୍ମ ବୁଦ୍ଧି ଅଟଳ ରହିଛି ତ ? ରାଜଲକ୍ଷ୍ମୀର ଅଭିମାନରେ ସେ ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କୁ ଉଚିତ ସମ୍ମାନ ଦେଉଛନ୍ତି ତ ? ତା' ବ୍ୟତୀତ ସେ ଧର୍ମପୂର୍ବକ ନିଜର ପ୍ରଜାମାନଙ୍କୁ ପାଳନ କରୁଛନ୍ତି ତ ?

"ତାଙ୍କର ସାନଭାଇ ଭୀମ ସ୍ୱଭାବରେ କ୍ରୋଧୀ । ସେ ନିଜର କ୍ରୋଧାଗ୍ନିରେ ସମଗ୍ର କୌରବ ବଂଶକୁ ଜାଳି ପୋଡ଼ି ଧ୍ୱଂସ କରିଦେବା ପାଇଁ ଦୀର୍ଘ ନିଃଶ୍ୱାସ ତ୍ୟାଗ କରୁଥିଲେ । ଏଥର ତାଙ୍କ କ୍ରୋଧ ସାଫଲ୍ୟ ମଣ୍ଡିତ ହୋଇଛି । ଶୁଣିଲି, ସେ ଏକାକୀ ଧୃତରାଷ୍ଟ୍ରଙ୍କ ଏକଶତ ପୁତ୍ରଙ୍କୁ ଗଦାଘାତରେ ନିପାତ କରିଛନ୍ତି । ସେ ଶତ୍ରୁଙ୍କୁ ବିନାଶ କରିବା ପରେ, ଏବେ କ୍ରୋଧଶାନ୍ତ କରି ଆନନ୍ଦରେ ରହୁଛନ୍ତି ତ ? ଏବେ ତାଙ୍କ ମନରେ କୌରବଙ୍କ ପ୍ରତି ଅସୂୟା ନାହିଁ ତ ?

ଗାଣ୍ଡିବଧାରୀ, କୁନ୍ତୀ ନନ୍ଦନ, ସଂସାରରେ ଅଦ୍ୱିତୀୟ ଧନୁର୍ଦ୍ଧାରୀ, ପାଣ୍ଡୁ ବଂଶର କୀର୍ତ୍ତିମାନ ଅର୍ଜ୍ଜୁନ ଏବେ ସୁଖରେ ଅଛନ୍ତି ତ ? ମନୁଷ୍ୟ କଥା କହିବା କ'ଣ ? ସେ ନିଜର ରଣନିପୁଣତାରେ ସ୍ୱୟଂ ପିନାକଧାରୀ ଶିବଙ୍କୁ ଚମତ୍କୃତ

କରିଥିଲେ । ସେ ଦୁଇ ହାତରେ ସମାନ ଖବରେ ବାଣବର୍ଷା କରିବାରେ ସମର୍ଥ । ସେହି ଧନଞ୍ଜୟ ଶତ୍ରୁମାନଙ୍କୁ ନିପାତ କରିବା ପରେ ଆନନ୍ଦରେ ଧର୍ମରାଜଙ୍କୁ ଅନୁଗମନ କରୁଛନ୍ତି ତ ?

"ଭାଇ, ମୋତେ ନକୁଳ ଓ ସହଦେବଙ୍କ କୁଶଳବାର୍ତ୍ତା ଶୁଣାଇ ପ୍ରୀତ କରାଅ । ଦୁହେଁ ମାତା କୁନ୍ତୀଙ୍କର ପ୍ରିୟତମ ପୁତ୍ର ତଥା ଯୁଧିଷ୍ଠିର, ଭୀମ ଓ ଅର୍ଜୁନଙ୍କର ପ୍ରିୟତମ ଭାଇ ରୂପେ ସମସ୍ତ ସ୍ନେହର ଅଧିକାରୀ ଅଟନ୍ତି । ସେମାନେ ଅଶ୍ୱିନୀ କୁମାରଙ୍କ ଔରସରୁ ମାଦ୍ରୀଦେବୀଙ୍କ ଗର୍ଭରୁ ଜାତ ହୋଇଥିଲେ ମଧ୍ୟ ମାତା କୁନ୍ତୀ ସେହି ଦୁହିଁଙ୍କୁ ଧର୍ମରାଜ, ଭୀମ ଓ ଅର୍ଜୁନଙ୍କଠାରୁ ଅଧିକ ସ୍ନେହ କରନ୍ତି । ନକୁଳ ଓ ସହଦେବ ମଧ୍ୟ ପ୍ରବଳ ପରାକ୍ରମୀ ଯୋଦ୍ଧା ରୂପେ ଖ୍ୟାତି ଅର୍ଜ୍ଜନ କରିଛନ୍ତି ।

"ଭକ୍ତ ଶିରୋମଣି ଉଦ୍ଧବ, ମାତା କୁନ୍ତୀଙ୍କର ସମ୍ବାଦ କ'ଣ ? ଦେଖ, ତାଙ୍କ ଭାଗ୍ୟର ବିଚିତ୍ର ଖେଳ ! ପାଣ୍ଡୁଙ୍କ ପରି କିପୁର ବିଜୟୀ ସ୍ୱାମୀ, ପଞ୍ଚପାଣ୍ଡବଙ୍କ ପରି ବୀର ପୁତ୍ରଙ୍କୁ ପାଇ ମଧ୍ୟ ସେ ଅନାଥିନୀ ପରି ଭାଗ୍ୟଚକ୍ରର ଆବର୍ତ୍ତରେ ପଡ଼ି କେତେ ଦୁଃଖ ଭୋଗ କରି ନ ଥିଲେ ? ସେ କେବଳ ପୁତ୍ରମାନଙ୍କ ଉପରେ ଭରସା କରି, ସେମାନଙ୍କ ସୁଖ ସୌଭାଗ୍ୟ ଦେଖିବା ଆଶାରେ, ସେମାନଙ୍କୁ ରାଜସିଂହାସନରେ ବସାଇ ନିଜର ସନ୍ତପ୍ତ ଆତ୍ମାକୁ ପରିତୃପ୍ତ କରିବା ନିମିତ୍ତ ବିଧବା ହେବା ପରେ ମଧ୍ୟ ଭାରତୀୟ ସାଧ୍ୱୀ ନାରୀମାନଙ୍କ ପନ୍ଥା ଅନୁସରଣ କରି ସ୍ୱାମୀଙ୍କ ଚିତାରେ ଆତ୍ମ ହୁତି ଦେଇ ନ ଥିଲେ । ସେ ସାରା ଜୀବନ କେବଳ ଦୁଃଖଭୋଗ କରିବା ପାଇଁ ବାଞ୍ଛାକଳ୍ପତରୁ ଶ୍ରୀକୃଷ୍ଣଙ୍କ ଆଗରେ ବର ପ୍ରାର୍ଥନା କରିଥିଲେ । ତାଙ୍କ କୁଶଳ ସମ୍ବାଦ ଆଉ ପଚାରିବି କଅଣ ? ସେ ବିପଦ ଜାଲ ମଧ୍ୟରେ ପଡ଼ି ମଧ୍ୟ ମହାସୁଖ ଅନୁଭବ କରୁଥିଲେ ।

"ହଁ, ମହାମନା ଉଦ୍ଧବ, ଏହି ତୀର୍ଥଯାତ୍ରା ସମୟରେ ମୁଁ ସର୍ବାପେକ୍ଷା ଅଧିକ ଚିନ୍ତା କରିଛି ଅନ୍ଧରାଜା ଧୃତରାଷ୍ଟ୍ରଙ୍କ ବିଷୟରେ । ବୃଦ୍ଧକାଳରେ ସେ ବୁଦ୍ଧିଭ୍ରଷ୍ଟ ହୋଇ ଯାଇଥିଲେ । ପୁତ୍ରମୋହରେ ସେ ଜ୍ଞାନାଜ୍ଞାନ କିଛି ବୁଝିପାରୁ ନ ଥିଲେ । ସେହି ମାୟା ଜାଲରେ ସେ ଏପରି ଛନ୍ଦି ହୋଇ ଯାଇଥିଲେ ଯେ, ଇଷ୍ଟ ଅନିଷ୍ଟ ଚିନ୍ତା କରିବା ଭଳି ଶକ୍ତି ତାଙ୍କର ନ ଥିଲା । ସେ ନିଜର ଦୁଷ୍ଟ ପୁତ୍ରଙ୍କ ହସ୍ତରେ କ୍ରୀଡ଼ନକ ହୋଇ ଯାଇଥିଲେ । ଆପଣ କହନ୍ତୁ, ରାଜସିଂହାସନର ପ୍ରକୃତ ଅଧିକାରୀ ପାଣ୍ଡୁ ନ ଥିଲେ କି ? ସେ ଇହଧାମ ତ୍ୟାଗ କରି ସ୍ୱର୍ଗବାସୀ ହୁଅନ୍ତେ, ତାଙ୍କ ପୁତ୍ରମାନଙ୍କୁ ରାଜସିଂହାସନ ଛାଡ଼ିଦେବା ଧୃତରାଷ୍ଟ୍ରଙ୍କ ପକ୍ଷରେ ସମୁଚିତ ତଥା ନ୍ୟାୟସଙ୍ଗତ ମାର୍ଗ ହୋଇ ନଥାନ୍ତା କି ? ସେ ତାହା ନକରି, ଅନାଥିନୀ କୁନ୍ତୀ ଓ ତାଙ୍କ ପୁତ୍ରମାନଙ୍କୁ ରାଜ୍ୟରୁ ବାହାର କରିଦେଲେ । ସେମାନେ ନିରୁପାୟ ହୋଇ ଦ୍ୱାର ଦ୍ୱାର

ଭିକ୍ଷା'ମାଗି ଉଦର ପୋଷଣ କଲେ । ମୁଁ ମଧ୍ୟ ତାଙ୍କର ଗୋଟିଏ ଭାଇ; ସର୍ବଦା ତାଙ୍କର କଲ୍ୟାଣରେ ମୁଁ ଆତ୍ମନିୟୋଗ କରି ଆସିଛି । ସବୁବେଳେ ମୁଁ ତାଙ୍କୁ ସୁମନ୍ତ୍ରଣା ଦେଉଥିଲି; କିନ୍ତୁ ତାଙ୍କର ଆଗରେ ଦୁଷ୍ଟ ଦୁର୍ଯ୍ୟୋଧନ ମୋତେ ମର୍ମନ୍ତୁଦ ତିରସ୍କାର କରି ନଗରରୁ ବାହାର କରିଦେଲା । ସେ ସବୁ ଶୁଣି, ତାହା ନିତାନ୍ତ ଅନ୍ୟାୟ ବୋଲି ଅନୁଭବ କରିଥିଲେ ମଧ୍ୟ ତୁନି ହୋଇ ରହିଲେ । ମୁଁ ଅନାଥଙ୍କ ପରି ତୀର୍ଥ ଯାତ୍ରାରେ ବାହାରି ଗଲି ।

“ଆପଣ ଭାବନ୍ତୁ ନାହିଁ ଯେ, ମୁଁ ଅପମାନରେ ଜର୍ଜରିତ ହୋଇ ଧୃତରାଷ୍ଟ୍ରଙ୍କ ପ୍ରତି ଏପରି ବାକ୍ୟ ପ୍ରୟୋଗ କରୁଛି । ଅନ୍ୟକୁ ଦୁଃଖ ଦେବାର ସାମର୍ଥ୍ୟ ମନୁଷ୍ୟର ନାହିଁ । ସଂସାରରେ ଯାହା କିଛି ହେଉଛି; ସବୁ କିଛି ସେହି ଲୀଳାମୟଙ୍କର ଲୀଳା; ସେହି ନଟବରଙ୍କର କଳାକୃତ ଏବ ଅନ୍ତର୍ଯ୍ୟାମୀ ନାଥଙ୍କର ପ୍ରେରଣା ! ସେ ଯାହା ଦ୍ୱାରା ଯାହା କରାଇବାକୁ ଚାହାନ୍ତି, ତାହାହିଁ କରାଇ ନିଅନ୍ତି, ନିଜେ ଅଜନ୍ମା ହୋଇଥିଲେ ମଧ୍ୟ ଜନ୍ମଗ୍ରହଣ କରିଛନ୍ତି । ସ୍ୱୟଂ ପୁରୁଷୋତ୍ତମ ହୋଇଥିଲେ ସୁଦ୍ଧା ସାଧାରଣ ପୁରୁଷଙ୍କ ପରି ମାନୁଷୀଲୀଳା କରୁଛନ୍ତି । ସେହି ଚିଦାନନ୍ଦ ମୋ' ପ୍ରତି ସଦୟ ହୋଇ ମୋତେ ପାପାତ୍ମାଙ୍କଠାରୁ ଦୂରେଇ ଆଣିଛନ୍ତି; ନୋହିଲେ, ସାରାଜୀବନ ସେହିମାନଙ୍କ ପାପଜ୍ୱାଳାରେ ଦଗ୍ଧ ହୋଇ ମୁଁ ମରିଥାନ୍ତି ଏବଂ ସେମାନଙ୍କ ଅନ୍ୟାୟ ଓ ଅତ୍ୟାଚାରକୁ ସହ୍ୟ କରି ତଦନୁସାରେ କାର୍ଯ୍ୟ କରିଥାନ୍ତି । ଜଗଦାଧାର କୃପାନିଧାନ ଭଗବାନ୍ ଦୟାକରି ମୋତେ ସେଠାରୁ ନେଇ ଆସିଛନ୍ତି । ମୁଁ ତାଙ୍କ ନାମ ଜପକରି ସୁଖରେ ତୀର୍ଥ ଭ୍ରମଣ କରୁଛି ।

“ଉଦ୍ଧବ ମହୋଦୟ, ମୁଁ ଆଶ୍ଚର୍ଯ୍ୟ ହେଉଛି; ଯେଉଁ ପ୍ରଭୁ ଅନୁଗ୍ରହ ଓ ନିଗ୍ରହରେ ସର୍ବ ସମର୍ଥ; ସେ ଆଜିଯାଏ କୌରବମାନଙ୍କ ଅତ୍ୟାଚାରକୁ ସହ୍ୟ କଲେ କାହିଁକି ? ପ୍ରଭୁ କୌରବମାନଙ୍କଠାରୁ ଆହୁରି ମଦମତ୍ତ ଦୁଷ୍ଟମାନଙ୍କୁ ଘଡ଼ିକରେ ମୃତ୍ୟୁ ପଥର ପଥିକ କରାଇ ଦେଇଛନ୍ତି; କିନ୍ତୁ କୌରବମାନେ ଭଗବଦ୍ ଭକ୍ତ ପାଣ୍ଡବମାନଙ୍କ ପ୍ରତି ଅକଥନୀୟ ଅତ୍ୟାଚାର କରିଥିଲେହେଁ, ପ୍ରଭୁ ଶ୍ରୀକୃଷ୍ଣ ସେମାନଙ୍କୁ କ୍ଷମା ଦେଇ ଆସିଥିଲେ । ଯେତେବେଳେ ସେମାନଙ୍କ ପାପର ଘଡ଼ା ପୂର୍ଣ୍ଣ ହୋଇଗଲା ଏବଂ ଦୁଷ୍ଟତା ସୀମା ଅତିକ୍ରମ କରିଗଲା, ସେତିକିବେଳେ ସେମାନଙ୍କୁ ଏକା ସାଥିରେ କାଟି ପକାଇଲେ ।

ଏଇଥିପାଇଁ ଭଗବାନଙ୍କୁ ଜନ୍ମ ଗ୍ରହଣ କରିବାର କ'ଣ ଆବଶ୍ୟକତା ଥିଲା । ସେ ଅଜନ୍ମା ଏବଂ କର୍ମରୁ ପୃଥକ୍ । ସେ ସାଧୁମାନଙ୍କ ପରିତ୍ରାଣ ଓ ଦୁଷ୍ଟ ନିବାରଣ ନିମିତ୍ତ ଯୁଗଯୁଗ ବ୍ୟାପୀ ଭିନ୍ନଭିନ୍ନ ଯୋନିରେ ଜନ୍ମଗ୍ରହଣ କରି ଆସୁଛନ୍ତି । ବେଳେବେଳେ ସେହି ଅବତାର ମଧ୍ୟରେ ଲୋକୋତ୍ତର ବିଲକ୍ଷଣ ପରିଲକ୍ଷିତ

ହେଉଛି । ଅବଶ୍ୟ ତାଙ୍କ ଅବତାର ଗ୍ରହଣ ମଧ୍ୟରେ ଦୁଷ୍ଟଙ୍କୁ ବିନାଶ କରିବା ଅନ୍ୟତମ ଗୌଣ କାରଣ ହୋଇପାରେ; କିନ୍ତୁ ପ୍ରକୃତରେ ସେ ଭକ୍ତମାନଙ୍କୁ ସୁଖ ଦେବା ପାଇଁ ଅବତାର ଗ୍ରହଣ କରୁଛନ୍ତି । ଭଗବାନ ମାନବୀୟ ଲୀଳାପାଇଁ ପ୍ରକଟ ହୋଇ କର୍ଣ୍ଣରସାୟନ ତୁଲ୍ୟ ଗୁଣମାନ ବିସ୍ତାର କରନ୍ତି । ତେଣୁ ହେ ଉଦ୍ଧବ, ଅନ୍ୟମାନଙ୍କ ବିଷୟରେ ମୁଁ ଯାହା ଯାହା ପଚାରିଲି, ସେଥି ମଧ୍ୟରେ ମୁଖ୍ୟ କାରଣ ହେଉଛି, ଭକ୍ତ ନିସ୍ତାରଣ ବାନା ଧାରଣ କରିଥିବା ତଥା ଦେବତାମାନଙ୍କ ହିତଲାଗି ଜନ୍ମ ଗ୍ରହଣ କରିଥିବା ଯଦୁକୁଳଭୂଷଣ ଅଜନ୍ମା ଭଗବାନ ବାସୁଦେବଙ୍କ ସମ୍ବନ୍ଧରେ ମତେ ସମସ୍ତ ବିବରଣୀ ଦେଇ ଆଶ୍ୱସ୍ତ କରନ୍ତୁ ।

ସୂତ ମହର୍ଷି ମୁନିମାନଙ୍କୁ ସମ୍ବୋଧନ କରି କହିଲେ—"ହେ ମୁନିଗଣ, ଏତିକି କହି ବିଦୁର ନୀରବ ହୋଇଗଲେ । ତା'ପରେ ସେ ଭକ୍ତ ଶିରୋମଣି ଉଦ୍ଧବଙ୍କ ମୁଖରୁ ସମୁଚିତ ଉତ୍ତର ପାଇବା ପାଇଁ ଏକ ଲୟରେ ତାଙ୍କ ଆଡ଼କୁ ଚାହିଁ ରହିଲେ ।"

## ଛପ୍ପୟ

"ପାଣ୍ଡବ ପ୍ରଭୁକେ ଭକ୍ତ ସବନି କୀ କୁଶଲ ସୁନାଓ
ଅନ୍ଧବନ୍ଧୁ ଧୃତରାଷ୍ଟ୍ର କରେଂ କା ସବ୍ ସମୁଝାଓ ।।
କରିକେଂ ଦର୍ଶନ ସ୍ୱାଦ ଆପ୍‌କେ ଆୟେ ସବ୍‌ହି
ଇସ୍ମୃତି ପଟପୈଖିଁ ଚେ ଚିନ୍ କୀବିତ ସେ ଅବହି ।।
ଅଥବା ଛୋଡ଼ୋ ସବନି କୁଁ ଚର୍ଚ୍ଚା ହରି ହୀ କୀ କରୋ
ତୃଷିତ ହୃଦୟକୀ ଶାନ୍ତି ହିତ, କୀର୍ତ୍ତନ ହରି ଗୁନତେଂ ଭରୋ"।



## ବିଦୁରଙ୍କ ପ୍ରଶ୍ନରେ ଉଦ୍ଧବଙ୍କ

## ଭାବ ସମାଧି

"ପୁଲକୋଦ୍‌ଭିନ୍ନ ସର୍ବାଙ୍ଗୋ ମୁଞ୍ଚନ୍ ମୀଲଦ୍‌ଦୃଶା ଶୁଚଃ
ପୂର୍ଣ୍ଣାର୍ଥୋ ଲକ୍ଷିତସ୍ତେନ ସ୍ନେହ ପ୍ରସରସଂପ୍ଲୁତଃ ।।
ଶନକୈର୍ଭଗବଲ୍ଲୋକାନ୍ ନୃଲୋକଂ ପୁନରାଗତଃ
ବିମୃଜ୍ୟ ନେତ୍ରେ ବିଦୁରଂ ପ୍ରୀତ୍ୟାହୋଦ୍ଧବ ଉତ୍‌ସ୍ମୟନ୍" ।

( ଭାଗବତ ୩ । ୨ । ୫ ଓ ୭ )

### ଲିପ୍‌ସ୍ୟ

"ସୁନି ଉଦ୍ଧବ ହରିନାମ ଦେହକୀ ସୁଧି ବିସରାଇ
ନାମ ଧାମତେଂ ରୂପ ସ୍ବାଦ ଲୀଳା ହେପୁଁ ଆଇ ।।
ଗଦ୍‌ଗଦ୍ ବାଣୀ ଭଇ ରୂପ ସାଗର ମହଁ ହ୍ନାୟେ
ରୋମାଞ୍ଚିତ ବପୁ ଭୟୋ ଅଶ୍ରୁ ନୟନନ ମହଁ ଛାୟେ ।।
ଭଲେ ସ୍ବା ସଂସର କଁ ନୟନ ମୂଁଦ ତନ୍ମୟ ଭୟେ
ନତ୍ୟଧାମ ବୃନ୍ଦାବପିନ ଧ୍ୟାନ ଧରତ ମନ ତେଂ ଗୟେ"

ଅର୍ଥାତ୍—ବିଦୁର ଶ୍ରୀକୃଷ୍ଣ ସମ୍ବନ୍ଧରେ ପ୍ରଶ୍ନ ପଚାରିବାର ଶୁଣି ଉଦ୍ଧବଙ୍କ ଶରୀରରେ ରୋମାଞ୍ଚ ହୋଇଗଲା । ସେ ଧ୍ୟାନସ୍ଥ ହୋଇ ଥିବାରୁ ତାଙ୍କ ଚକ୍ଷୁ ବନ୍ଦ ହୋଇଥିଲା; ତେଣୁ ସେଥିରୁ ପ୍ରେମ ଅଶ୍ରୁ ବିଗଳିତ ହେବାକୁ ଲାଗିଲା । ଉଦ୍ଧବଙ୍କ ଅବସ୍ଥା ଲକ୍ଷ୍ୟ କରି ବିଦୁର ଭାବିଲେ ଯେ, ଏ ମହାଶୟ ତଦ୍‌ଗତ ଭାବନାରେ ମଗ୍ନ ଯାଇଛନ୍ତି । କିଛି ସମୟ ପରେ, ଉଦ୍ଧବ ପାରଲୌକିକ ଜଗତରୁ ଇହଲୋକକୁ ଫେରିଆସିଲେ । ସେ ନିଜ ପୀତାମ୍ବରରେ ଚକ୍ଷୁରୁ ବହୁଥିବା ଅଶ୍ରୁଧାରକୁ ପୋଛିଦେଇ ଅତ୍ୟନ୍ତ ବିସ୍ମୟ-ବିମୂଢ଼ ହୋଇ ଉତ୍ତର ଦେଲେ ।

କେତେକ ମୋକ୍ଷ ଅଭିଳାଷୀ ବ୍ୟକ୍ତି ନିଜ ମନରୁ ସନ୍ଦେହ ଦୂର କରିବା ପାଇଁ ଗୁରୁଜନମାନଙ୍କଠାରେ ପ୍ରଶ୍ନ କରି ଥାଆନ୍ତି ଏବଂ ଗୁରୁଜନମାନେ ଶାସ୍ତ୍ରୀୟ ବିଧି ଅନୁସାରେ ସେହି ପ୍ରଶ୍ନର ଉପଯୁକ୍ତ ଉତ୍ତର ଦେଇ ଜିଜ୍ଞାସୁର ମନରେ ଶାନ୍ତି ପ୍ରଦାନ କରନ୍ତି । ଅଭି କେତେକ ସନ୍ଦେହ ସାଧାରଣ ଲୋକମାନଙ୍କ ମନରେ ଜାତ ହୋଇଥାଏ; କିନ୍ତୁ ସେମାନେ ପ୍ରକୃତ ଢଙ୍ଗରେ ପ୍ରଶ୍ନ ପଚାରି ଜାଣନ୍ତି ନାହିଁ । ତେଣୁ ସେହି ଧରଣର ପ୍ରଶ୍ନ ସବୁ ସାଧାରଣଙ୍କ ଗୋଚରାର୍ଥରେ ପଚରା ଯାଇଥାଏ । ସମସ୍ତେ ଉପଯୁକ୍ତ ଢଙ୍ଗରେ କୌଣସି ଚର୍ଚ୍ଚା ଉତ୍ଥାପନ କରି ପାରନ୍ତି ନାହିଁ । ନିର୍ଦ୍ଦିଷ୍ଟ ଶୈଳୀରେ ପଚାରିବା ମଧ୍ୟ ଗୋଟିଏ ସ୍ୱତନ୍ତ୍ର କଳା । କେତେ ଜଣ ଭାଗ୍ୟବାନ୍ ବ୍ୟକ୍ତି ସେହିପରି କଳାର ଅଧିକାରୀ ହୋଇପାରନ୍ତି ।

କେତେକ ବୁଦ୍ଧିମାନ୍ ଲୋକ ଆମର ମନୋଗତ ଭାବକୁ ବ୍ୟକ୍ତ କରି-ଦେଇ ପାରନ୍ତି । ଯଦି ତାହା ଏକାନ୍ତ ଗୋପନୀୟ ହୋଇ ନ ଥାଏ, ଆମେମାନେ ସଙ୍ଗେ ସଙ୍ଗେ ଉତ୍ତର ଦେଉଥାଉଁ– "ହଁ ହଁ, ତୁମେ ମୋ' ମନ କଥା କହିଦେଲ ।" ମହର୍ଷି ଶୌନକ ଓ ପରୀକ୍ଷିତ୍ ମହାରାଜ ବୁଦ୍ଧିଜୀବୀ ସିଦ୍ଧ-ପୁରୁଷ । ସେ ଦୁହେଁ ସଂସାରବାସୀଙ୍କ ହିତ ଉଦ୍ଦେଶ୍ୟରେ ପ୍ରଶ୍ନ କରୁଥିଲେ । ପ୍ରକୃତରେ ଦେଖିବାକୁ ଗଲେ—ସେ ଦୁହିଙ୍କ ମନରେ କୌଣସି ସନ୍ଦେହ ନ ଥିଲା, କେବଳ ଲୋକମାନଙ୍କ ଉପକାର ଉଦ୍ଦେଶ୍ୟରେ ସେ ଦୁହେଁ ପ୍ରଶ୍ନ କରି ଉତ୍ତର ଶୁଣୁଥିଲେ ।

ଅନେକ ଜନ୍ମର ସାଧନା ଫଳରେ ଭକ୍ତମାନଙ୍କ ମନରେ ଭଗବଦ୍ ବିଷୟ ବ୍ୟତୀତ ଅନ୍ୟ କୌଣସି ବିଷୟରେ ଶଙ୍କା ଉତ୍ପନ୍ନ ହୁଏନାହିଁ । କାମାସକ୍ତ ପୁରୁଷ-ମାନଙ୍କ ମନରେ ଯେପରି କାମିନୀମାନଙ୍କ ରୂପଗୁଣର ପ୍ରଶଂସା ଶୁଣିବାକୁ ଆଗ୍ରହ ଜାତ ହୋଇଥାଏ, ଠିକ ସେହିପରି, ଭକ୍ତଜନଙ୍କ ମନରେ ହରିକଥା ଶୁଣିବାକୁ ଅତ୍ୟନ୍ତ ବ୍ୟାକୁଳତା ଜାତ ହୋଇଥାଏ । ସେହି ପରିପେକ୍ଷୀରେ ବିଦୁରଙ୍କ ମନରେ ଯଦୁବଂଶର ହିତଚିନ୍ତା ରୂପକ ଶଙ୍କା ଜାତ ହୋଇଥିଲା । ତେଣୁ ପରୀକ୍ଷିତ ପଚାରିଲେ —"ମହର୍ଷି ଶୁକଦେବ, ବିଦୁରଙ୍କ ମନରେ ଯଦୁବଂଶର ପ୍ରତ୍ୟେକ ଲୋକଙ୍କ ବିଷୟରେ ଜାଣିବା ଲାଗି ଶଙ୍କା ହେଲା କାହିଁକି ? ସେ ତ କେବଳ ବାସୁଦେବଙ୍କ ସମ୍ବନ୍ଧରେ ପଚାରି ଥାଆନ୍ତେ । ସେ କେବଳ ଶ୍ରୀକୃଷ୍ଣଙ୍କ ବିଷୟରେ ନ ପଚାରି, ଗୋଟି ଗୋଟି କରି ଯଦୁବଂଶୀଙ୍କ ସମ୍ବନ୍ଧରେ ପ୍ରଶ୍ନ କରିଥିଲେ, ଏହାର କାରଣ କଣ ?"

ଏହା ଶୁଣି ଶୁକଦେବ ଟିକିଏ ହସି ଦେଇ କହିଲେ—"ରାଜନ୍, ଠିକ୍ ପ୍ରଶ୍ନ ପଚାରିଛନ୍ତି । ବିଦୁରଙ୍କ ମନରେ ଯେଉଁ ଶଙ୍କା ହୋଇଥିଲା, ତାର ଅନେକ କାରଣ ରହିଛି ।

ପ୍ରଥମ କାରଣ ହେଲା—ଯେଉଁମାନେ ପରମ ଭାଗବତ, ସେମାନଙ୍କ ମନରେ ଭଗବାନ୍‌ଙ୍କ ସମ୍ବନ୍ଧରେ କିଛି ଶୁଣିବା ପୂର୍ବରୁ, ଭକ୍ତ ସମାଜର ମଙ୍ଗଳ ପାଇଁ ସନ୍ଦେହ ଜାତ ହୋଇଥାଏ । କାରଣ ଭକ୍ତମାନଙ୍କ ମାଧ୍ୟମରେ ଭଗବାନ୍‌ଙ୍କ ପ୍ରାପ୍ତି ସହଜ ହୋଇଥାଏ । ଅନୁଚରଙ୍କ ଅନୁଗ୍ରହ ବ୍ୟତୀତ ପ୍ରଭୁଙ୍କ ଦର୍ଶନ ଆଦୌ ସହଜସାଧ୍ୟ ନୁହେଁ । ଏଇଥିପାଇଁ ବିଦୁର ପ୍ରଥମେ ଭଗବଦ୍ ଭକ୍ତମାନଙ୍କ ସମ୍ବନ୍ଧରେ ଜାଣିବାକୁ ପ୍ରଶ୍ନ କରିଥିଲେ ।

ଦ୍ୱିତୀୟ କାରଣ ହେଉଛି—ଯେ କୌଣସି ପ୍ରସଙ୍ଗର ଉତ୍ଥାପନ ପୂର୍ବରୁ ଗୋଟିଏ ଭୂମିକା ରହିଥାଏ । ତଦ୍‌ବ୍ୟତୀତ ବିଦୁର ପ୍ରଥମେ କୃଷ୍ଣ ବଳରାମଙ୍କ କୁଶଳବାର୍ତ୍ତା ସମ୍ବନ୍ଧରେ ପଚାରିଥିଲେ । କାରଣ ଭଗବାନ୍ ଶ୍ରୀକୃଷ୍ଣ ହେଉଛନ୍ତି—ତାଙ୍କର ଇଷ୍ଟ । ସେ ପ୍ରଥମେ ଶ୍ରୀକୃଷ୍ଣଙ୍କ ବିଷୟ ପଚାରିବା ସଙ୍ଗେ ସଙ୍ଗେ ତାଙ୍କର ମନେ ପଡ଼ିଗଲା ଯେ, ସେ ଶିଷ୍ଟାଚାର ଲଙ୍ଘନ କରିଛନ୍ତି । ତେଣୁ ସେ ବାସୁଦେବଙ୍କ ପ୍ରସଙ୍ଗ ଛାଡ଼ି ଦେଇ ଅନ୍ୟମାନଙ୍କ ବିଷୟରେ ବିଶେଷତଃ ବାସୁଦେବଙ୍କ ପରିବାର ସମ୍ବନ୍ଧରେ ପ୍ରଶ୍ନ କରିଥିଲେ । ସେହି ପ୍ରସଙ୍ଗରେ ଯେଉଁମାନଙ୍କ ନାମ ତାଙ୍କର ମନେ ପଡ଼ିଗଲା, ସେ ସେହିମାନଙ୍କ ବିଷୟରେ ପଚାରିଥିଲେ । ପରେ ପରେ ସେ ପାଣ୍ଡବ ଓ ଧୃତରାଷ୍ଟ୍ରଙ୍କ ସମ୍ବନ୍ଧରେ କୁଶଳ ପ୍ରଶ୍ନ କରିଥିଲେ । ପରିଶେଷରେ ସେ ମୁଖ୍ୟ ପ୍ରଶ୍ନ ଆଡ଼କୁ ଅଗେଇ ଆସି କହିଥିଲେ—"ଉଦ୍ଧବ ମହୋଦୟ, ମୋତେ ତୁମ ଶ୍ୟାମସୁନ୍ଦରଙ୍କ କୁଶଳ ବାର୍ତ୍ତା ଶୁଣାଅ ।"

"ତଦ୍‌ବ୍ୟତୀତ କଥା ପ୍ରସଙ୍ଗରେ ରସ ସୃଷ୍ଟି କରିବା ନିମିତ୍ତ ଲୋକମାନେ ଗୋଟିଏ ଭୂମିକା ପ୍ରସ୍ତୁତ କରିଥା'ନ୍ତି । ସେହି ଭୂମିକା ପ୍ରକରଣରେ ଯେ ବିଭିନ୍ନ କଥା ପଚାରି ଥିଲେ । ଆହୁରି ମଧ୍ୟ ବିଦୁର ବେଶ୍ ଜାଣିଥିଲେ ଯେ, ଉଦ୍ଧବଙ୍କୁ ଭଗବାନ ଶ୍ରୀକୃଷ୍ଣଙ୍କ ବିଷୟରେ ପ୍ରଥମେ କିଛି ପ୍ରଶ୍ନ କରିଦେଲେ, ତାଙ୍କର ଭାବସମାଧି ହୋଇଯିବ । ତେଣୁ ଯେ ପ୍ରଥମେ ଏଣୁ ତେଣୁ ଅନେକଙ୍କ ବିଷୟରେ ପଚାରିବା ପରେ ତୀର୍ଥକୀର୍ତ୍ତି ଶ୍ୟାମସୁନ୍ଦରଙ୍କ ନାମ ଧରିଥିଲେ; କିନ୍ତୁ ଉଦ୍ଧବ ପୂର୍ବର ପ୍ରଶ୍ନଗୁଡ଼ିକୁ ଆଦୌ ଶୁଣି ନ ଥିଲେ; ସେ କେବଳ ଶ୍ରୀକୃଷ୍ଣଙ୍କ ନାମ ଶୁଣିବା ମାତ୍ରେ, ବିଦୁରଙ୍କ ମନରେ ଯେଉଁ ଭୟ ହୋଇଥିଲା, ତାହା ହିଁ ଘଟିଲା, ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ନାମ ଶ୍ରବଣରେ ଉଦ୍ଧବଙ୍କର ଭାବସମାଧି ହୋଇ ଯାଇଥିଲା । ସେ ଭଗବତ ଲୀଳାରେ ତଲ୍ଲୀନ ହେବା ସଙ୍ଗେ ସଙ୍ଗେ ପ୍ରଭୁଙ୍କର 'ସ୍ୱଧାମ ପ୍ରତ୍ୟାଗମନ' ବିଷୟ ଚିନ୍ତାକରି ସମାଧି ମଗ୍ନ ହୋଇ ଯାଇଥିଲେ । ସେହି ପ୍ରସଙ୍ଗ ତାଙ୍କ ମନରେ ଉଠିବା ମାତ୍ରେ ସେ ବିହ୍ୱଳ ହୋଇ ଉଠିଲେ, ତାଙ୍କର କଣ୍ଠରୋଧ ହୋଇଗଲା । ସେ ମୂର୍ଚ୍ଛିତା-ବସ୍ଥାରେ ସମାଧିସ୍ଥ ହୋଇ ବିଦୁରଙ୍କ ପ୍ରଶ୍ନର ଉତ୍ତର ଦେଇପାରି ନଥିଲେ ।"

ଶ୍ରୀ ଶୁକଦେବଙ୍କ ଉତ୍ତର ଶୁଣି ପୁଣି ପଚାରିଲେ ମହାରାଜ ପରୀକ୍ଷିତ—"ପ୍ରଭୋ, ଆଜି ଆପଣ ଗୋଟିଏ ନୂତନ ତଥ୍ୟର ଉନ୍ମୋଚନ କଲେ । ମୋର

ଧାରଣା ଥିଲା—ଉଦ୍ଧବ ବିଦୁରଙ୍କ ପ୍ରଶ୍ନର ଉତ୍ତର ଦେଇ ସାରିବା ପରେ ଭାବସମାଧିରେ ନିମଗ୍ନ ହୋଇ ଥାଆନ୍ତେ । କାରଣ, ଭଗବତ୍ ଲୀଳା ଧୀରେ ଧୀରେ ତାଙ୍କର ଭକ୍ତ ହୃଦୟରେ ଆଲୋଡ଼ନ ସୃଷ୍ଟି କରିଥାଆନ୍ତା; ଏବଂ ସେ ପରିଶେଷରେ ତଦ୍‌ଗତ ଭାବରେ ବିଭୋର ହୋଇ ଭାବସମାଧିରେ ନିମଗ୍ନ ହୋଇ ଥାଆନ୍ତେ । ଏହିପରି ଅବସ୍ଥା ଅନ୍ୟାନ୍ୟ ଭକ୍ତମାନଙ୍କଠାରେ ଦେଖାଯାଇଥାଏ । କିନ୍ତୁ ଉଦ୍ଧବ କେବଳ ଶ୍ରୀକୃଷ୍ଣଙ୍କ ନାମ ଶ୍ରବଣ କରିବା ମାତ୍ରେ ତାଙ୍କର ମନ ଉଦ୍‌ବେଳିତ ହୋଇ ଉଠିଲା ଏବଂ ସେ ସମାଧିମଗ୍ନ ହୋଇ ପଡ଼ିଲେ । କେଉଁ ଧରଣର ସାଧନା ଫଳରେ ତାଙ୍କଠାରେ ଏପରି ବିଲକ୍ଷଣ ଦଶା ଉପସ୍ଥିତ ହୋଇଥିଲା, ସେ ସମ୍ବନ୍ଧରେ ଜାଣିବାକୁ ମୋ' ମନରେ ଶ୍ରଦ୍ଧାଜାତ ହୋ'ଇଛି ।''

ଏହା ଶୁଣିବା ମାତ୍ରେ ଶୁକଦେବ ହସିଦେଇ କହିଲେ ''ରାଜନ ଭଗବତ ପ୍ରେମ ବ୍ୟାପାରଟି ସହଜ ନୁହେଁ ଯେ, ପଇସା ଦେଇ ଦେଲେ ଉଚିତ ମୂଲ୍ୟରେ ଦ୍ରବ୍ୟ ମିଳିଯିବ । ଏହା ଅନେକ ଜନ୍ମର ସାଧନାର ଫଳ । ଜୀବ ଅନେକ ଯୋନିରେ ଜନ୍ମ ଗ୍ରହଣ କରି ସାଧନାର ସୁକୃତିବଳରେ ଭଗବଦ୍ ଭକ୍ତ ତଥା ଭଗବତ ପ୍ରେମର ଅଧିକାରୀ ହୋଇଥାଏ । ସେଥିଲାଗି ପରମାତ୍ମାଙ୍କର ସ୍ୱତନ୍ତ୍ର କୃପା ସେ ଲାଭ କରିଥାଏ । ଯେଉଁମାନେ ପୂର୍ବ ଜନ୍ମର ସାଧନା ଅନୁସାରେ ଭକ୍ତ ଭାବରେ ଜନ୍ମ ହୋଇଥା'ନ୍ତି, ସେମାନେ ସଂସ୍କାରବଶରୁ ପିଲାଟି ଦିନରୁ ଭଗବତ୍ ପ୍ରେମରେ ତଲ୍ଲୀନ ହୋଇ ଭଜନ ପୂଜନରେ ମନ ଦିଅନ୍ତି । ବାଛୁରୀ ଜନ୍ମ ହେବା ମାତ୍ରେ ମା'ଆର ଲାଙ୍ଗୁଳ କିମ୍ବା ଅନ୍ୟ କୌଣସି ଦ୍ରବ୍ୟକୁ ନ ଖୋଜି କେବଳ ଗାଈର ଚରି ଆଡ଼କୁ ଝାପଟିଯାଏ କାହିଁକି ? କିଏ ତାକୁ ଏ' ଶିକ୍ଷା ଦେଇଛି ? ସେ ଚରିରେ ମୁହଁ ଲଗାଇ ମୁଣ୍ଡିଆ ମାରି ମାରି କ୍ଷୀରପାନ କରିଥାଏ । ସେ କେବଳ ସଂସ୍କାରବଶରୁ ତାହା କରିଥାଏ । ଠିକ୍ ସେହିପରି ପ୍ରାକ୍ତନ ସଂସ୍କାର ଫଳରେ ଭକ୍ତ, ଆପଣାଛାଏଁ ଭଗବଦ୍ ଭକ୍ତିରେ ମଜ୍ଜିଯାଏ । ସେ ବାଲ୍ୟକାଳରୁ ଇଟା, ପଥର ଆଦି ଯାହା କିଛି ପାଏ, ତାକୁ 'ଗୋପାଳ' ବୋଲି ମନେକରି ତଦ୍‌ଗତ ଭାବନାରେ ପୂଜାକରି ବସେ । ସେ ମାଆ ପାଖକୁ ତାଟିଆଟିଏ ନେଇଯାଇ କହେ—''ମା' ମୋ' ଗୋପାଳଙ୍କ ପାଇଁ ଟିକିଏ କ୍ଷୀର ଦେଲୁ ।'' ମାଆ ମଧ୍ୟ ବାଳକର ବିନୋଦକୁ ହୃଦୟଙ୍ଗମ କରି, ତା'ର ଟିକି ଗିନାଟିରେ କ୍ଷୀର ଟୋପାଏ ଦେଇଦିଏ । ପିଲାଟି ଫୁଲତୋଳି, ନାନା ରଙ୍ଗର କନାରେ ତା' ଠାକୁରଙ୍କୁ ସଜାଇ ଦିଏ । ଟିକି ଟିକି ଗିନାରେ ଭୋଗ ସଜାଇ ଠାକୁରଙ୍କୁ ଭୋଗଦିଏ ଏବଂ ତାଙ୍କରି ସହିତ ଖେଳି ଦିନ କଟେ । ରାଜନ୍ ଆପଣ ମଧ୍ୟ ପିଲାଦିନେ ଏହିପରି ଖେଳୁଥିଲେ ।

ମହାରାଜ, ମୁଁ ଉଦ୍ଧବଙ୍କ ପିଲା ଦିନର କଥା ଶୁଣିଛି । ସେ ପାଞ୍ଚବର୍ଷ ବୟସର ପିଲା ହୋଇଥିବା ସମୟରେ ଏହିପରି ଭାବରେ ଖେଳୁଥିଲେ । ସେ

ମନମୋହନ ଗୋପାଳଙ୍କ ସହିତ ଏପରି ଖେଳରେ ମଜ୍ଜି ଯାଉଥିଲେ ଯେ, ସାଙ୍ଗପିଲାମାନେ ତାଙ୍କ ଉପରେ ଚଢ଼ୁଥିଲେ । ବେଳେ ବେଳେ ସେ ଖାଇବା ପିଇବା ଭୁଲି ଯାଉଥିଲେ । ତା ଦେଖି ତାଙ୍କ ମାତା ଅସି ଉଦ୍ଧବଙ୍କୁ ବୁଝାଇ ଖାଇବାକୁ ଦେଉଥିଲେ ।

ଉଦ୍ଧବ ଖାଇବା ପୂର୍ବରୁ ଗୋପାଳଙ୍କ ପାଖରେ ଲଡ଼ୁ ଝିଲି ଭୋଗ ଲଗାଇ, ତା'ପରେ ମାତାଙ୍କ ଅନୁରୋଧରେ ସେ ଖାଉଥିଲେ । ଉଦ୍ଧବଙ୍କର ଏପରି କୃତ୍ୟଦେଖି ମାଆ ମନେ ମନେ ଅତ୍ୟନ୍ତ ଆନନ୍ଦିତ ହେଉଥିଲେ । ତାଙ୍କ ପିଲାଦିନର ଖେଳ ପରିଣତ ବୟସରେ ଅଭ୍ୟାସରେ ପରିଣତ ହୋଇଥିଲା । ସେ ସାରା ଜୀବନ ଶ୍ୟାମସୁନ୍ଦରଙ୍କ ଭକ୍ତିରେ ଏତେ ମଜ୍ଜି ଯାଇଥିଲେ ଯେ ଶେଷରେ ପ୍ରଭୁଙ୍କର ଆଦରଣୀୟ ଭକ୍ତ ହୋଇଥିଲେ । ସେ ଛାୟାପରି ପ୍ରଭୁଙ୍କର ଅନୁଗମନ କରୁଥିଲେ । ସେ ପ୍ରଭୁଙ୍କର ଅନ୍ତଃପୁର ମଧ୍ୟକୁ ବିନା ବାଧାରେ ଚାଲି ଯାଉଥିଲେ । ଶ୍ୟାମସୁନ୍ଦରଙ୍କ ଅଷ୍ଟପାଟରାଣୀମାନେ ତାଙ୍କୁ ଆଦର କରୁଥିଲେ । ସେଠାରେ ମଧ୍ୟ ଠାକୁରାଣୀଙ୍କ ସହିତ ପ୍ରଭୁ ପଲଙ୍କରେ ବିଜେ କରିଥିବା ସମୟରେ ଉଦ୍ଧବ ପାଦସେବା କରୁଥିଲେ । ଅବୋଧ ପିଲାଟିଏ ପରି ଶ୍ୟାମସୁନ୍ଦର ଉଦ୍ଧବଙ୍କୁ ପଚାରୁଥିଲେ —"ଉଦ୍ଧବ, ମୁଁ ଏହି ସମସ୍ୟାର ସମ୍ମୁଖୀନ ହୋଇଛି । କଣ କରିବା କହିଲ ?"

ଉଦ୍ଧବ ମଧ୍ୟ ଅନ୍ତରଙ୍ଗ ବନ୍ଧୁ ଭାବରେ ଉଚିତ ପରାମର୍ଶ ଦେଇ ପ୍ରଭୁଙ୍କୁ ମୁଗ୍ଧ କରୁଥିଲେ । ଏହିପରି ଭାବରେ ଉଦ୍ଧବ ପ୍ରଭୁଙ୍କ ସେବା ଶତାଧିକ ବର୍ଷ କାଳ କରିଥିଲେ । ପରିଶେଷରେ ଶ୍ୟାମସୁନ୍ଦର ଇହଲୀଳା ସାଙ୍ଗକରି ଗୋଲୋକକୁ ପ୍ରୟାଣ କରନ୍ତେ, ଉଦ୍ଧବ ବ୍ୟାକୁଳ ହୋଇ ଏଣେ ତେଣେ ବୁଲି ପ୍ରଭୁଙ୍କୁ ଖୋଜୁଥିଲେ । ସେଦିନ ସେ ବାଲ୍ୟବନ୍ଧୁ ଉଦ୍ଧବଙ୍କୁ ଦେଖି ଅତ୍ୟନ୍ତ ପ୍ରୀତ ହୋଇଥିଲେ । କିନ୍ତୁ ଶ୍ରୀକୃଷ୍ଣ ଓ ତାଙ୍କ ପରିବାର ସମ୍ବନ୍ଧରେ ଶୁଣିବା ଲାଗି ବିଦୁର ତାଙ୍କୁ ପ୍ରଶ୍ନ କରନ୍ତେ, ଉଦ୍ଧବ ପ୍ରଭୁଙ୍କ ଲୀଳା ସ୍ମରଣ କରି ଆତ୍ମବିଭୋର ହୋଇ ଉଠିଲେ ଏବଂ ସେ ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣ ନାମାମୃତ ସିନ୍ଧୁରେ ନିମଜ୍ଜିତ ହୋଇ ଆତ୍ମବିସ୍ମୃତ ହୋଇଗଲେ । ସେ ପାଷାଣ ପ୍ରତିମା ପରି ନିସ୍ତବ୍ଧ ଓ ନିଶ୍ଚେଷ୍ଟ ଭାବରେ କିଛି ସମୟ ଜଗତକୁ ଭୁଲିଯାଇ ମନ ମଧ୍ୟରେ ଶ୍ରୀକୃଷ୍ଣଙ୍କୁ ସାକ୍ଷାତ୍ କରିଥିଲେ ।

ଉଦ୍ଧବଙ୍କ ତନ୍ମୟତାରେ ବିମୁଗ୍ଧ ହୋଇ ବିଦୁର ମନେ ମନେ ଭାବିଲେ— "ଆଜି ମୋର ଜୀବନ ସଫଳ ହୋଇଛି, ମୁଁ ଉଦ୍ଧବଙ୍କ ପରି ଜଣେ ଭକ୍ତଙ୍କ ଦର୍ଶନ ପାଇ ଜୀବନକୁ ଧନ୍ୟ କରିଛି ।"

ବିଦୁର ଉଦ୍ଧବଙ୍କ ଭାବସମାଧିରେ ବିମୁଗ୍ଧ ହୋଇଥିଲେହେଁ ଶ୍ରୀକୃଷ୍ଣଙ୍କ ସମ୍ବାଦ ଶୁଣିବା ଲାଗି ମନେ ମନେ ବ୍ୟଗ୍ର ହୋଇ ଉଠିଲେ । ତେଣୁ ସେ ଅନ୍ୟ

କିଛି ଉପାୟ ନପାଇ, "ଶ୍ରୀକୃଷ୍ଣ ଗୋବିନ୍ଦ ହରେ ମୁରାରେ, ହେ ନାଥ ନାରାୟଣ ବାସୁଦେବ" ଜପ କରିବାକୁ ଲାଗିଲେ ।

ଧୀରେ ଧୀରେ ଉଦ୍ଧବଙ୍କ ବାହ୍ୟଜ୍ଞାନ ଉଦ୍ରେକ ହେବାକୁ ଲାଗିଲା । ସେ ବସ୍ତ୍ରାଞ୍ଚଳରେ ଆଖି ପୋଛିଦେଇ ବିଦୁରଙ୍କୁ କିଛି କହିବା ଲାଗି ଉଦ୍ୟତ ହେଲେ ।

ଏହି ପ୍ରସଙ୍ଗର ବ୍ୟାଖ୍ୟା କରି ପରୀକ୍ଷିତ କହିଲେ—"ହେ ରାଜନ୍, ବିଦୁରଙ୍କ ପ୍ରଶ୍ନରେ ଉଦ୍ଧବଙ୍କର ଯେଉଁ ଦଶା ଉପସ୍ଥିତ ହୋଇଥିଲା, ଭକ୍ତିରସର ଦଶମ ଦଶା ବୋଲି ତାହାକୁ କୁହାଯାଏ । ଏହି ସମ୍ବାଦ ମୁଁ ତୁମକୁ ପରେ ବ୍ୟାଖ୍ୟା କରି ଶୁଣାଇବି । ଆପଣ ନିଶ୍ଚଳ ମନରେ ତାହା ଶ୍ରବଣ କରିବେ ।"

## ଛପ୍ପୟ

"ଉଦ୍ଧବ ଦେଖେ ବିକଳ ବିଦୁର ପହିଲେ ଘବଗ୍ୟେ ।
ପ୍ରେମଦଶା ପହିଚାନି କାନ ମହିଁ ନାମ ସୁନାୟେ ॥
ଦେଖି ଦଶବୀଂ ଦଶା ବିହ୍ୱଳ ମନ ମହିଁ ହରଷାୱେଂ ।
ଜାନି କୃତାରଥ କୃଷ୍ଣ କୃଷ୍ଣ କହି ଚେତ କରାୱେଂ ॥"
ମଙ୍ଗଲମୟ୍ ମଧୁମୟ୍ ମଧୁର ମନମୋହନ କେ ନାମ ସୁନି ।
ଶନୈଃ ଶନୈଃ ସହିଲେ ସଖା ପରତ ଶ୍ରବନ ମହିଁ ମଧୁର ଧୁନି ॥



# ଶ୍ରୀକୃଷ୍ଣ କଥା

"କୃଷ୍ଣଦ୍ୟୁମଣିନିମ୍ଳୋଚେ ଗୀର୍ଣ୍ଣେଷ୍ୱଜଗରେଣ ହ ।
କିଂ ନୁ ନଃ କୁଶଳଂ ବ୍ରୂୟାଂ ଗତଶ୍ରୀଷୁ ଗୃହେଷ୍ୱହମ୍ ॥
ଦୁର୍ଭଗୋ ବତ ଲୋକୋଽୟଂ ଯଦବୋ ନିତରାମପି ।
ଯେ ସମ୍ବସନ୍ତୋ ନ ବିଦୁର୍ହରିଂ ମୀନା ଇବୋଡୁପମ୍"

( ଭାଗବତ ୩ । ୨ । ୭ )

## ଛପ୍‌ପଦ୍ୟ

"ବୋଲେ ଉଦ୍ଧବ ସହ୍ମୁର ଧରୀସିର ରଜବ୍ରିକ ଥଲ କୀ
ବନ୍ଧୁ ବିଦୁର ! ଅବ କହୁଁ କୁଶଲ କୈସେ ଯଦୁକୁଳ କୀ ॥
ଭାଗ୍ୟହୀନ ୟହ ଲୋକ ଅଧିକ ଯଦୁବଂଶୀ ତାମେଂ
ପହିଚାନେ ପ୍ରଭୁ ନହୀଁ ଭୟେ ପରଗଟ କୁଲ ଜାମେଂ
ଅଜୀ କୁଶଲ ଅବ କା କହେଁ ଯାଦବେନ୍ଦ୍ର କେ ସଙ୍ଗ ଗଈ
ସମୃଦ୍ଧିଶାଲିନୀ ଶ୍ରୀ ସହିତ ଦ୍ୱାରବତୀ ବିଧବା ଭଈ" ॥

ଅର୍ଥାତ୍—ଉଦ୍ଧବ ବିଦୁରଙ୍କୁ କହୁଛନ୍ତି—"ଗଗନ ଚୂଡ଼ାମଣି ଭୁବନଭାସ୍କର-ରୂପୀ ଶ୍ରୀକୃଷ୍ଣ ଭଗବାନ୍ ଦ୍ୱାରକାର ଆକାଶରୁ ଅସ୍ତହୋଇ ଯାଇଛନ୍ତି । ତା ଫଳରେ ଭୁଜଙ୍ଗସ୍ୱରୂପୀ କାଳଦ୍ୱାରା ଗ୍ରସ୍ତ ତଥା ଶ୍ରୀହୀନ ଯଦୁବଂଶୀମାନଙ୍କ ସମ୍ବନ୍ଧରେ ଆଉ କ'ଣ କହିବି ? ବିଦୁର ମହୋଦୟ, ଏ ସଂସାର ଅତ୍ୟନ୍ତ ଭାଗ୍ୟହୀନ ଏବଂ ଯଦୁବଂଶୀମାନେ ମଧ୍ୟ ଅତ୍ୟନ୍ତ ଭାଗ୍ୟହୀନ । ସେମାନେ ଶ୍ରୀକୃଷ୍ଣଙ୍କ ସାନ୍ନିଧ୍ୟ ସର୍ବଦା ପାଇବାରେ ସମର୍ଥ ହୋଇଥିଲେହେଁ, ସମୁଦ୍ରରେ ରହୁଥିବା ଜୀବମାନେ ଯେପରି ଚନ୍ଦ୍ରମାଙ୍କୁ ଗୋଟିଏ ସାଧାରଣ ଜୀବ ବୋଲି ମନେ କରନ୍ତି; ଠିକ୍ ସେହିପରି, ସେମାନେ ପ୍ରଭୁଙ୍କ ଲୀଳା ସମ୍ବନ୍ଧରେ ଆଦୌ ଅବଗତ ହୋଇପାରିଲେ ନାହିଁ ।

ଜଳ ମଧ୍ୟରେ ସର୍ବଦା ବୁଡ଼ି ରହୁଥିବା ପ୍ରାଣୀ ଜଳକ୍ରୀଡ଼ା ସମ୍ବନ୍ଧରେ ଧାରଣା କରିପାରେ ନାହିଁ ତଥା ଯେଉଁମାନେ ଆଦୌ ଜଳ ସ୍ପର୍ଶ କରି ନାହାନ୍ତି । ସେମାନେ ମଧ୍ୟ ଜଳକ୍ରୀଡ଼ା ସମ୍ବନ୍ଧରେ ଧାରଣା କରିପାରନ୍ତି ନାହିଁ । ଯେଉଁମାନେ ପାଣିରେ ବୁଡ଼ିବା ଜାଣନ୍ତି ନାହିଁ, ସେମାନେ ଜଳକ୍ରୀଡ଼ା ସମ୍ବନ୍ଧରେ କେବଳ ମୌଖିକ ଜ୍ଞାନ ଅର୍ଜନ କରି ଥାଆନ୍ତି । ସେମାନଙ୍କର ଜ୍ଞାନ କେବଳ ଶାବ୍ଦିକ ସେମାନଙ୍କର ଆଦୌ ବ୍ୟାବହାରିକ ଜ୍ଞାନ ନ ଥାଏ । ସେମାନେ ସ୍ୱୟଂ ବ୍ୟାବହାରିକ ଜ୍ଞାନ ଅର୍ଜନ କରି ନ ଥିବାରୁ, ଅନ୍ୟଙ୍କୁ ସେ ସମ୍ବନ୍ଧରେ ଧାରଣା ଦେଇ ପାରନ୍ତି ନାହିଁ ।

ଯେଉଁମାନେ ଦିବ୍ୟ ପ୍ରେମର ଆସ୍ୱାଦନରେ ଲୀନ ହୋଇ ଥାଆନ୍ତି, ସେମାନଙ୍କର ଲୌକିକ ଜ୍ଞାନ ନଥାଏ । ସେମାନେ ସମାଧି ଅବସ୍ଥାରେ ଦିବ୍ୟ ସ୍ୱରୂପର ସନ୍ଦର୍ଶନରେ ମଗ୍ନ ହୋଇଥାଆନ୍ତି ।

ଉଦ୍ଧବଙ୍କ ମନରେ ଶ୍ରୀକୃଷ୍ଣଙ୍କ ସ୍ମୃତି ଜାଗ୍ରତ ହେବା ମାତ୍ରେ ସେ ଏକ ଦିବ୍ୟ ଲୋକରେ ଉପନୀତ ହୋଇ ଯାଇଥିଲେ । ସେ ଶ୍ରୀକୃଷ୍ଣଙ୍କ ଚରଣର ବନ୍ଦ-ମଧୁ ପାନରେ ମତ୍ତ ହୋଇ ଉଠିଥିଲେ । ତାଙ୍କର ବାହ୍ୟ ଜଗତର ଧାରଣା ନ ଥିଲା, କିନ୍ତୁ ବିଦୁରଙ୍କଦ୍ୱାରା ଆରମ୍ଭ କରାଯାଇଥିବା ନାମ-କୀର୍ତ୍ତନ ଫଳରେ ସେ ଧୀରେ-ଧୀରେ ବାହ୍ୟଜ୍ଞାନ ଫେରି ପାଇଲେ । ତାଙ୍କ ହୃଦୟରୁ ପ୍ରେମର ନିଶା ଛାଡ଼ି ଆସିଲା । ପ୍ରକୃତରେ ସେ ନିଶା ଛାଡ଼ିବାର ନୁହେଁ । ତଥାପି ସେ ସମାଧି ଅବସ୍ଥାରୁ ତଳକୁ ଖସି ଆସିଲେ । ବିଦୁର ଯେଉଁମାନଙ୍କ ନାମ ଧରି କୁଶଳ ପ୍ରଶ୍ନ ପଚାରିଥିଲେ, ଉଦ୍ଧବଙ୍କର ଧାରଣା ସେ ଆଡ଼କୁ ଆଦୌ ନ ଥିଲା । ସେ କେବଳ ଶୁଣିଥିଲେ— ''ବାର୍ତ୍ତାଂ ସଖେ କୀର୍ତ୍ତିଷ୍ୟ ତୀର୍ଥକୀର୍ତ୍ତେଃ' ମୋତେ କେବଳ ସେହି ବାସୁଦେବଙ୍କ ସନ୍ଦେଶ ଶୁଣାଅ । ସେ ତାଙ୍କରି ସମ୍ବନ୍ଧରେ ଉତ୍ତର ଦେବାକୁ ଲାଗିଲେ । ଚନ୍ଦ୍ରଙ୍କୁ ଦେଖି ଚନ୍ଦ୍ରକାନ୍ତ ମଣି ଯେପରି ତରଳିଯାଏ କିମ୍ବା ପୂର୍ଣ୍ଣଚନ୍ଦ୍ରଙ୍କୁ ଦେଖି ସମୁଦ୍ର ଯେପରି ଉଚ୍ଛୁଳି ପଡ଼େ, ଠିକ୍ ସେହିପରି ଶ୍ରୀକୃଷ୍ଣଙ୍କ ନାମ ଶ୍ରବଣରେ ଉଦ୍ଧବଙ୍କ ମନ ସେହି ଆଡ଼କୁ ଆକୃଷ୍ଟ ହୋଇ ଉଠିଲା ।

ପ୍ରତ୍ୟେକ କଥାରେ ଦୁଇଟି ଭାଗଥାଏ । ଗୋଟିଏ ହେଉଛି କଥାଭାଗ ଓ ଅନ୍ୟଟି ହେଉଛି—ଭୂମିକା ବା ପୂର୍ବରଙ୍ଗ । କଥା ଆରମ୍ଭ ହେବା ମାତ୍ରେ ପ୍ରସ୍ତାବନା ଆକାରରେ ଯାହା କିଛି କୁହାଯାଏ; ତାହା ହେଉଛି ଭୂମିକା । ବିଦୁରଙ୍କର ମୁଖ୍ୟ ପ୍ରଶ୍ନ ଥିଲା—'ଭଗବାନଙ୍କ ସନ୍ଦେଶ ଶୁଣାଅ ।' ସେ ସେହି ପ୍ରଶ୍ନଟି କରିବା ପାଇଁ ଅନ୍ୟମାନଙ୍କ ସମ୍ବନ୍ଧରେ କୁଶଳ ପ୍ରଶ୍ନ ପଚାରି ଥିଲେ । ଉଦ୍ଧବଙ୍କ ପ୍ରଶ୍ନରୁ ଏତିକି ମାତ୍ର ସାରମର୍ମ ବୁଝି, ଉଦ୍ଧବ ସେହି ଅନୁସାରେ କଥାର ଉପକ୍ରମ କରିବାକୁ ଲାଗିଲେ ।

ଅତ୍ୟନ୍ତ କଷ୍ଟୋପୂର୍ଣ୍ଣ ମନରେ ଉତ୍ତର ଦେଇ କହିଲେ, ଉଦ୍ଧବ— "ବିଦୁର ! ଆପଣ କି କୁଶଳ ପ୍ରଶ୍ନ ପଚାରୁଛନ୍ତି ? ଯଦୁକୁଳର ସୁଖ ସମ୍ବାଦ କିମ୍ବା ସମଗ୍ର ସଂସାରର ? ଦେଦୀପ୍ୟମାନ ପ୍ରକାଶରେ କୁଶଳ ପରିପୂର୍ଣ୍ଣ ମାହାରେ ରହିଥାଏ; କିନ୍ତୁ ଅନ୍ଧକାର ମଧ୍ୟରେ ଗୃହଆଡ଼େ କେବଳ ଦେଖିବାର ପ୍ରକାଶ ପାଇଥାଏ । ସୂର୍ଯ୍ୟ ଅସ୍ତ ହୋଇଯିବା ପରେ ଘୋରତମ ଜଗତକୁ ଆକ୍ରମଣ କରିଥାଏ । ସେହି ଅମା ଅନ୍ଧକାର ମଧ୍ୟରେ କୁଶଳତାର ସମ୍ଭାବନା କେଉଁଠୁ ଆସିବ ? ଭୁବନସ୍ୱରୂପୀ ଭଗବାନ ଅସ୍ତ ହୋଇଯିବା ପରେ ଆଉ ମଙ୍ଗଳ କାହିଁ ? ବର୍ତ୍ତମାନ ଚତୁର୍ଦ୍ଦିଗରେ ଅମା ଅନ୍ଧକାର ପୂର୍ଣ୍ଣ ରହିଛି । ଗୃହଆଡ଼େ ହାହା କାର ! ଯେଉଁ ଦ୍ୱାରକା ପୁରୀ ଦିନେ ସ୍ୱର୍ଗଠାରୁ ଅଧିକ ପବିତ୍ର ନଗରୀ ରୂପେ ଜଗତରେ ସ୍ଥାନ ଅଧିକାର କରିଥିଲା, ସେହି ପୁରୀ ଆଜି ତା'ର ସ୍ୱାମୀଙ୍କୁ ହରାଇ ହତଶ୍ରୀ ହୋଇ ପଡ଼ିଛି ।

ଯଦି ଆପଣ ସମଗ୍ର ସଂସାରର ଅବସ୍ଥା ସମ୍ବନ୍ଧରେ ପଚାରୁ ଥାଆନ୍ତି, ତେବେ ମୁଁ କହିବି, ଏ' ସଂସାରଟା ଗୋଟିଏ ଅଭାଗା । ଦୁଃଖ, ଶୋକ, ଆପତ୍ତି, ବିପତ୍ତି, ଚିନ୍ତା, ଗ୍ଲାନି, ଭୟ ଓ ଆଧି ବ୍ୟାଧିରେ ପୂର୍ଣ୍ଣ । ଏ ସଂସାରରେ ସୁଖ କାହିଁ ? ଏହି ପତିତ ସଂସାରଟିକୁ ମଧୁସୂଦନ ନିଜ ପାଦରଜରେ ପବିତ୍ର କରିଥିଲେ । ତେଣୁ ଏହା ପବିତ୍ର ପୀଠରେ ପରିଣତ ହୋଇଥିଲା । ସେ ଏହି ସଂସାରରେ ଏକାକୀ ଅବତୀର୍ଣ୍ଣ ହୋଇ ନ ଥିଲେ । ନିଜର ପରିବାର, ପାର୍ଷଦ, ଧାମ ଓ ଆୟୁଧାଦି ସହିତ ଏ ଧରାଧାମରେ ବିରାଜମାନ କରିଥିଲେ । ସେଥିପାଇଁ ଏ ବୃନ୍ଦାବନ ପୃଥିବୀ ମଧ୍ୟରେ ଶ୍ରେଷ୍ଠ ସ୍ଥାନ ରୂପେ ପରିଗଣିତ ହୋଇଛି । ଏହାର ପ୍ରତ୍ୟେକ ରଜକଣରେ ପ୍ରଭୁଙ୍କର ସ୍ପର୍ଶ ଅଙ୍କିତ ହୋଇ ରହିଛି । ଭାଗ୍ୟଶାଳୀ ଯଦୁବଂଶୀମାନେ କେଉଁଠି ଭାଗ୍ୟହୀନ ସତରେ ? ସେମାନେ ପ୍ରଭୁଙ୍କ ସାନ୍ନିଧ୍ୟ ଲାଭ କରି ମଧ୍ୟ ତାଙ୍କର ଗୁଣ ବା ସ୍ୱରୂପ ସମ୍ବନ୍ଧରେ ଆଦୌ ଧାରଣା କରିପାରିଲେ ନାହିଁ ।"

ଏହା ଶୁଣିବା ମାତ୍ରେ କହିଲେ ବିଦୁର—"ଆପଣ ଏ କ'ଣ କହୁଛନ୍ତି ମହୋଦୟ ? ଭଗବାନଙ୍କ ମହତ୍ତ୍ୱ କପରି କେହି ଅନୁଭବ କରି ପାରିଲେ ନାହିଁ ? ସେ ଭୂ-ଭାର ନିବାରଣ କରିବା ପାଇଁ ସଂସାରରେ ଅବତୀର୍ଣ୍ଣ ହୋଇଥିଲେ ଏବଂ ତାଙ୍କର ପ୍ରତ୍ୟେକ କାର୍ଯ୍ୟରେ ଭଗବତ ସ୍ୱରୂପ ଫୁଟି ଉଠୁଥିଲା ।"

ବିଦୁରଙ୍କୁ ଉତ୍ତର ଦେଇ କହିଲେ ଉଦ୍ଧବ—"ମହୋଦୟ, ତାହାହିଁ ହେଉଛି—ପ୍ରଭୁଙ୍କର ମାୟା । ସେ ଏତେ ପ୍ରଭାବ ବିସ୍ତାର କରିଥିଲେ ହେଁ, ଯଦୁବଂଶୀମାନେ ଭାବିଲେ—ପ୍ରଭୁ ସେହିମାନଙ୍କ ପରି ଜଣେ ସାଧାରଣ ବ୍ୟକ୍ତି । ଗୋଟିଏ ମାଆଠାରୁ ଜନ୍ମ ହୋଇଥିଲେ ମଧ୍ୟ ଗୋଟିଏ ପିଲା ଭାଗ୍ୟବାନ ଓ ଅନ୍ୟଟି ଭାଗ୍ୟହୀନ ହୋଇଥାଏ । ଜଣେ ଶକ୍ତିଶାଳୀ ଓ ଅନ୍ୟ ଜଣେ ନିତାନ୍ତ ଦୁର୍ବଳ ।

ଜଣେ ଅତ୍ୟନ୍ତ ପ୍ରଭାବଶାଳୀ ଏବଂ ଅନ୍ୟ ଜଣେ ନିତାନ୍ତ ଅକର୍ମଣ୍ୟ । ତଥାପି ଲୋକେ ଏ ମାୟାର ମହତ୍ତ୍ୱ ଉପଲବ୍ଧି କରି ପାରୁନାହାନ୍ତି । ହିମାଳୟରେ ଉତ୍ପନ୍ନ ପ୍ରତ୍ୟେକ ଲତା ପାର୍ବତୀଙ୍କ ନିଜର ଭଉଣୀ ଏବଂ ପୃଥିବୀର ଦୂର୍ବାଦଳ ତାଙ୍କର ଆତ୍ମୀୟ ବୋଲି ମନେକରିବା କ'ଣ ଯୁକ୍ତିଯୁକ୍ତ କି ? ସେହିପରି ପ୍ରଭୁଙ୍କ ପ୍ରଭାବ ଓ ମହତ୍ତ୍ୱକୁ ଆଦୌ ବୁଝି ନ ପାରି ଯାଦବମାନେ ତାଙ୍କୁ ଭାଇ, କକା, ବାପା, ଜେଜେବାପା ବୋଲି ମନେ କରୁଥିଲେ । ତାଙ୍କର ଯଥାର୍ଥ ସ୍ୱରୂପକୁ କେହି ହୃଦୟଙ୍ଗମ କରି ପାରିଲେ ନାହିଁ ।

ତା'ପରେ ପଚାରିଲେ ବିଦୁର—"ମହୋଦୟ, ପ୍ରକୃତରେ ଯାଦବମାନେ କ'ଣ ବୁଦ୍ଧିହୀନ ? ସେମାନେ ପ୍ରଭୁଙ୍କ ମହତ୍ତ୍ୱ ବୁଝିବାକୁ ସତରେ କ'ଣ ଅସମର୍ଥ ଥିଲେ ? ଏତେଦିନ ଧରି ତାଙ୍କର ସାହଚର୍ଯ୍ୟ ଲାଭ କରିଥିଲେ ମଧ୍ୟ ସେମାନେ ପ୍ରଭୁଙ୍କ ଅତୁଳନୀୟ ପରାକ୍ରମ ସହିତ ପରିଚିତ ହୋଇପାରିଲେ ନାହିଁ ?"

ଏହା ଶୁଣି କହିଲେ ଉଦ୍ଧବ—"ବିଦୁର ମହୋଦୟ, ଆପଣଙ୍କ ପ୍ରଶ୍ନର ମୁଁ କି ଉତ୍ତର ଦେବି ? ପ୍ରକୃତରେ କହିବାକୁ ଗଲେ, ଭଗବାନ ସେମାନଙ୍କୁ ପ୍ରକୃତ ରୂପ ଦେଖାଇବାକୁ ଚାହୁଁ ନ ଥିଲେ । ସେ ଯୋଗମାୟାର ପ୍ରଭାବରେ ଯାଦବମାନଙ୍କୁ ଏପରି ମାୟାଜାଲରେ ଛନ୍ଦି ଦେଇଥିଲେ ଯେ, ପ୍ରତ୍ୟେକ ଯାଦବ ନିଜକୁ ଜଣେ ଜଣେ ଶ୍ରେଷ୍ଠ ବ୍ୟକ୍ତି ବୋଲି ମନେ କରୁଥିଲେ । ସମସ୍ତେ ଅବଶ୍ୟ ପ୍ରଭୁଙ୍କ ଆଜ୍ଞା ପାଳନ କରୁଥିଲେ ସତ୍ୟ, କିନ୍ତୁ କେବଳ କୁଳର ସଂରକ୍ଷକ ଦୃଷ୍ଟିରୁ; କେବେହେଲେ ତାଙ୍କୁ ସର୍ବଶକ୍ତିମାନ୍ ଭାବରେ କେହି ଚିନ୍ତା କରୁ ନଥିଲେ । ଅବଶ୍ୟ ତା'ର ଫଳରେ ଯାଦବମାନେ ପୃଥିବୀ ପୃଷ୍ଠରେ ସମ୍ମାନନୀୟ ହୋଇ ପାରିଥିଲେ । ଅଜ୍ଞାନତାବଶତଃ ହେଲେ ମଧ୍ୟ ସେମାନେ ପ୍ରଭୁଙ୍କ ଆଜ୍ଞାନୁବର୍ତ୍ତୀ ହୋଇଥିବାରୁ କେବଳ ସମ୍ମାନର ଅଧିକାରୀ ହୋଇଥିଲେ ମାତ୍ର; କିନ୍ତୁ ଭଗବତ୍ ପ୍ରେମରେ ମଜ୍ଜି ନ ଥିଲେ । ତେଣୁ ପ୍ରଭୁଙ୍କ ମହତ୍ତ୍ୱ ଉପଲବ୍ଧି କରିବାରେ ସେମାନେ ଅସମର୍ଥ ହୋଇଥିଲେ । ସେମାନେ କେବଳ ପ୍ରଭୁଙ୍କ ସାମର୍ଥ୍ୟ ଓ ଶକ୍ତିରୁ ଲାଭ ଉଠାଇବାକୁ ଚେଷ୍ଟା କରିଥିଲେ । ସେଇଥିପାଇଁ ଭକ୍ତମାନେ ଭଗବତ୍ ସାନ୍ନିଧ୍ୟ ଅପେକ୍ଷା ଭଗବତ୍ ପ୍ରେମରେ ମଜ୍ଜି ରହିବାକୁ ଅଧିକ ଶ୍ରେୟସ୍କର ବୋଲି ମନେ କରନ୍ତି । ପ୍ରଭୁଙ୍କର ଅନନ୍ତ ପରାକ୍ରମ, ଅତୁଳ ବୈଭବ, ଅନୁପମ ସୌନ୍ଦର୍ଯ୍ୟ, ଲୋକୋତ୍ତର ଦିବ୍ୟାଦିବ୍ୟଗୁଣ, ମହାନ ଐଶ୍ୱର୍ଯ୍ୟ, ଅଦ୍ଭୁତ ଲାବଣ୍ୟ, ଅଭୂତପୂର୍ବ ଦୟା ଓ ଦାକ୍ଷିଣ୍ୟ ପ୍ରଭୃତି ଭଗବଦ୍ ଗୁଣଗୁଡ଼ିକ ଅଳ୍ପ ଜ୍ଞାନୀ ବ୍ୟକ୍ତି କିପରି ସହଜରେ ଅନୁଭବ କରି ପାରନ୍ତେ ? ଭକ୍ତମାନେ ସେଇଥିପାଇଁ ସର୍ବଦା ପ୍ରାର୍ଥନା କରନ୍ତି—"ପ୍ରଭୋ, ଆମକୁ ଭଗବତ୍ ପ୍ରେମ ପ୍ରଦାନ କରନ୍ତୁ । ତା'ର ଫଳରେ ଭକ୍ତିରସ ଆସ୍ୱାଦନ କରି ଆମେମାନେ ଦିବ୍ୟ ପଥରେ ଦିବ୍ୟାଲୋକର ସନ୍ଧାନରେ ଅଗ୍ରସର ହୋଇପାରିବୁ ।"

ସମସ୍ତେ ଏପରିକି ଦୈତ୍ୟ ରାକ୍ଷସମାନେ ମଧ୍ୟ ପ୍ରଭୁଙ୍କ ଦର୍ଶନ କରିବାରେ ସକ୍ଷମ

ହୋଇଛନ୍ତି । ସେମାନଙ୍କୁ ଭଗବାନ ମୁକ୍ତି ପ୍ରଦାନ କରିଛନ୍ତି; କିନ୍ତୁ ସେମାନେ ଭକ୍ତିରସାସ୍ୱାଦନରୁ ବଞ୍ଚିତ ହୋଇଛନ୍ତି । ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞରେ ଶିଶୁପାଳ ନାନାପ୍ରକାର କୁବାକ୍ୟ କହିଥିଲେ ମଧ୍ୟ ପ୍ରଭୁ ତାକୁ ସାଯୁଜ୍ୟ ମୁକ୍ତି ପ୍ରଦାନ କରିଥିଲେ । କିନ୍ତୁ ସେ ଭଗବତ୍ ପ୍ରେମ ପାଇବାରେ ସମର୍ଥ ହେଲା କି ?"

ଏହା ଶୁଣିବା ପରେ କହିଲେ ବିଦୁର—"ମହୋଦୟ, ଆପଣ ବାରମ୍ବାର 'ରସ' ଓ 'ପ୍ରେମ'ର ନାମୋଲ୍ଲେଖ କରୁଛନ୍ତି । ଏହି ରସ କ'ଣ ? ମୋ' ମତରେ ରସସ୍ୱରୂପୀ ହେଉଛନ୍ତି ସ୍ୱୟଂ ପରଂବ୍ରହ୍ମ ଶ୍ରୀକୃଷ୍ଣ । ସେହି ବ୍ରହ୍ମପ୍ରାପ୍ତି ହୋଇଗଲେ ଆଉ ପୁଣି 'ରସ'ର ଆବଶ୍ୟକତା କ'ଣ ଅଛି ? ଯଦି ପରମାତ୍ମାଙ୍କୁ କଦର୍ଯ୍ୟ ଭାବରେ କୁବାକ୍ୟ ପ୍ରୟୋଗ କଲେ କିମ୍ବା ପ୍ରଭୁଙ୍କର ବିରୋଧାଚରଣ କଲେ ମୁକ୍ତିର ମାର୍ଗ ପ୍ରଶସ୍ତ ହୋଇଯିବ, ତେବେ ଆମେ ମାଳା, ଝୁଲି ଧରି ନାମ ଭଜନ ଓ କୀର୍ତ୍ତନ କରିବୁ କାହିଁକି ? ବୈରି ଭାବପୋଷଣ କଲେ ମୁକ୍ତି ଯଦି ମିଳି ପାରିବ, ତେବେ ଭଗବତ୍ ପ୍ରେମରୂପକ କଷ୍ଟସାଧ୍ୟ ସାଧନମାର୍ଗରେ ଆଉ କିଏ କାହିଁକି ଯିବାକୁ ଇଚ୍ଛା କରିବ ?"

ଏହା ଶୁଣି ଉଦ୍ଧବ ଟିକିଏ ହସିଦେଇ କହିଲେ—"ବିଦୁର ମହୋଦୟ, ଆପଣ ପୁଣି ପ୍ରଶ୍ନ ଉତ୍ଥାପନ କଲେ ? ମହାଶୟ, କେବଳ ମୁକ୍ତିର ଲୋଭରେ ଆମେ କ'ଣ ଭଗବତ୍ପ୍ରେମାମୃତରସାୟନଟିକୁ ଛାଡ଼ି ପାରିବା କି ? ଯେଉଁ ସୌନ୍ଦର୍ଯ୍ୟ, ଯେଉଁ ମାଧୁର୍ଯ୍ୟ ଆମର ହୃଦୟରେ ଆସ୍ଥାନ ଜମାଇ ରହିଛି, ସେହିଠାରେ ଆମେ ବୈରିତାକୁ ସ୍ଥାନ ଦେଇପାରିବା କି ? ଯେଉଁ ମଧୁର ମୂର୍ତ୍ତି ଆମ ଆଖିରେ ଲାଖି ରହିଛି, ସେଠାରେ ଭୟଙ୍କର ମୂର୍ତ୍ତି ସ୍ଥାନ ପାଇବ କପରି ? ଆମେ ମୁରଲୀର ମଧୁର ତଥା କର୍ଣ୍ଣରସାୟନରେ ମୁଗ୍ଧ ହୋଇଥାଉଁ, ସେଠାରେ ଅନ୍ୟ ସ୍ୱର ପ୍ରତିଧ୍ୱନିତ ହେବ କି ? ଯେଉଁମାନେ ଭୁକ୍ତି-ମୁକ୍ତିର ପିଶାଚିନୀ ମାୟାର ମୋହରେ ବଶୀଭୂତ ହୋଇଛନ୍ତି, ସେମାନଙ୍କୁ ମୁକ୍ତି ତାହା ଆନନ୍ଦ ଦେଇପାରେ; କିନ୍ତୁ ଯେଉଁମାନେ ନିଜର ଅନ୍ତଃକରଣକୁ ଶ୍ରୀହରିଙ୍କ ପଦ୍ମପାଦରେ ଲୋଟାଇ ଦେଇଛନ୍ତି, ସେମାନେ ଏପରି କ୍ଷଣସ୍ଥାୟୀ ଦ୍ରବ୍ୟକୁ ଆଶା କରିବେ କାହିଁକି ? ସେମାନଙ୍କ ମନରେ ଏପରି ଭ୍ରମ ଧାରଣା ସୃଷ୍ଟି ହୋଇ ନପାରେ ! ଆହା, ସେ ମଧୁର ମୂର୍ତ୍ତିର କି କମନୀୟ ଛଟା ! ସେ ବାଙ୍ଗ୍ମୟବାଣୀର କି ମଧୁରିମା ! ତା' ସହିତ ବ୍ରହ୍ମାଣ୍ଡର କୌଣସି ବସ୍ତୁ ତୁଳନୀୟ କି ?"

ସୂତ ମହର୍ଷି କହିଲେ—"ହେ ମୁନିଗଣ, ଏତିକି କହିସାରି ଭକ୍ତରାଜ ଉଦ୍ଧବ ମାନସପଟଳରେ ଭଗବାନଙ୍କ ସୌନ୍ଦର୍ଯ୍ୟ ଅନୁଭବ କରିବା ସଙ୍ଗେ ସଙ୍ଗେ ପ୍ରେମାର୍ଣ୍ଣବରେ ନିମଗ୍ନ ହୋଇଥିଲେ ।"

## ଛପ୍‌ପୟ

“ହାୟ କହାଁ ଓ୍ୱ ପରମ ସୁଖଦ ଶ୍ରୀହରି କୀ ଝାଁଙ୍କି
ମନ୍ଦ ମନ୍ଦ ସୁସକାନ ଚିତ୍ତହର ଚିତବନ ବାଁଙ୍କୀ ॥
ଆଁଖିନ କୁଁ ଓ୍ୱା ଛଟା ପାନ କୋ ଚସକୋ ଲାଗ୍ୟୋ
ଭୟେ୍ନ ଜୌ ଲୌ ତୃପ୍ତ ହମେଁ ହରି ତୌ ଲୌ ତ୍ୟାଗ୍ୟୋ
ଉଠବନି ଚିତବନି କରି ପରସି ହଁସନି ଅଁକ ଭରି-ଭରି ମିଲନି ।
ଚେଷ୍ଟା ଯେ ସବ୍ ଶ୍ୟାମ କୀ ପରମ ମଧୁର ବୋଲନି ଚଲନି ॥



## ଲୋକୋତ୍ତର ସୌନ୍ଦର୍ଯ୍ୟ

"ଯଦଧର୍ମସୂନୋର୍ବତ ରାଜସୂୟେ
ନିରୀକ୍ଷ୍ୟ ଦୃକ୍ ସ୍ୱସ୍ତ୍ୟୟନଂ ତ୍ରିଲୋକଃ ।
କାତ୍ସ୍ନ୍ୟେନ ଚାଦ୍ୟେହ ଗତଂ ବିଧାତୁ
ରର୍ବାକ୍ ସୃତୌ କୌଶଲମିତ୍ୟମନ୍ୟତ" ।

( ଭାଗବତ ୩ । ୨ । ୧୪ )

### ଛପ୍ପୟ

"କାରେ କାରେ କୁଟିଳ କେଶ ମଳ ତେଲ ସମ୍ଭାରେ
ଗୋରୋଚନ କୋ ତିଲକ ମୋର ମୁକୁଟାଦିକ ଧାରେ ।
କଙ୍କଣ କୁଣ୍ଡଳ ହାର କରଧନୀ ଅଙ୍ଗଦ ନୂପୁର
ଶୋଭିତ ହୋଏଁ ସ୍ୱୟଂ ପାଇ ତନୁ ସୁନ୍ଦର ମନହର ।
ନିରଖହିଁ ନିଜ ପ୍ରତିବିମ୍ବକୁ ଅପନ ପଗନପୋ ଭୂଲି କେଂ
ମୁଖ ମଲ୍ଲିକ ମନହର ସ୍ୱୟଂ ଚକିତ ହୋହିଁ ଛବି ଦେଖି କେଂ"

ଅର୍ଥାତ୍—ଉଦ୍ଧବ ବିଦୁରଙ୍କୁ କହୁଛନ୍ତି—"ହେ ବିଦୁର, ଭଗବାନ ଶ୍ରୀକୃଷ୍ଣଙ୍କ ସୌନ୍ଦର୍ଯ୍ୟ ତ ଆପଣ ଧର୍ମରାଜ ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞରେ ଭଲ ଭାବରେ ଦେଖିଥିଲେ । କେଡ଼େ ଆଶ୍ଚର୍ଯ୍ୟର କଥା ! ସେଠାରେ ଯେଉଁମାନେ ତାଙ୍କର ନୟନାଭିରାମ ରୂପକୁ ଦେଖିଥିଲେ, ସେମାନେ ଦୃଢ଼ଭାବ ସହିତ କହୁଥିଲେ ଯେ, ବ୍ରହ୍ମାଙ୍କର ନୂତନ ସୃଷ୍ଟିର ଚତୁରତା ଶ୍ରୀକୃଷ୍ଣଙ୍କ ଦିବ୍ୟମୂର୍ତ୍ତି ରଚନାରେ ପରିପୂର୍ଣ୍ଣ ହୋଇଯାଇଛି । ଅର୍ଥାତ୍ ସଂସାରର ସମସ୍ତ ସୌନ୍ଦର୍ଯ୍ୟ ସେହି ମୂର୍ତ୍ତିରେ ସନ୍ନିହିତ ହୋଇ ରହିଛି ।

ଭକ୍ତ ହେଉଛନ୍ତି—ଦୁଇ ପ୍ରକାର । ଗୋଟିଏ ପ୍ରକାର ହେଉଛନ୍ତି— ଜ୍ଞାନୀ ଓ ଅନ୍ୟପ୍ରକାର ହେଉଛନ୍ତି—ଭାବୁକ । ଏହି ଦୁଇ ପ୍ରକାର ଭକ୍ତ ଅଧିକାର ତଥା ସାଧନ ଭେଦରେ ଅସଂଖ୍ୟ ପ୍ରକାରର ହୋଇ ଥାଆନ୍ତି । ଜ୍ଞାନୀମାନେ ସଂସାରର ରହସ୍ୟକୁ ଜାଣି, ଜ୍ଞାନମାର୍ଗରେ ତାଙ୍କ ଉପାସନା କରନ୍ତି; କିନ୍ତୁ ଭାବୁକମାନେ ତାଙ୍କୁ ସର୍ବତ୍ର ଦେଖିବାରେ ସମର୍ଥ ହୁଅନ୍ତି । ସେମାନେ ସଂସାରର ମାୟା, ଅବିଦ୍ୟା ତଥା ପ୍ରାକୃତିକ ବିକାରରେ ଧାର ଧାରନ୍ତି ନାହିଁ । ସଂସାର ଦୁଃଖମୟ ହେଉ କିମ୍ବା ସୁଖମୟ ହେଉ ସେମାନଙ୍କର କିଛି ଯାଏ ଆସେ ନାହିଁ । ସେମାନେ ସୁଖମୟ, ବିଶୁଦ୍ଧ ତଥା ଅଦ୍ୱୈତ ସ୍ୱରୂପୀ ପରମେଶ୍ୱରଙ୍କୁ ନିଜର ଭାବୁକ ହୃଦୟରେ ପ୍ରତ୍ୟକ୍ଷ କରନ୍ତି ।

ଅନ୍ୟ ଏକ ପ୍ରକାର ଭକ୍ତ ଥିଆନ୍ତି ଯେଉଁମାନେ ପରମାତ୍ମାଙ୍କ ଗୁଣକୀର୍ତ୍ତନ କରିବାରେ ଲାଗି ଥାଆନ୍ତି । ସମ୍ଭବତଃ, ଉଦ୍ଧବ ଏହି ଧରଣର ଜଣେ ଭକ୍ତ ଥିଲେ । ଏକାଦଶସ୍କନ୍ଧରେ ତାଙ୍କର ପ୍ରଶ୍ନ ଶୁଣି ସମ୍ଭବତଃ; ସେ ସମସ୍ତ ଗୂଢ଼ ଦାର୍ଶନିକ ତତ୍ତ୍ୱକୁ ଅତି ସରଳ ଭାବରେ ବୁଝାଇବାକୁ ଚେଷ୍ଟା କରିଛନ୍ତି । ବିଭିନ୍ନ ପ୍ରକାର ମତ ମତାନ୍ତରକୁ ସେ ସମନ୍ୱୟାତ୍ମକ ଭଙ୍ଗୀରେ ଦେଖିଛନ୍ତି; କିନ୍ତୁ ଶ୍ରୀକୃଷ୍ଣଙ୍କ ପ୍ରେମରେ ଗୋପନପୂର୍ବକ ବିହ୍ୱଳତା ପ୍ରକାଶ କରିବା, ବ୍ରଜାଙ୍ଗନାମାନଙ୍କୁ ବାରମ୍ବାର ପ୍ରଣାମ କରି ବ୍ରଜଭୂମିର ଗୁଳ୍ମଲତା ହେବାକୁ କାମନା କରିବା ପ୍ରଭୃତି ତାଙ୍କ ଚେଷ୍ଟାରୁ ସମ୍ଭବତଃ, ସେ ସମସ୍ତ ପ୍ରକାର ତତ୍ତ୍ୱଜ୍ଞାନକୁ ଲୋକଶିକ୍ଷା ଉଦ୍ଦେଶ୍ୟରେ ପ୍ରକାଶ କରିଛନ୍ତି ।

ବିଦୁର ଉଦ୍ଧବଙ୍କ ପରି ଭାବୁକ ଭକ୍ତ ନ ଥିଲେ । ସେ ହେଉଛନ୍ତି—ପ୍ରକୃଷ୍ଟ ଜ୍ଞାନୀ । ତାଙ୍କ ବିଚାରରେ ଭଗବାନ ଶ୍ରୀକୃଷ୍ଣଙ୍କ ଆବିର୍ଭାବ ଓ ତିରୋଭାବ ଏକ ବିନୋଦ-ପୂର୍ଣ୍ଣ ଲୀଳା । ତେଣୁ ସେ ଉଦ୍ଧବଙ୍କ ମୁଖରୁ ଶ୍ରୀକୃଷ୍ଣଙ୍କ ତିରୋଭାବ ସମ୍ବନ୍ଧରେ ସମ୍ବାଦ ଶୁଣି ଆଦୌ ବିଚଳିତ ହେଲେନାହିଁ । ସେ ନିଜର ଜ୍ଞାନବଳରେ ବାହ୍ୟଶୋକକୁ ଶାନ୍ତ କରି ଦେଇଥିଲେ । ସେ ଅବଶ୍ୟ ଶ୍ରୀକୃଷ୍ଣଙ୍କ ଗୁଣକୀର୍ତ୍ତନର ଲୋଲୁପ ଥିଲେ । ତାଙ୍କର ଧାରଣା ଥିଲା, ଯେଉଁଠାରେ ଶ୍ରୀକୃଷ୍ଣଙ୍କ ଭଜନ କୀର୍ତ୍ତନ ହେଉଥାଏ, ସେଠାରେ ପ୍ରଭୁ ବିରାଜମାନ କରିଥାଆନ୍ତି ଏବଂ ଯେଉଁଠାରେ ସଂସାରିକ ବିଷୟ ବାସନା ସମ୍ବନ୍ଧରେ ଚର୍ଚ୍ଚା ଚାଲିଥାଏ, ସେଠାରେ ସେ ଅତି ଶୀଘ୍ର ଅପସରି ଯାଆନ୍ତି । ତେଣୁ ବିଦୁର ଜାଣିଥିଲେ—ଉଦ୍ଧବଙ୍କ ମୁଖରେ ସର୍ବଦା ହରିକୀର୍ତ୍ତନ ହେଉଛି; ତେଣୁ ତାଙ୍କଠାରେ ପ୍ରଭୁ ବିରାଜମାନ କରିଛନ୍ତି ।

ଉଭୟ ଉଦ୍ଧବ ଓ ବିଦୁର ଭଗବାନଙ୍କର ଦୁଇଟି ପାଗଳ ଭକ୍ତ । ଦୁହିଁଙ୍କର ମିଳନରେ ତାଦାତ୍ମ୍ୟଭାବର ବିକାଶ ହୋଇପାରିଥିଲା । ଉଦ୍ଧବଙ୍କୁ କହିବାର ଓ ବିଦୁରଙ୍କୁ ଶୁଣିବାରେ ଆନନ୍ଦ ମିଳିଥିଲା । ତେଣୁ ଉଦ୍ଧବ ଆନନ୍ଦମଗ୍ନ ହୋଇ

ଶ୍ରୀକୃଷ୍ଣଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ଲାଗିଗଲେ ଏବଂ ବିଦୁର ମୋହମଗ୍ନ ଚିତ୍ତରେ ତାହା ଶ୍ରବଣ କରିଥିଲେ ।

ଉଦ୍ଧବ ନିଜର ସ୍ୱଭାବ ଅନୁସାରେ ବାହ୍ଲଲତାର ସହିତ କହିଲେ—"ବିଦୁର ଗୋଟିଏ ଜନ୍ମର ପୁଣ୍ୟ ଫଳରେ ଭଗବାନ୍‌ଙ୍କର ଦର୍ଶନ ସମ୍ଭବ ହୁଏନାହିଁ । ସହସ୍ର ଜନ୍ମର ପୁଣ୍ୟଫଳରେ ତାଙ୍କର ଦର୍ଶନ ସମ୍ଭବ ହୋଇଥାଏ । ତାଙ୍କର ଲୀଳାକୁ ଗ୍ରନ୍ଥ ପରି ଅନୁଗମନ କରି ପ୍ରତ୍ୟକ୍ଷ କରିବା ଅହୋଭାଗ୍ୟ ବୋଲି ମୋର ମନେହୁଏ । ଏହା ସାଧାରଣ ପୁଣ୍ୟ ଫଳରେ ସୁଲଭ ହୁଏ ନାହିଁ । ପ୍ରଭୁ କ୍ଷୀଣ ପୁଣ୍ୟବାନ ଭକ୍ତମାନଙ୍କୁ ଥରଟିଏ ମାତ୍ର ଦର୍ଶନ ଦେଇ ଅନ୍ତର୍ଦ୍ଧାନ ହୋଇ ଯାଆନ୍ତି । ଠିକ୍ ସେହି ଦଶା ଆମମାନଙ୍କର । ସେ ଆମମାନଙ୍କୁ ତାଙ୍କ ଅନନ୍ତଲୀଳାରୁ କଣିକାଟିଏ ଦେଖାଇ ଦେଇ ସଂସାରରୁ ଲୀଳା ସମ୍ବରଣ କରିନେଲେ ଏବଂ ସାରାଜୀବନ ଲାଗି ଆମମାନଙ୍କୁ ବ୍ୟାକୁଳ କରାଇଗଲେ ।

"ବିଦୁର, ମଦନ ମୋହନ ଶ୍ରୀକୃଷ୍ଣ ନିଜ ରୂପକୁ ଯେପରି ଭାବରେ ସଜାଇ ଥିଲେ, ତାହା କ'ଣ ପ୍ରକୃତରେ ତାଙ୍କର ସ୍ୱରୂପ କି ? ନା....ନାଃ । ମନୁଷ୍ୟ ଦେହରେ ଜନ୍ମ ହୋଇ ଏତେ ଆକର୍ଷଣୀୟ ରୂପ ପାଇବା କ'ଣ ସମ୍ଭବ ? ସେ ଯୋଗମାୟାଙ୍କ ଆଶ୍ରୟରେ ଗୋଟିଏ ମାନବ ରୂପ ଧାରଣ କରିଥିଲେ । ନୋହିଲେ ମାନବୀଲୀଳା କରନ୍ତେ କିପରି ? ତେଣୁ ମନୁଷ୍ୟୋଚିତ ଲୀଳା ପ୍ରଦର୍ଶନ କରି, ସାଧାରଣ ପ୍ରାଣୀଙ୍କ ପରି ରାଗ, ଦ୍ୱେଷ, ଅହଙ୍କାର, ଶତ୍ରୁ, ମିତ୍ର ଆଦି ଭାବରେ ସେ ପ୍ରକଟ ହୋଇଛନ୍ତି । ସେହି ମାନବୀ ରୂପଟି ଏତେ ମନମୋହକ ହୋଇଥିଲା ଯେ, ଅନ୍ୟମାନଙ୍କ କଥା କହିବା କ'ଣ, ସେ ନିଜେ କୁଞ୍ଚୀଳ କୁଞ୍ଚିତ କେଶକୁ ସୁସଜ୍ଜିତ କରିବା ପାଇଁ ଦର୍ପଣ ଆଗରେ ଛିଡ଼ା ହୋଇ ନିଜର ଅଲୌକିକ ରୂପ ସମ୍ଭାରକୁ ଦେଖି ବିସ୍ମିତ ହୋଇ ଯାଉଥିଲେ । ଯେଉଁ ରୂପ ସ୍ୱୟଂ ରୂପ ସାଗର ଶ୍ରୀକୃଷ୍ଣଙ୍କୁ ବିସ୍ମିତ କରାଉଥିଲା, ତା'ର ଉପମା ଦେବାକୁ ସଂସାରରେ କ'ଣ କିଛି ଅଛି ?

"ବିଦୁର, ଆପଣ ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞରେ ଜଣେ ପ୍ରଧାନ କାର୍ଯ୍ୟକର୍ତ୍ତା ଥିଲେ । ସେଠାରେ ଦେଶ ବିଦେଶର ବହୁ ରାଜା ଓ ରାଜକୁମାର ଏକତ୍ରିତ ହୋଇଥିଲେ । ସେମାନଙ୍କ ମଧ୍ୟରେ ଏକୁ ଆରେକ ବଳି ବହୁ ସୁନ୍ଦର ସୁକୁମାର ତଥା ରୂପ ବୈଭବଶାଳୀ ରାଜକୁମାର ଥିଲେ । ସେମାନେ ହସ୍ତିନାର ଆକାଶରେ ଶୁଭ୍ରତାରକାବଳୀ ପରି ଶୋଭା ପାଉଥିଲେ; କିନ୍ତୁ ସେମାନଙ୍କ ମଧ୍ୟରେ ଶ୍ରୀକୃଷ୍ଣଚନ୍ଦ୍ର ନିଷ୍କଳଙ୍କ ଚନ୍ଦ୍ର ସଦୃଶ ଦେଦୀପ୍ୟମାନ ହେଉ ନ ଥିଲେ କି ? ଯଜ୍ଞରେ ପ୍ରଥମ ଅର୍ଘ୍ୟ ଦିଆଯିବାର ପ୍ରଶ୍ନ ଉପସ୍ଥିତ ହେବାମାତ୍ରେ, ସହଦେବ ବାସୁଦେବଙ୍କୁ ଅଗ୍ରପୂଜ୍ୟ ରୂପେ ବାଛିଥିଲେ । ଉପସ୍ଥିତ ରାଜନ୍ୟବର୍ଗ ଏହି ପ୍ରସ୍ତାବରେ ଆନନ୍ଦ ମଗ୍ନ ହୋଇ ଯାଇଥିଲେ । ଧର୍ମରାଜଙ୍କ ମନରେ ଆନନ୍ଦର

ହିଲ୍ଲୋଳ ଖେଳି ଯାଉଥିଲା । କାରଣ, ସେଠାରେ ସାଧାରଣ ମଣିଷକୃତ ପୂଜା କରାଯାଉ ନ ଥିଲା; ସ୍ୱୟଂ ଗୋଲୋକବିହାରୀ ଶ୍ରୀକୃଷ୍ଣଙ୍କ ଆରାଧନା ଲାଗି ପ୍ରସ୍ତାବ ଦିଆଯାଇଥିଲା । ସେଠାରେ ଯଜମାନ ଥିଲେ—ସ୍ୱୟଂ ସସାଗରାଧରାର ଅଧିପତି ଯୁଧିଷ୍ଠିର । ସ୍ୱୟଂ ଅଯୋନିସମ୍ଭୂତା ଦ୍ରୌପଦୀ ତାଙ୍କ ଦକ୍ଷିଣ ଭାଗରେ ବିରାଜମାନା ଥିଲେ । ଭଗବାନ ଶ୍ରୀକୃଷ୍ଣଙ୍କ ଶିର ଉପରେ ଶ୍ୱେତଛତ୍ର ଧାରଣ କରିଥିଲେ ନିଜେ ଗାଣ୍ଡିବଧାରୀ ଅର୍ଜ୍ଜୁନ । ବେଦଜ୍ଞ ବ୍ରାହ୍ମଣମାନେ ନାନାବିଧ ତୀର୍ଥଜଳ ତଥା ଉପସ୍କରରେ ପ୍ରଭୁଙ୍କ ଅଭିଷେକ ନିଷ୍ପନ୍ନ କରିଥିଲେ । ପ୍ରେମାଶ୍ରୁ ଛଳଛଳ ନେତ୍ରରେ ମହାରାଜ ଯୁଧିଷ୍ଠିର ପ୍ରଭୁଙ୍କ ଘନଚିକ୍କଣ ଶରୀରରେ ଦିବ୍ୟ ବସ୍ତ୍ର ପିନ୍ଧାଇ ଦେଇ ନାନା ପ୍ରକାର ମଣିମୁକ୍ତାର ଆଭୂଷଣ ସମର୍ପଣ କରିଥିଲେ । ସେ ସମୟରେ ତାଙ୍କର ରୂପଚ୍ଛଟା ଦେଖି ଉପସ୍ଥିତ ଜନତା ମନ୍ତ୍ରମୁଗ୍ଧ ପରି ସେହିଆଡ଼କୁ ଚାହିଁ ରହିଥିଲା । ସମସ୍ତଙ୍କ ମୁଖରୁ ଗୋଟିଏ ଶବ୍ଦ ବାହାରିଥିଲା—"ଆହାଃ...କି ଅପରୂପ ଛଟା !"

"ବନ୍ଧୁଗ ! ସେ ରୂପଛଟାକୁ ଯେ ଯେତିକି ଅଧିକ ସମୟ ନିରୀକ୍ଷଣ କରି ଦେଖିଛି, ତା' ମନରେ ରୂପଚ୍ଛଟା ସେତିକି ବୃଦ୍ଧି ପାଇଛି । ହାୟ.... ! ଆଜି ସେହି ରୂପଚ୍ଛଟା କୁଆଡ଼େ ଉଭେଇ ଗଲା ? ସେ ନୟନାଭିରାମ ମୂର୍ତ୍ତି ଯାହା ଆଖିରେ ଲାଖି ଯାଇଛି, ସଂସାରର ସମସ୍ତ ଦୃଶ୍ୟ ତା' ଆଖି ଆଗରେ ତୁଚ୍ଛ । ଆଜି ଆମ ଦୃଷ୍ଟିଙ୍କର ଦଶା ସେହି ଅବସ୍ଥାରେ ଉପନୀତ ହୋଇଛି । ଆମ ଆଖି ଆଉ କୌଣସି ଦୃଶ୍ୟ ଦେଖିବା ଲାଗି ପ୍ରସ୍ତୁତ ନୁହେଁ । ହାୟ...! ସେ ମନମୋହନ ରୂପ କୁଆଡ଼େ ଉଭେଇ ଗଲା.... !

ସୂତ ମହର୍ଷି କହିଲେ—"ହେ ମୁନିଗଣ, ଏହିପରି ଭାବରେ ଶ୍ରୀକୃଷ୍ଣଙ୍କ ରୂପ ସୁଷମା ସମ୍ବନ୍ଧରେ କହି, ଉଦ୍ଧବ ଧ୍ୟାନମଗ୍ନ ହୋଇଗଲେ । ବନ୍ଧୁଗ ସେଠାରେ ନିସ୍ତବ୍ଧ ଭାବରେ ଏକାଗ୍ରତାର ସହିତ ବସି ରହି ସେହି ଆଡକୁ ଏକ ଲୟରେ ଚାହିଁ ରହିଲେ ।

## ଛପ୍ପୟ

"ଦେଶ ଦେଶନକେ ଭୂପ ଯଜ୍ଞବର ରାଜସୂୟ ମହଁ
ନିରଖି ମୁଗ୍‌ଧସବଭୟେ ନନ୍ଦନନ୍ଦନ କୀ ଛବି ତହଁ ।।
ଘନଚାତକ ଜଲମୀନ ଶଲଭ ପାବକ ଉପମା ସବ
ଫୀକୀ ସବରୀ ଭଈଂ ଏକଟକ ଲଖେଂ ରୂପ ଜବ ।।
ରଚନା ବିଷୟକ ଚାତୁରୀ ବିଧି କୀ ସବ ପୂରୀ ଭଈ
ସବ ଅଲକୀ ସୁଷମା ଛଟା କୃଷ୍ଣ ମୂର୍ତ୍ତି ମହଁ ଧରି ଦଈ" ।।

# ଲୋକୋତ୍ତର ମାଧୁର୍ଯ୍ୟ

"ଯଦ୍‌ଧାନୁରାଗ ପ୍ଲୁତହାସ ରାସ
ଲୀଳାବଲୋକ ପ୍ରତିଲବ୍‌ଧମାନାଃ ।
ବ୍ରଜସ୍ତ୍ରିୟୋ ଦୃଗ୍‌ଭିରନୁପ୍ରବୃତ୍ତ
ଧିୟୋଽବତସ୍ଥୁଃ କିଲ କୃତ୍ୟ ଶେଷାଃ ।।"

ଭାଗବତ—୩।୨।୧୪)

**ଛପ୍‌ପୟ**

"ଜିନକୀ ମଧୁମୟ ହଁସନ ହୃଦୟ ମହଁ ମିଶ୍ରୀ ଘୋରତ ।
ଜିହଁ ଶତବହଁ ଶତଗ୍ରେର ଉଟୁ ପାଗଲ ହ୍ୱେ ଡୋଲତ ।।
ମୁରଲୀ ଅଧରନି ଧରେଁ ବଜାବହଁ ସ୍ୱରତେଂ ଗାବହଁ ।
ଛୋଡ଼ ଛୋଡ଼ ଗୃହ କାଜ ବିବଶ ବ୍ରଜବାଲ ଧାବହଁ ।
ଲଖି ମୋହନ କୀ ମାଧୁରୀ ଚୁପ୍‌ ହୋହିଁ ନହିଁ କଛୁ କହତ ।
ଆଁଖି ମୀଚଂ ଥିର ଚିତ୍ତ କରି, ଆଭୀରନି ଜୋଗନ ବନ ତ ।।"

ଅର୍ଥାତ୍—ଉଦ୍ଧବ କହୁଛନ୍ତି—"ହେ ବିଦୁର, ଯାହାଙ୍କର ପ୍ରେମମୟ ମୂର୍ତ୍ତି ମଧୁର ହାସ ତଥା ଲୀଳାମୟ ବିନୋଦ ଲକ୍ଷ୍ୟ କରି ବ୍ରଜବାସୀମାନେ ନିଜନିଜର ଚିତ୍ତବୃତ୍ତିକୁ ତାଙ୍କଠାରେ ଲଗାଇଥିଲେ ଏବଂ ସେହି କାରଣରୁ ସେମାନେ ଗୃହକର୍ମ ତ୍ୟାଗକରି ସେହି ଜମମୟ ଜାନ୍ତରେ ଦୃଷ୍ଟି ନିଙ୍କେ କରିଥାଆନ୍ତି, ତାଙ୍କ ସ୍ୱରୂପର ଲୋକୋତ୍ତର ମାଧୁର୍ଯ୍ୟ ମୁଁ କ'ଣ ବା ବର୍ଣ୍ଣନା କରିବି" ?

ମଧୁମୟ ସ୍ୱରୂପ ଆଡ଼କୁ ମନ ସ୍ୱତଃ ଆକର୍ଷିତ ହୋଇଯାଏ । ସ୍ୱାଦିଷ୍ଟ ପଦାର୍ଥ ପାଇବାକୁ ଜିହ୍ୱା ଲାଳାୟିତ ହୋଇଥାଏ । ପ୍ରେମମୟ ମଧୁର ମୂର୍ତ୍ତି ଆଡ଼କୁ ହୃଦୟ ଅକର୍ଷିତ ହୁଏ । ଭକ୍ତବୋନଙ୍କ ଐଶ୍ୱର୍ଯ୍ୟକୁ ଲକ୍ଷ୍ୟ କରି କେହି ଭୟରେ ଥରହର

ହୁଏ, କେହି ଅବା ତାଙ୍କର ଦୁଷ୍ଟଦଳନ ଶକ୍ତିକୁ ଲକ୍ଷ୍ୟ କରି ଆନନ୍ଦିତ ହୋଇଥାଏ ଏବଂ କେହି ସେହି ଅଲୌକିକ ମୂର୍ତ୍ତିକୁ ଦେଖି ଈର୍ଷା କରେ; କିନ୍ତୁ ସେ ରୂପର ମାଧୁର୍ଯ୍ୟ ସମସ୍ତଙ୍କୁ ମୁଗ୍ଧ କରିଥାଏ । ଖର, ଦୂଷଣ ଓ ତ୍ରିଶିର ଶତ୍ରୁ ଭାବରେ ମାରିବା ଲାଗି ରଘୁକୁଳ କଶୋର ଦୂର୍ବାଦଳ ଶ୍ୟାମ ଶରୀର ରଘୁନାଥଙ୍କ ନିକଟକୁ ଆସିଥିଲେ । ସେମାନେ ଶ୍ରୀରାମଙ୍କ ମଧୁମୟ ମୂର୍ତ୍ତିକୁ ଅବଲୋକନ କରି କହିଥିଲେ—"ଏପରି ସୁନ୍ଦର ଲକ୍ଷଣଯୁକ୍ତ ପୁରୁଷଙ୍କୁ ମାରିବା ଉଚିତ ହେବ ନାହିଁ । ତାହାହିଁ ହେଉଛି—ପ୍ରକୃତ ସୌନ୍ଦର୍ଯ୍ୟ । ମଧୁମୟ କାନ୍ତି ଶତ୍ରୁର ହୃଦୟରେ ମଧ୍ୟ ଉଦାରତା ଆଣିଦଏ ।

ଶ୍ରୀକୃଷ୍ଣଙ୍କ ନବନୀରଦ କାନ୍ତିରେ ଥିଲା—ଅନୁରୂପ ବୈଶିଷ୍ଟ୍ୟ । ଉଦ୍ଧବ ଶ୍ରୀକୃଷ୍ଣଙ୍କ ମଧୁମୟ ମୂର୍ତ୍ତିର ବର୍ଣ୍ଣନା କରିବାକୁ ଉଦ୍ୟତ ହେବାବେଳେ, ତାଙ୍କ ଆଖିରେ ଲାଗି ରହିଲା ବ୍ରଜାଙ୍ଗନାମାନଙ୍କର ପ୍ରେମ । ସେ ସେହି ଲୋକୋତ୍ତର ସୌନ୍ଦର୍ଯ୍ୟର ବର୍ଣ୍ଣନା କରିବାକୁ ଯାଇ କହିଲେ—"ହେ ବିଦୁର, ମୁଁ ପ୍ରଭୁଙ୍କ ସୌନ୍ଦର୍ଯ୍ୟର ବର୍ଣ୍ଣନା କିପରି କରିପାରିବି ? ତାହା ଭାଷାର ଅଗୋଚର । ତାଙ୍କ ସମ୍ବନ୍ଧରେ ମୁଁ ଅବା ଗ୍ଭର କ'ଣ କହିବି ? ଭଗବାନ ଭକ୍ତମାନଙ୍କ ଉଦ୍ଧାର ନିମିତ୍ତ ଅନେକ ଅବତାର ଧାରଣ କରିଛନ୍ତି । ନାନାବିଧ ଚମତ୍କାରିତା ଦେଖାଇ ଅଛନ୍ତି । ସେ ଅନ୍ୟ ଅବତାରଗୁଡ଼ିକରେ ବିଲକ୍ଷଣ ଶକ୍ତିର ପ୍ରଦର୍ଶନ କରିଛନ୍ତି; କିନ୍ତୁ ଏହି ଅବତାରରେ ତାଙ୍କର ଯେଉଁ ରସିକ୍ତ ମାଧୁର୍ଯ୍ୟ ପ୍ରଦର୍ଶିତ ହୋଇଛି, ତାହା କେବଳ ଭଲ ଭାବରେ ହୃଦୟଙ୍ଗମ କରି ପାରିଥିଲେ ବ୍ରଜପୁରର ଲଳନାମାନେ । ତାଙ୍କ ବାଲଲୀଳା ସମୟରେ ସେ ଯେଉଁ ମୁକ୍ତାବିନିନ୍ଦିତ ଦନ୍ତପଙ୍କ୍ତି ଦେଖାଇ ମଧୁମୟ ହାସ୍ୟ ସୃଷ୍ଟି କରୁଥିଲେ, ତାହାହିଁ ଉନ୍ମାଦିନୀ କରିଥିଲା ଗୋପାଙ୍ଗନାମାନଙ୍କୁ । ପ୍ରଭୁ ଯେତେବେଳେ ତାଙ୍କର କମନୀୟ କରରେ ସେମାନଙ୍କୁ ସ୍ପର୍ଶ କରୁଥିଲେ, ମଧୁର ବାକ୍ୟ ଛଟାରେ ସେମାନଙ୍କ ସହିତ ହାସ୍ୟ, ପରିହାସ କରୁଥିଲେ, ସେତେବେଳେ ସେମାନେ ଧନ୍ୟ ହୋଇ ଯାଉଥିଲେ ଏବଂ ସେମାନେ ଆପଣାକୁ ସଂସାରର ସର୍ବଶ୍ରେଷ୍ଠ ସୌଭାଗ୍ୟଶାଳିନୀ ବୋଲି ମନେ କରୁଥିଲେ । ସେମାନଙ୍କ ଉପରେ ଶ୍ରୀ ବୃନ୍ଦାବନଚନ୍ଦ୍ରଙ୍କ ଦୃଷ୍ଟି ପଡ଼ିଯିବା ମାତ୍ରେ, ସେମାନେ ପୁତ୍ତଳିକା ପରି ନିଶ୍ଚେଷ୍ଟ ହୋଇ ଯାଉଥିଲେ ।

"ହେ ବିଦୁର, ମୁଁ ଯେଉଁ ଦିନ ଶ୍ରୀକୃଷ୍ଣଙ୍କ ସନ୍ଦେଶ ନେଇ ଗୋପପୁରରେ ପ୍ରବେଶ କଲି, ସେହିଦିନ ପ୍ରତ୍ୟକ୍ଷ ଭାବରେ ଜାଣିଲି ଗୋପୀମାନଙ୍କର ପ୍ରେମାନୁରାଗ । ସେମାନେ ପ୍ରଭୁଙ୍କ ଲୀଳାର ଯେତେ କାହାଣୀ ମୋତେ ଶୁଣାଇଥିଲେ ତାହା ଶ୍ରବଣ କରି ମୋର କର୍ଣ୍ଣ ପବିତ୍ର ହୋଇଗଲା । ଗୋପ ଓ ଗୋପୀମାନେ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ମଧୁମୟ ମୂର୍ତ୍ତିକୁ ହୃଦୟର ଗମ୍ଭୀରତମ ପ୍ରଦେଶରେ ସାଇତି ରଖି

ଥିଲେ । ମୁଁ ସେହି ରସ ସାଗରରେ ବୁଡ଼ି ରହି, ସେଠାରେ ମାସାଧିକ କାଳ ବିତାଇଲି । ମୁଁ ସହଜ ଅନୁଭବ କଲି—ପ୍ରଭୁଙ୍କ ଲୀଳାର ମାଧୁର୍ଯ୍ୟ । ଗୋପପୁରର ପ୍ରତ୍ୟେକ ଧୂଳିକଣାରେ ବ୍ୟାପ୍ତ ହୋଇଥିଲା ଶ୍ରୀକୃଷ୍ଣଚନ୍ଦ୍ରଙ୍କର ଲୀଳାବିଳାସ । ଗୋପକାନ୍ତଙ୍କ ପ୍ରେମ ସମ୍ବନ୍ଧରେ ମୁଁ କ'ଣ କହିବି ? ସେଠାକାର ପାଷାଣ, ଗୋ, ବୃକ୍ଷ, ଲତା ଓ ଗୁଳ୍ମରେ ସ୍ପଷ୍ଟ ରହିଥିଲା ପ୍ରଭୁଙ୍କର ମାନୁଷୀ ଲୀଳାର ସ୍ୱାକ୍ଷର । ତାଙ୍କର ବଂଶୀ ଧ୍ୱନିରେ ପାଷାଣ ତରଳି ଯାଉଥିଲା । ଯମୁନା ଉଜାଣି ବହୁଥିଲା, ଗାଈମାନେ ତୃଣ କବଳ ଛାଡ଼ି ଦେଉଥିଲେ ଏବଂ ବୃକ୍ଷଲତା ରୋମାଞ୍ଚିତ ହୋଇ ଉଠୁଥିଲେ । ଗୋପୀମାନେ ତ ରକ୍ତମାଂସଧାରିଣୀ ନାରୀ; ସେମାନେ ସେହି ଧ୍ୱନିରେ ଆତ୍ମହରା ହୋଇ ଉଠୁଥିଲେ । ସେ କମନୀୟ ମୂର୍ତ୍ତିର କମନୀୟ ଚେଷ୍ଟାରେ ଗୋପାଙ୍ଗନାମାନେ ତାଙ୍କର ପାଦତଳେ ଜୀବନ, ଯୌବନ ତଥା ସମସ୍ତ ସାଂସାରିକ ବାସନାକୁ ଅର୍ପଣ କରି ଦେଇଥିଲେ । ସେମାନଙ୍କ ଆଖିରେ ଲାଖି ରହିଥିଲା—ସେହି ପ୍ରେମମୟ ମୂର୍ତ୍ତି । ସେମାନେ ସେହି ମୂର୍ତ୍ତିକୁ ବାରମ୍ବାର ଚାହିଁବାକୁ କାମନା କରୁଥିଲେ । ତେଣୁ ସାରାଦିନ ପ୍ରଭୁଙ୍କର ଲୀଳା ଦେଖିବା ପରେ ସେମାନେ ସନ୍ଧ୍ୟାବେଳେ ମଧ୍ୟ ଦୀପ ପ୍ରଜ୍ୱଳିତ କରିବା ଆଳରେ ଯଶୋଦାଙ୍କ ଦୁଆରେ ଯାଇ ରୁଣ୍ଡ ହୁଅନ୍ତି ।

ଥରେ ସଂଧ୍ୟା ଦୀପ ପାଖରେ ଛିଡ଼ା ହୋଇ ଶ୍ୟାମସୁନ୍ଦର ମାତା ଯଶୋଦାଙ୍କ ସହିତ କଳିକଜିଆ କରୁଥାନ୍ତି । ଓଃ ..ସେ ଛଳ କୋପରେ ତାଙ୍କର ମୁଖଭଙ୍ଗୀ କି ଚମତ୍କାର ଦେଖାଯାଉଥାଏ ! ଗୋପୀମାନେ ଦୀପ ଜଳାଇବା ଭୁଲିଯାଇ, ସେହି କମନୀୟ ମୁଖକାନ୍ତିକୁ ଚାହିଁ ରହିଲେ ନିର୍ନିମେଷ ନୟନରେ । ଦୀପର ସଳିତାଗୁଡ଼ିକ ଜଳିଜଳି ଆସି ଗୋପୀଙ୍କ ହାତରେ ଲାଗିଗଲା । ତଥାପି ସେ ଯନ୍ତ୍ରଣା ପ୍ରତି ଖିଆଲ୍ ନାହିଁ । ଏକ ଲୟରେ ସେମାନେ ଚାହିଁ ରହିଥାଆନ୍ତି ଶ୍ୟାମସୁନ୍ଦରଙ୍କ ମୁଖ ସୁଷମାକୁ । ମାତା ଯଶୋଦା ଏହା ଲକ୍ଷ୍ୟ କରି ଧାଇଁଯାଇ ଦୀପ ସଳିତାକୁ ଲିଭାଇ ଦେଇ ସେମାନଙ୍କ ଅସାବଧାନତା ଲାଗି ତିରସ୍କାର କଲେ । ଯଶୋଦାଙ୍କ ବାଣୀ ଶୁଣି ଗୋପୀମାନେ ସଜାଗ ହୋଇ ଉଠିଲେ । ସେମାନଙ୍କ ମୁହଁରୁ ଅସ୍ପଷ୍ଟଗୁଞ୍ଜନ ଭାସି ଆସିଲା—"ହା....ଶ୍ୟାମସୁନ୍ଦର, ହା....ମଦନମୋହନ ।"

ଆଉ ଜଣେ ବୟସ୍କା ଗୋପୀ ଯଶୋଦାଙ୍କ ଆଡ଼କୁ ଚାହିଁ କହିଲେ—"ମା,' ତୁମେ ଯେଉଁ ପୁଅ ଜନ୍ମ କରିଛ ନା, ତା'ର ଆଡ଼କୁ ଥରେ ଚାହିଁଦେଲେ ଆଉ କ'ଣ କିଏ ଦୃଷ୍ଟି ଫେରାଇ ପାରିବ ?

ଯଶୋଦା ସଙ୍ଗେ ସଙ୍ଗେ କହିଲେ—"ବହୁ, ମୋ' ଟିକି ପୁଅଟାକୁ ନଜର ଲଗାଇ ଦିଅନା .... ।"

"ମା, ଆମେ କ'ଣ ନଜର କରିବୁ, ସେ'ତ ଆମ ରୂପରେ ଯେଉଁ ନଜର ପକାଇଛୁ, ତାହା ଆମେ ଭୁଲି ପାରୁନାହୁଁ ।"

ଏହି ସମୟରେ ଶ୍ୟାମସୁନ୍ଦର ଧାଇଁ ଆସି କହିଲେ—"ଆରେ, କ'ଣ ହେଲା, ତୁମ ହାତ ଜଳିଗଲା "? ଏହା କହି ସେ ତାଙ୍କର ଅମୃତମୟ କୋମଳ କରରେ ଗୋପବଧୂର ହାତଟିକୁ ଧରି ପକାଇଲେ । ତାଙ୍କ ହାତର ସ୍ପର୍ଶ ପାଇବା ମାତ୍ରେ ହାତର ପୋଡ଼ାଜଳା ଘଡ଼ିକ ମଧ୍ୟରେ କୁଆଡ଼େ ଉଭେଇଗଲା । ସେ ଗୋପୀଙ୍କର ହାତଟିକୁ ଆଉଁସି ଦେଇ କହିଲେ—"ନାଃ....ଜଳାପୋଡ଼ା ବନ୍ଦ ହୋଇ ଗଲାଣିତ ? ଯାଅ ଟିକେ ଲହୁଣୀ ଲଗାଇ ଦେଲେ ସବୁ ଠିକ୍ ହୋଇଯିବ ।

ଏହି ସମୟରେ ଆଉ ଜଣେ ଗୋପୀ କହିଲେ—"ଶ୍ୟାମସୁନ୍ଦର, ତୁମ ହାତରେ ଯେଉଁ ସ୍ନିଗ୍ଧତା ପୂର ରହିଛି, ତାହା କ'ଣ ଲହୁଣୀରୁ ମିଳିପାରିବ? ତୁମର ସ୍ପର୍ଶ ଅମୃତଠାରୁ ଆହୁରି ଶୀତଳ; ତୁମର ଦୃଷ୍ଟି ମଧୁମୟ । ଏ ଦୃଷ୍ଟି ଫଳରେ ବଡ଼ବାନଳ ମଧ୍ୟ ଶାନ୍ତ ହୋଇଯିବ ।"

"ହେ ବନ୍ଧୁର, ଯାହାଙ୍କର ମଧୁମୟ ସୌନ୍ଦର୍ଯ୍ୟର ପ୍ରଲେପଦ୍ୱାରା ଗୋପାଙ୍ଗନାଙ୍କର ଜଳିପୋଡ଼ି ଯାଉଥିବା ହାତଟି ସଙ୍ଗେ ସଙ୍ଗେ ଶୀତଳ ହୋଇଗଲା, ସେହି ସୌନ୍ଦର୍ଯ୍ୟର ସାଗର ଆମକୁ ବିରହାଗ୍ନିରେ ଜଳାଇ କୁଆଡ଼େ ଚାଲିଗଲେ "।

## ସ୍ୱପ୍ନ

"କେଶ ପାଶଛି ପାଶ ପାଶ ଆଓ୍ୱେଂ ଫଂସି ଜାଓ୍ୱେଂ
ଭୌଁହ କମାନ ସମାନ ନାଇ ଲଖି ଡୋର ଚଢ଼ାଓ୍ୱେଂ ।।
ଚିତବନ ତରଛୀ ତୀର ଲଗେ ଘାୟଲ କର ଜାଓ୍ୱେଂ
ନହିଁ ଜୀଓ୍ୱେଂ ନହିଁ ମରେ ଅଧମରୀ ହୈ ବିଲଲାଓ୍ୱେଂ ।।
ତବଗୋଦୀ ମହିଁ ସିର ଧରଯୋ ଭକ୍ତ ହେଗୀ ବନ୍ଧୁର
ଅଜୀ ଅବ୍ ତଲକ ଜାଁଘ୍‌ମେଁ ଚିହ୍ନ ପରମ ଶୁଭ ହୈ ମଧୁର" ।।



# ଅଜନ୍ମାର ଜନ୍ମ

"ସ୍ୱଶାନ୍ତ ରୂପେ ଷ୍ୱିତରୈଃ ସ୍ୱରୂପୈ—
ରଭ୍ୟର୍ଦ୍ୟମାନେଷ୍ୱନୁ କମ୍ପିତାତ୍ମା ।
ପରାବରେଶୋ ମହଦଂଶଯୁକ୍ତୋ
ହ୍ୟଜୋଽପି ଜାତୋ ଭଗବାନ୍ ଯଥାଗ୍ନିଃ ॥
(ଭାଗବତ ୩।୨।୧୫)

## ଛପ୍ପୟ

"ବନ୍ଧୁର, ଅଜନ୍ମା ହୋଇ ଜନ୍ମଲୀନ୍ହୋ ମନମୋହନ ।
କରୁଣାବଶ ବନି ତନୟ କର ହିଂ ସୈଁଗନି ଗୋ ଦୋହନ ॥
ମଥୁରା ମହଁ ଲେ ଜନ୍ମ ଭଗି ଗୋକୁଲ ମହଁ ଆଯେ ।
ଚୋର କେ ଅପରାଧ ଦାମ ତେଂ ଶ୍ୟାମ ବଁଧାଯେ ॥
ଅଜ ଅବିନାଶୀ ଗୁଣ ରହିତ ବେଦ ଜାହିଁ ଅଚ୍ୟୁତ କହହିଁ ।
ଡର ଡର ବୈ ଜାତେଂ ସତତ ସୋ ଡର କେ ବ୍ରଜମହିଁ ରହହିଁ ।"

ଅର୍ଥାତ୍—ଶାନ୍ତ ସ୍ୱରୂପୀ ଋଷି ମୁନି ତଥା ଭୟଙ୍କର ସ୍ୱରୂପବିଶିଷ୍ଟ ଅସୁର ଦାନବାଦି ସମସ୍ତେ ତାଙ୍କର ସ୍ୱରୂପର ବିକାର । ତଥାପି ଦାନବାଦିଙ୍କଦ୍ୱାରା ମୁନିଋଷିମାନେ ପ୍ରପୀଡ଼ିତ ହେଉଥିବାର ଲକ୍ଷ୍ୟ କରି ସେହି ଅଜନ୍ମା, ଶୁଦ୍ଧକାଷ୍ଠରେ ଅଗ୍ନି ପ୍ରକଟ ହେବା ପରି ନିଜର ଅଂଶ ସ୍ୱରୂପୀ ବଳଦେବଙ୍କ ସହିତ ଜନ୍ମଗ୍ରହଣ କରିଛନ୍ତି ।

ନିଜର କର୍ମ ଅନୁସାରେ ପ୍ରାଣୀ ଜନ୍ମଲାଭ କରେ । ସୁକର୍ମ କଲେ ଦେବତା ଆଦି ପୁଣ୍ୟ ଯୋନିରେ ଜନ୍ମ ହେବାକୁ ପଡ଼େ ଏବଂ କୁକର୍ମ ଫଳରେ ପଶୁ, ପକ୍ଷୀ, କୀଟ ଓ ପତଙ୍ଗ ଯୋନିରେ ଜନ୍ମଗ୍ରହଣକରି ପ୍ରାଣୀ ଦୁଃଖ ତଥା ଯାତନା ଭୋଗକରେ ।

ଏହା ବ୍ୟତୀତ ଶୁଭ ଓ ଅଶୁଭ ମିଶ୍ରିତ କର୍ମ ଫଳରେ ପ୍ରାଣୀ ମନୁଷ୍ୟ ଯୋନି ଲାଭ କରିଥାଏ । କର୍ମଫଳ ଭୋଗ ଶେଷ ନ ହେବା ପର୍ଯ୍ୟନ୍ତ ପ୍ରାଣୀ ବାରମ୍ବାର ବିଭିନ୍ନ ଯୋନିରେ ଜନ୍ମଗ୍ରହଣ କରୁଥାଏ ।

ଭଗବାନ୍ ତ କର୍ମ ବନ୍ଧନର ବାହାରେ । ସେ କିପରି ମନୁଷ୍ୟ ଯୋନିରେ ଜନ୍ମଗ୍ରହଣ କଲେ, ଏହା ତ ଅତ୍ୟନ୍ତ ରହସ୍ୟର କାରଣ ପରି ମନେ ହେଉଛି ।

ଅନେକ ଲୋକ ଭାବନ୍ତି—ଭଗବାନ୍ ଆଦୌ ଜନ୍ମଗ୍ରହଣ କରନ୍ତି ନାହିଁ । ସେ ଘଟ-ଘଟ ବାସୀ । ଯେ ଯେଉଁ ରୂପରେ ତାଙ୍କୁ କଳ୍ପନା କରେ, ସେ ସେହି ରୂପରେ ତାଙ୍କ ଆଗରେ ପ୍ରତିଭାତ ହୁଅନ୍ତି ।

ଯଦି କେହି ତାଙ୍କୁ ନିର୍ଗୁଣ ବୋଲି କହି ଭଜନ କରେ, ତେବେ ପ୍ରଭୁ ତା' ପକ୍ଷରେ ନିରାକାର; କେହି ଯଦି ତାଙ୍କୁ ସଗୁଣ ଭାବରେ ଉପାସନା କରେ' ସେ ବିଭିନ୍ନ ସ୍ୱରୂପ ଧାରଣ କରି ତା'ର ବାଞ୍ଛାପୂର୍ଣ୍ଣ କରନ୍ତି; କିନ୍ତୁ ବିଦୁର, ଆମ୍ଭେମାନେ ପ୍ରଭୁଙ୍କର ମଧୁର ଭାବର ଉପାସକ । ତେଣୁ ଆମେ ଜନ୍ମ ନେଇଥିବାରୁ ଆମ ପ୍ରଭୁ ଶ୍ୟାମସୁନ୍ଦର ଆମର ପାଇଁ ମଧୁମୟ ମୂର୍ତ୍ତିରେ ଆମ ଚକ୍ଷୁ ସମକ୍ଷରେ ବିରାଜମାନ କରିଥା'ନ୍ତି । ଆମେ ଆମର ଜନ୍ମୋତ୍ସବ ପାଳନ କରିବା ପରି, ପ୍ରଭୁଙ୍କ ଜୟନ୍ତୀ ପାଳନ କରୁଥାଉଁ । 'ଯଥା ଦେହେ ତଥା ଦେବେ' ମତରେ ଆମେ ନିଜ ଓ ପ୍ରଭୁଙ୍କ ମଧ୍ୟରେ ଆଦୌ ଭେଦ ଦେଖୁ ନ ଥାଉଁ । ସେ ସର୍ବଜ୍ଞ, ସର୍ବ ସମର୍ଥ । ତେଣୁ କର୍ମ ବନ୍ଧନରୁ ମୁକ୍ତ ହୋଇଥିଲେ ମଧ୍ୟ କେବଳ ଆମରି ଇଚ୍ଛାର ପରିପୂରଣ ଲାଗି ସେହି, ଅଜନ୍ମା ଜନ୍ମଗ୍ରହଣ କରନ୍ତି । ସେ ଅଚ୍ୟୁତ ହୋଇଥିଲେ ମଧ୍ୟ ଅବନୀରେ ଅବତୀର୍ଣ୍ଣ ହୁଅନ୍ତି । ରାଜା ଯେପରି ନିଜର ଇଚ୍ଛାନୁସାରେ ବିଭିନ୍ନ ପ୍ରକାର ଦୋଷୀଙ୍କ ମଧ୍ୟରୁ କାହାକୁ ମୁକ୍ତ କରିଦିଅନ୍ତି ଏବଂ କାହାରିକୁ ଦଣ୍ଡ ଦେଇ ଥାନ୍ତି; ଠିକ୍ ସେହିପରି ପରମାତ୍ମା କୌତୁକବଶତଃ କେଉଁ ଭକ୍ତକୁ ମୋକ୍ଷଦାନ କରନ୍ତି, ଏବଂ କାହାରିକୁ ବାରମ୍ବାର ଜନ୍ମ ଦେଇ ତାଙ୍କ ଲୀଳାର ସଙ୍ଗୀ କରନ୍ତି ।

"ହେ ବିଦୁର, ଅବତାର ଗ୍ରହଣ କରିବା ଫଳରେ ଭଗବାନ୍‌ଙ୍କର କି ଉପକାର ସାଧିତ ହେଉଛି ? ସେ ଧର୍ମାତ୍ମାମାନଙ୍କୁ ଧର୍ମ ପାଳନରେ ଅସୀମ ଶକ୍ତି ଏବଂ ଅସୁରମାନଙ୍କୁ ମଧ୍ୟ ଆସୁରି ଶକ୍ତି ପ୍ରଦାନ କରିଛନ୍ତି । ସେ ଇଚ୍ଛାକଲେ ଦୁଷ୍ଟ-ମାନଙ୍କୁ ସଂସାରରେ ଜନ୍ମ ଦିଅନ୍ତେ ନାହିଁ । ନା'....ସେ ତାହା କରିବେ ନାହିଁ । ସେ ଜାଣିଶୁଣି ଦାନବମାନଙ୍କୁ ଅଧିକ ବଳଶାଳୀ କରୁଛନ୍ତି । ତା' ଫଳରେ ସେମାନେ ସାଧୁମାନଙ୍କୁ ଅଶେଷ ପୀଡ଼ା ପ୍ରଦାନ କରୁଛନ୍ତି । ସେ ସାଧୁ ଓ ସତ୍ ପୁରୁଷମାନଙ୍କର ଧୈର୍ଯ୍ୟ ପରୀକ୍ଷା କରିବା ଛଳରେ ଏପରି କରୁଛନ୍ତି ଏବଂ ପରି-

ଶେଷରେ ସେଇମାନଙ୍କ ସଂରକ୍ଷଣ ଲାଗି ସେ ଅବଧାରଣ କରୁଛନ୍ତି । ପ୍ରଭୁଙ୍କର କି କ୍ରୀଡ଼ା ? କି ଲୀଳା ? ନିଜ ଲୀଳାର ବଶବର୍ତ୍ତୀ ହୋଇ ପ୍ରଭୁ କେବେକେବେ ଅସୁରମାନଙ୍କଠାରୁ ପରାଜିତ ହୋଇଥାଆନ୍ତି । ମଧୁ-କୈଟଭ ତାଙ୍କର ଶରୀରରୁ ଜାତ ହୋଇ ତାଙ୍କର ସହିତ ଯୁଦ୍ଧ କରିବାକୁ ଧାଇଁଲେ । କି ବିଚିତ୍ର ଲୀଳା ? ପ୍ରଭୁ ସେମାନଙ୍କ ନିକଟରୁ ହାରି ଗଲେ । ଦୈତ୍ୟ ଦୁହେଁ ଯୋଗମାୟାର ପ୍ରଭାବରେ ପରାଭୂତ ହୋଇ ଅହଙ୍କାର ସହିତ କହିଲେ— 'ବିଷ୍ଣୁ, ଆମେ ତୁମ ଉପରେ ସନ୍ତୁଷ୍ଟ ହେଲୁ । ଆମେ ସତ୍ୟ କରୁଛୁ, ତୁମେ କି ବର ମାଗୁଛ ମାଗ !"

"ଯୋଗମାୟାରେ ଆଚ୍ଛନ୍ନ ଦୈତ୍ୟ ଦୁହେଁ ଏଥର ବିଷ୍ଣୁଙ୍କର ବୈଷ୍ଣବୀ ଫାନ୍ଦରେ ପଡ଼ିଗଲେ । ପ୍ରଭୁ ଉତ୍ତର ଦେଇ କହିଲେ—"ମୁଁ ତୁମ ଦୁହିଁଙ୍କୁ ବଧ କରିବି, ମୋର ଏହି ବର ଦରକାର ।"

"ଅସୁର ଦୁହେଁ ନିତାନ୍ତ ଅଡ଼ୁଆରେ ପଡ଼ିଗଲେ । ପ୍ରଭୁ ସେ ଦୁହିଁଙ୍କୁ ମାରି ତାଙ୍କର ମେଦରେ ମେଦିନୀ ସୃଷ୍ଟି କଲେ । ସେ ଅପରାଜିତ ହୋଇ ମଧ୍ୟ ଦୈତ୍ୟଙ୍କ-ଠାରୁ ପରାଜିତ ହେଲେ । ଅଜନ୍ମା ହୋଇ ମଧ୍ୟ ଜନ୍ମଗ୍ରହଣ କଲେ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ସବୁ କିଛି ତାଙ୍କର ଲୀଳା ।"

ତା'ପରେ ଉଦ୍ଧବ କିଛି ସମୟ ନୀରବ ରହି କହିଲେ—"ହେ ବିଦୁର, ଆପଣ କହିଛନ୍ତି, ଶ୍ରୀକୃଷ୍ଣଙ୍କ ଲୀଳା ସମ୍ବନ୍ଧରେ ଶୁଣିବା ଲାଗି ଭଗବତ୍ ଚର୍ଚ୍ଚା ହିଁ ତାଙ୍କର ଲୀଳା । ଆପଣ ତାଙ୍କର ବିଭିନ୍ନ ଚରିତ ବହୁ ବାର ଶୁଣିଛନ୍ତି ।"

ଅତ୍ୟନ୍ତ ବିନୟ ସହକାରେ କହିଲେ ବିଦୁର—"ଉଦ୍ଧବ, କ'ଣ ଅବା ଉତ୍ତର ଦେବି ? ପ୍ରଭୁଙ୍କ ଲୀଳା ଏପରି ଉନ୍ମାଦକାରୀ ଯେ, ବାରମ୍ବାର ଶୁଣିବାକୁ ଇଚ୍ଛା ହେଉଛି । ହରିଲୀଳା-ମୃତ-ପାନରେ ମନର ତୃଷ୍ଣା ଆହୁରି ତୀବ୍ର ବେଗରେ ବୃଦ୍ଧି ପାଉଛି ।"

ଏହା ଶୁଣି ଉଦ୍ଧବ ହସିଦେଇ କହିଲେ—"ହଁ, ସେଇଥିପାଇଁ ପ୍ରଭୁ ବାରମ୍ବାର ଜନ୍ମଗ୍ରହଣ କରି ବିଭିନ୍ନ ଲୀଳାର ଅବତାରଣା କରୁଛନ୍ତି ।

"ଭଗବାନ ଅବ୍ୟାପ୍ତି, ଅବ୍ୟୟ, ଅନନ୍ତ ତଥା ଅପରିଚ୍ଛିନ୍ନ । ତଥାପି ସେ ବ୍ୟାପ୍ତି ମଧ୍ୟରେ ବିଚରଣ କରିଛନ୍ତି । ଅଷ୍ଟାବିଂଶତି କଳିଯୁଗରେ ସେ କୃଷ୍ଣାବତାର ଧାରଣ କରି ବ୍ରଜମଣ୍ଡଳରେ ଅବତୀର୍ଣ୍ଣ ହୋଇଥିଲେ । ଅଜନ୍ମା ହୋଇଥିଲେ ହେଁ, ଭାଦ୍ରମାସ କୃଷ୍ଣାଷ୍ଟମୀ ତିଥିରେ ଅର୍ଦ୍ଧ ରାତ୍ରିରେ ସେ ମଥୁରାର ବନ୍ଦି ଗୃହରେ ଅବତୀର୍ଣ୍ଣ ହୋଇଥିଲେ । ସର୍ବଶକ୍ତିମାନ ହୋଇ ମଧ୍ୟ ମାମୁଁ କଂସର ଭୟରେ ମଥୁରା ତ୍ୟାଗ କରି ଗୋପପୁରକୁ ପଳାଇଗଲେ । ଲୀଳାମୟଙ୍କର ବିଚିତ୍ର ଲୀଳା ବିଦୁର ! ଜନ୍ମ ହେବାମାତ୍ରେ ପିତା ବସୁଦେବଙ୍କୁ ସ୍ପଷ୍ଟ ଭାବରେ କହିଲେ—"ମୋତେ

ଗୋପପୁରକୁ ନେଇଯାଅ । ବନ୍ଦୀଗୃହର ତାଲା ଖୋଲିଗଲା, ପ୍ରହରୀମାନେ ଯୋଗ-ମାୟାଙ୍କ ଆଚ୍ଛନ୍ନ ହୋଇ ଶୋଇପଡ଼ିଲେ । ତା'ର ମଧ୍ୟରେ 'ଚୌରଚୂଡ଼ାମଣି' ପ୍ରଭୁ ପିତାଙ୍କ କନ୍ଧରେ ବସି ଗୋପମଣ୍ଡଳକୁ ନଣାନ୍ଧରେ ଚାଲିଗଲେ ।

"ହେ ବନ୍ଧୁର, ସେହି ଲୀଳାମୟ ଶ୍ରୀକୃଷ୍ଣଙ୍କ ଚରିତ କେତେ ଅବା କହିବି ? ତାଙ୍କର ପ୍ରତ୍ୟେକ ଲୀଳା ଏକରୁ ଆରକ ବଳି ବିସ୍ମୟକର ! ସଂସାରରେ ଚୋର ତସ୍କରଙ୍କୁ ସମସ୍ତେ ଭୟ କରନ୍ତି । କିନ୍ତୁ ଶ୍ରୀକୃଷ୍ଣଙ୍କ ଲୀଳା ସମସ୍ତଙ୍କ ହୃଦୟକୁ ଚୋରାଇ ନେଇଛି । ମୂଢ଼ ଲୋକମାନେ କହନ୍ତି– "ସେ ଯଦି ପ୍ରକୃତରେ ସର୍ବ-ଶକ୍ତିମାନ୍ ପରମାତ୍ମା, ତେବେ କଂସର ଭୟରେ କାହିଁକି ମଥୁରାର ବନ୍ଦିଶାଳାରୁ ଗୋପକୁ ପଳାଇ ଗଲେ ?"

"କିନ୍ତୁ ଭଗବାନ କେବେହେଲେ ମାରିବା ପାଇଁ ଅବତାର ଗ୍ରହଣ କରୁ ନ ଥିଲେ । ତାଙ୍କ ଅବତାରର ମହାନ ଗୁଣ ଥିଲା—ଉଦ୍ଧାର କରିବା । ସେ ମୃତ୍ୟୁ ମାଧ୍ୟମରେ ଅମୃତତ୍ୱ ଦେଇ ଥାଆନ୍ତି । ସେ ଅନ୍ୟକୁ କନ୍ଦାଇବା ପାଇଁ ନୁହେଁ, ହସାଇବା ପାଇଁ ଜନ୍ମ ଗ୍ରହଣ କରିଥିଲେ । ହୁଏତ ତୁମେ କହିପାର, ସେ ତ ନିଜେ ଯଶୋଦାଙ୍କ ଗ୍ରହକୁ ଦେଖି ଭୟ...କରି କାନ୍ଦି ପକାଉଥିଲେ, ସେ କପରି ଅନ୍ୟକୁ ହସାଇ ପାରିବେ ?

"ବନ୍ଧୁ, ସେ କାନ୍ଦଣା ଥିଲା ଲୋକ ଦେଖାଣିଆ ଅର୍ଥାତ୍ ଲୀଳାମୟ ପୁରୁଷୋତ୍ତମଙ୍କର ବିଳାସ । ନାଟକର ପାତ୍ର ସଂଳାପ ମାଧ୍ୟମରେ ନିଜେ ରୋଦନ କଲେ ମଧ୍ୟ ଲୋକେ ସେଥିରୁ ଆନନ୍ଦ ପାଇ ପାରନ୍ତି; ଠିକ୍ ସେହିପରି, ଶ୍ରୀକୃଷ୍ଣଙ୍କ ରୋଦନରେ ଗୋପପୁରର ନରନାରୀମାନେ ଅଶେଷ ଆନନ୍ଦ ଲାଭ କରୁଥିଲେ । ସେହି ରୋଦନ ମାତା ଯଶୋଦାଙ୍କର ହୃଦୟକୁ ତରଳାଇ ଦେଉଥିଲା । ସେ ହାତରୁ ଗ୍ରାହ ଫିଙ୍ଗିଦେଇ ମନମେ ହିନଙ୍କୁ କୋଳେଇ ନେଉଥିଲେ ।

ମାତା ଯଶୋଦା ହୁଏତ ଦିବ୍ୟ ଦୃଷ୍ଟିରେ ଭାବିଥିବେ—ଆଚ୍ଛା, ତୁ ପରା ଜଗତଟାଯାକ ଲୋକଙ୍କୁ ମାୟାର ଡୋରିରେ ବାନ୍ଧି ରଖିଛୁ, ଦେଖୁଛୁ, ତୋତେ ମୁଁ ବାନ୍ଧି ପାରୁଛି କି ନାହିଁ ?

"ଭଗବାନ ତ ଭକ୍ତର ଅଧୀନ । ମାତାଙ୍କ ଅଭିଳାଷକୁ ପୂର୍ଣ୍ଣ କରିବା ଲାଗି ସେ ତାଙ୍କର ହାତରେ ବାନ୍ଧି ହୋଇଗଲେ । ଅସୀମଙ୍କୁ ସସୀମ ବାନ୍ଧି ପକାଇଲା, ଏହିପରି ଭାବରେ କାଳଯବନ ମଧ୍ୟ ଚିନ୍ତା କରିଥିଲା । ଆଉ କେତେ ତାଙ୍କର ଗୁଣ ବାଖ୍ୟାନିବି ?"

ଶ୍ରୀ ଶୁକଦେବ ମହାରାଜ ପରୀକ୍ଷିତଙ୍କୁ କହୁଛନ୍ତି—"ହେ ରାଜନ ! ଶ୍ରୀକୃଷ୍ଣଙ୍କର ସମସ୍ତ ଚରିତ ମୁଁ ପର୍ଯ୍ୟାୟକ୍ରମରେ ତୁମକୁ ଶୁଣାଇବି । ଏଠାରେ କେବଳ ପ୍ରସଙ୍ଗ ଅନୁସାରେ କେତୋଟି କଥା କହିବାକୁ ଯାଉଛି ।

## ଛପ୍‌ପୟ

"ବ୍ୟାପକ ପ୍ରକଟେ ବହ୍ନି କାଷ୍ଠ ମହଁ ମନ୍ଥନ କରିକେଂ ।
ଜଲ ତେଂ ହିମ ହ୍ୱୈ ଜାୟ ଉଚ୍ଛାରେ କରପେ ଧରିକେଂ॥
ଇକ୍ଷୁ ଅମଲ ରସ ଜମେ ମଧୁର ମିଶ୍ରୀ ହ୍ୱୈ ଜାଓ୍ୱେ ।
ମାଖନ ପୟମହଁ ବ୍ୟାପ୍ତ ମଥେଂ ତେଂ ସୋ ବଲଗାଓ୍ୱେ ॥
ସୁଖଦ ମନୋହର ମଧୁର ରସ ଘନୀଭୂତ ନରତନୁ ଭୟୋ ।
ନୈନନ କୂଁ ଲଲଚାୟ କେଂ ଅନ୍ତର୍ହିତ ଅବହ୍ୱୈ ଗୟୋ ॥"



# ଦୀନ ତଥା ଦୁଷ୍ଟଙ୍କ ପ୍ରତି ଦୟା

"ଅହୋ ବକୀ ଯଂ ସ୍ତନକାଳକୂଟଂ
ଜିଘାଂସୟା ପାୟୟଦପ୍ୟସାଧ୍ୱୀ ।
ଲେଭେ ଗତିଂ ଧାତ୍ର୍ୟୁଚିତାଂ ତତୋଽନ୍ୟଂ
କଂ ବା ଦୟାଳୁଂ ଶରଣଂ ବ୍ରଜେମ ।।"

(ଭାଗବତ ୩ । ୨ । ୨୩)

## ଛପ୍ପୟ

"ଜୈସୀ ପୂଜା କରୈ ଦେବ ତୈସୋ ଫଲ ଦେୱେଂ ।
ଜ୍ୱୈଁ ସୋ ବେତନ ମିଲତୁ ଭୂପକୋ ଜିହି ବିଧି ସେୱେଂ ।।
କିନ୍ତୁ କୃଷ୍ଣ କୀ ବାନ ସବନ ତେଂ ପରମ ନିରାଲୀ ।
ସବ କୁସବନ୍ଧୁ ଆଇ ଦ୍ୱାର ତେଂ ଜାୟ ନ ଖାଲୀ ।।
ବାଲ ଘାତିନୀ ପୂତନା ରକ୍ତପାନ ରାକ୍ଷସୀ କରହି ।
ଦଇ ଦୟାବଶ ମାତୁଗତି ତିହୁଁବନୁ କୋ ଭବ ଦୁଖ ହରହି ।।'

ଅର୍ଥାତ୍—ଉଦ୍ଧବ କହୁଛନ୍ତି—"ହେ ବିଦୁର, ସ୍ତନରେ ବିଷଭରି ପୂତନା ମାଆର ଛଳନା କରି ପ୍ରଭୁଙ୍କୁ ମାରିବାକୁ ଆସିଥିଲା; କିନ୍ତୁ ପ୍ରଭୁଙ୍କର ଉଦାରତା ଦେଖ, ସେ ତା'ପରି ଗୋଟିଏ ରାକ୍ଷସୀକୁ ମାତାର ସମ୍ମାନ ଦେଇ ମୋକ୍ଷ କରାଇଲେ । ଏଭଳି ଦୟାଳୁ ପ୍ରଭୁଙ୍କୁ ଛାଡ଼ି ଆମେ ଆଉ କାହାଠାରେ ଶରଣ ପଶିବା ?"

ସୁସ୍ଥ ମନରେ ରସାସ୍ୱାଦନ କରାଯାଇପାରେ । ସଙ୍କୋଚ, ଭୟ, ଚିନ୍ତା, ଅନ୍ୟ ମନସ୍କତା, ଅସ୍ଥିରତାରେ ରସର ଉପଭୋଗ କରାଯାଇ ପାରେନାହିଁ । ଶ୍ରୀକୃଷ୍ଣଙ୍କ ଚରିତ ଶ୍ରବଣରେ ତଲ୍ଲୀନ ବିଦୁରଙ୍କ ଆଗରେ ଉଦ୍ଧବ ଦିବ୍ୟ ଚରିତମାନ

ବଖାଣି ଯିବାକୁ ଲାଗିଲେ । ସେ ଲୀଳା ଗାୟନ ଅପେକ୍ଷା ପ୍ରଭୁଙ୍କ ଦୟାଳୁତା ସମ୍ପର୍କରେ କେତୋଟି ଉଦାହରଣ ଦେବାକୁ ଲାଗିଲେ ।

ଉଦ୍ଧବ ସେହି ପ୍ରସଙ୍ଗ ଉତ୍ଥାପନ କରି କହିଲେ—"ହେ ବିଦୁର, ଅକ୍ରୂର କଂସର ଆଦେଶରେ ଶ୍ରୀକୃଷ୍ଣଙ୍କୁ ଗୋପପୁରରୁ ମଥୁରାକୁ ନେଇ ଯାଇଥିଲେ । ସେଠାରେ ସେ କଂସକୁ ବିନାଶ କରିବା ପରେ; ମାତା ପିତାଙ୍କୁ ବନ୍ଦିଶାଳାରୁ ମୁକୁଳାଇ, ହାତଯୋଡ଼ି ବିନୀତ ଭାବରେ କହିଲେ—"ଆପଣମାନେ ମୋତେ କ୍ଷମା କରି ଦିଅନ୍ତୁ । ବାଲ୍ୟ ଓ ପୌଗଣ୍ଡରେ ପୁତ୍ରମାନେ ପିତାମାନଙ୍କୁ ଯେଉଁ ଆନନ୍ଦ ପ୍ରଦାନ କରନ୍ତି, ମୁଁ ତାହା କରିପାରି ନାହିଁ । ମୋର କିଛି ଉପାୟ ନ ଥିଲା । ମୁଁ କଂସର ଭୟରେ ଭୟଭୀତ ହୋଇ ଯାଇଥିଲି ।"

"ବିଦୁର, ଭଗବାନଙ୍କର ଏ ଲୀଳା ସମ୍ବନ୍ଧରେ ମୁଁ ଅଦ୍ୟାପି ଭୁଲି ପାରୁନାହିଁ । ତାଙ୍କ ଚରଣାରବିନ୍ଦର ପବିତ୍ର ପରାଗର ସୁଗନ୍ଧରେ ସମସ୍ତେ ବଶୀଭୂତ ହୋଇ ଯାଆନ୍ତି । କିଏ ତାଙ୍କୁ ଭୁଲି ପାରିବ ?

"ସେ ଥିଲେ—ଆମର ସ୍ୱାମୀ, ଆରାଧ୍ୟ ଓ ସେବ୍ୟ । ଆମେ ତାଙ୍କର ଶରଣାଗତ କିଙ୍କର । ସ୍ୱାମୀ ତାଙ୍କର ସେବକମାନଙ୍କ ପ୍ରତି ଅଶେଷ ଅନୁଗ୍ରହ ଦେଖାଇ ଥାନ୍ତି । ଆପଣଙ୍କୁ ମୁଁ କ'ଣ ଅବା କହିବି ? ଧର୍ମରାଜଙ୍କ ରାଜସୂୟ ଯଜ୍ଞରେ ଦେଖୁଛନ୍ତି; ଶିଶୁପାଳ ତାଙ୍କୁ କିପରି କଟୁକଥା କହି ଅପମାନିତ କରିଥିଲା; କିନ୍ତୁ ପ୍ରଭୁ କୃପାକରି ତାକୁ ମୋକ୍ଷ ଦାନ କରିଥିଲେ । ଆପଣ ଚିନ୍ତା କରନ୍ତୁ, ଏପରି ପ୍ରଭୁଙ୍କର ବିରହ ଆମେମାନେ କିପରି ସହନ କରି ପାରିବା ?

"ମହାଭାରତ ଯୁଦ୍ଧରେ ଅର୍ଜୁନଙ୍କ ରଥରେ ପାର୍ଥସାରଥି ବସି ଯୁଦ୍ଧ ପରିଚାଳନା କରୁଥିଲେ । ସେତିକବେଳେ ବିପକ୍ଷ ଯୋଦ୍ଧାମାନେ ଶତ୍ରୁ ଭାବରେ ହେଲେ ମଧ୍ୟ ପ୍ରଭୁଙ୍କ ମୁଖ ପଦ୍ମକୁ ଚାହିଁ ପ୍ରାଣତ୍ୟାଗ କରିବା ସଙ୍ଗେ ସଙ୍ଗେ ମୋକ୍ଷପ୍ରାପ୍ତି କରୁଥିଲେ ।'

"ଭଗବାନ ନିଜ ଭକ୍ତଙ୍କ ପାଇଁ ଶ୍ରେଷ୍ଠ ଶ୍ରେଷ୍ଠ କାମ କରିବାକୁ ନିଜର ଗୌରବ ଅନୁଭବ କରୁଥିଲେ । ତାଙ୍କ କୃପା ରୂପକ ଐଶ୍ୱର୍ଯ୍ୟ ଏବଂ ତାଙ୍କ ପରାକ୍ରମର ତୁଳନା ନାହିଁ । ସେ ପରମାନନ୍ଦ, ସ୍ୱୟଂ ସିଦ୍ଧ ଓ ସତ୍ତ୍ୱସ୍ୱରୂପ ହୋଇ ଥିବାରୁ ପୂର୍ଣ୍ଣକାମ ଅଟନ୍ତି । ସେଇଥିପାଇଁ ବ୍ରହ୍ମା ଇନ୍ଦ୍ରାଦି ଦେବଗଣ ତଥା ସିଦ୍ଧ ମୁନିଋଷି-ମାନେ ତାଙ୍କୁ ନାନାବିଧ ଉପାୟରେ ପୂଜା କରୁଛନ୍ତି । ତାଙ୍କ ଦିବ୍ୟ ମୁକୁଟର ଉଜ୍ଜ୍ୱଳ ମଣିହାର ସମସ୍ତଙ୍କ ପାଦପଦ୍ମ ସର୍ବଦା ପ୍ରକାଶିତ ହେଉଥାଏ । ସେହି ମହାପ୍ରଭୁ, ମହାରାଜ ଉଗ୍ରସେନଙ୍କ ସମ୍ମୁଖରେ ହାତଯୋଡ଼ି ଛିଡ଼ା ହୋଇଥିବା

ସମସ୍ତର ଦୃଶ୍ୟ ଦେଖି ଆମେ ବିସ୍ମିତ ହୋଇଯାଉ । ସେ ଶିଷ୍ଟାଚାର ପ୍ରଦର୍ଶନ କରି ରଜାଙ୍କ ଆଗରେ ବିନୀତ ଭାବରେ ନିବେଦନ ଜଣାଉ ଥିଲେ । ଆମେମାନେ ତାଙ୍କର ତୁଚ୍ଛ ସେବକ । ତେଣୁ ତାଙ୍କର ବିନୀତ ଭାବ ଦେଖିଲେ ଆମେ ଲଜ୍ଜିତ ହୋଇ ଯାଉଥାଉଁ । ଆମ ମନରେ ଧାରଣା ହୁଏ—ଆମ ମହାପ୍ରଭୁ ଯେତେବେଳେ ଏତେ ବିନୟୀ, ଆମେ କ'ଣ ତାଙ୍କର ସେବକ ହେବାକୁ ଯୋଗ୍ୟ କି ?

“ବିଦୁର, ଆପଣ ଜାଣି ପାରନ୍ତି, ଶିଶୁପାଳ ତାଙ୍କର ସମ୍ପର୍କୀୟ, ତେଣୁ ପ୍ରଭୁ ତାଙ୍କୁ ମୁକ୍ତିପଥ ଦେଖାଇ ଦେଲେ; କିନ୍ତୁ ପ୍ରକୃତରେ ପ୍ରଭୁଙ୍କ କରୁଣାର ଇୟତ୍ତା ନାହିଁ ! ସେ ଦୁଷ୍ଟ ରାକ୍ଷସମାନଙ୍କୁ ନିଜ ଚକ୍ରରେ ସଂହାର କରି ସେମାନଙ୍କୁ ମୁକ୍ତ କରିଥିଲେ । ଏହାର ବହୁ ଦୃଷ୍ଟାନ୍ତ ରହିଛି । ବିଶେଷତଃ ଆପଣ ଉଦାହରଣ ସ୍ୱରୂପ ପୂତନାକୁ ନେଇ ପାରନ୍ତି । ଗୋଟିଏ ନରମାଂସ ଭକ୍ଷଣକାରିଣୀ, ଶିଶୁଘାତିନୀ ରାକ୍ଷସୀକୁ ମଧ୍ୟ ପ୍ରଭୁ କରୁଣା କଟାକ୍ଷରେ ଉଦ୍ଧାର କରି ଦେଇଛନ୍ତି । ଅସଦାଚାରିଣୀ, ଦୟାହୀନା, ସ୍ନେହବିହୀନା ପୂତନା ପ୍ରତି ପ୍ରଭୁଙ୍କ ପ୍ରାଣରେ କି ଦୟା ଭରି ରହିଥିଲା !

“ଆପଣ ଜାଣିପାରନ୍ତି, ସେ ସମସ୍ତ ଦୋଷରେ ଦୂଷିତା ହେଲେ ମଧ୍ୟ କୌଣସି ଶୁଭସଙ୍କଳ୍ପ ମନରେ ପୋଷଣ କରି ପ୍ରଭୁଙ୍କ ନିକଟକୁ ଆସିଥିବ, ତେଣୁ ପ୍ରଭୁ ତାକୁ ମୋକ୍ଷଗତି ଦେଲେ । ତାହା ତୁମେ କେବେହେଲେ କଳ୍ପି ପାରିବ ନାହିଁ । ସେ ସ୍ତନରେ କାଳକୂଟ ବିଷପୂର୍ଣ୍ଣ କରି ବାଳକ ଶ୍ରୀକୃଷ୍ଣଙ୍କୁ ପ୍ରାଣରେ ମାରି ଦେବାପାଇଁ ଆସିଥିଲା । ତା' ସତ୍ତ୍ୱେ ପ୍ରଭୁ ତାକୁ ନର୍କଗତି ଦେଲେନାହିଁ । ପ୍ରଭୁ ନିଜର ପତିତପାବନ ବାନାର ମହତ୍ତ୍ୱ ରକ୍ଷା କରି ଭାବିଲେ—'ବିଚାରୀ ମୋକ୍ଷ ପାଇବା ପାଇଁ ସବୁକିଛି ଛାଡ଼ି ମୋ'ର ନିକଟକୁ ଧାଇଁ ଆସିଛି ।' ତେଣୁ ସେ ତାକୁ ଉଦ୍ଧାର କରିଦେଲେ । ଭଗବାନ ନିଷ୍କପଟ, ତାଙ୍କ ହୃଦୟରେ କପଟର ଭାବ ଲେଶ ମାତ୍ର ନଥିଲା । ତେଣୁ ସେ ପୂତନାର କପଟବ୍ୟବହାର ଆଦୌ ବିଚାର ନ କରି, ତା' ଲାଗି ବୈକୁଣ୍ଠରେ ଆସନ ନିର୍ଦ୍ଧାରିତ କରିଦେଲେ । ଭଗବାନ ପୁନଶ୍ଚ ସେହି ରାକ୍ଷସୀକୁ ପୁଣ୍ୟବତୀ କରି ମୋକ୍ଷ ଦେବା ଇଚ୍ଛାରେ, ତା' କୋଳରେ ପୁତ୍ର ହୋଇ ବସିପଡ଼ି ସ୍ତନପାନ କଲେ । ତାକୁ ବଧ କରିବା ପରେ ମଧ୍ୟ ବ୍ରଜବାସୀଙ୍କ-ଦ୍ୱାରା ତା'ର ଶବ ସତ୍କାର କରାଇଲେ । ଶକଟାସୁର ପ୍ରଭୃତି ଅନ୍ୟାନ୍ୟ ଅସୁର-ମାନଙ୍କ ପ୍ରତି ପ୍ରଭୁଙ୍କ ଦୟାଳୁତା ଲକ୍ଷ୍ୟ କଲେ, ମନେହୁଏ—ଏ ଭଳି ପ୍ରଭୁଙ୍କୁ ଛାଡ଼ି ଆମେ ଅନ୍ୟ କାହା ପାଖରେ କାହିଁକି ଶରଣ ପଶିବା ?”

## ଛପ୍ପୟ୍

"ନାମ ଜାତିକୁଲ କର୍ମଭାବ ସମ୍ବନ୍ଧ ନ ପେଖେଂ ।
କହହୁ ଜୀବ ଅଲପଙ୍କ ଅଲଖ କୂଁ କୈସେ ଦେଖେଁ ॥"
କୈସେ ହୂ ଆଜାୟୁ ତାହି ଶ୍ରୀ ହରି ଅପନାୱେଂ
ଦୁର୍ଜନତା ଦୁଖ ମେଟି ପରମ ନିଜ ଧାମ ପଠାୱେଂ ॥
ପାପୀ ଦ୍ୱେଷୀ ଗୁଣରହିତ ନିତ ନିନ୍ଦେ ନିତ ଅଘକରେଂ
ତାମସ କ୍ରୂର ପିଶାଚ ଖଲ ଦେଖି ମରେଂ ତେହୁ ତରେଂ" ॥



# ଆତ୍ମାରାମଙ୍କ ରମଣୀୟ କ୍ରୀଡ଼ା

"କୌମାରୀଂ ଦର୍ଶୟଂଶ୍ଚେଷ୍ଟାଂ ପ୍ରେକ୍ଷଣୀୟାଂ ବ୍ରଜୌକସାମ୍
ରୁଦନ୍ନିବ ହସନ୍ ମୁଗ୍ଧବାଲ ସିଂହାବଲୋକନଃ ॥
ସ ଏବ ଗୋଧନଂ ଲକ୍ଷ୍ମ୍ୟା-ନିକେତଂ ସିତଗୋବୃଷମ୍
ଚାରୟନ୍ନନୁଗାନ୍ ଗୋପାନ୍ ରଣଦ୍ ବେଣୁରରୀରମତ୍ " ॥

( ଭାଗବତ ୩ । ୨ । ୨୮-୨୯ )

## ଛପ୍‌ପୟ

"ଶ୍ରୀ ବୃନ୍ଦାବନ ପରମରମ୍ୟ କାଳନ୍ଦୀ କୁଂଜେ
ନିତ ବସନ୍ତ ଜହଁ ବସେ ମଧୁର ସ୍ୱର ମଧୁ ଗୁଂଜେ ॥
ଟାଓ୍ୱେଂ ସେଓ୍ୱେଂ ହୁଁ ସେ ତହଁ । ନର ନାଟ୍ୟ ଦିଖାଓ୍ୱେଂ
ସ୍ୱରମୟବେନ୍ ବଜାୟ ଗ୍ୱାଲ ସଙ୍ଗ ଗାୟ ଚରାଓ୍ୱେଂ ॥
ମାମାକୀ ସୌଗାତ ମହଁ ଭେଜେ ଭୀଷଣ ଅସୁର ଗନ
ଖେଲେ ତିନତେଂ ବାଲବତ, ମାରଦଇ ଚରନନ ଶରନ" ॥

ଅର୍ଥାତ୍—ଉଦ୍ଧବ କହୁଛନ୍ତି—"ହେ ବିଦୁର, ପ୍ରଭୁ ସର୍ବଶକ୍ତିମାନ ହୋଇଥିଲେ ହେଁ କେତେ ପ୍ରକାର ପିଲାଖେଳ ଖେଳିଛନ୍ତି, ତା'ର ଇୟତ୍ତା ନାହିଁ । ସିଂହଶାବକଙ୍କ ପରି ବଡ଼ ବଡ଼ ଆଖି ଦେଖାଇ ସେ ଅଳିଅଳରେ ଖେଳୁଥିବା ସମୟରେ କେତେବେଳେ କାନ୍ଦ ପକାଇଥିଲେ ଏବଂ କେତେବେଳେ ହସି ହସି ଗଡ଼ି ଯାଉଥିଲେ । ସେ ବଡ଼ ହୋଇଯିବା ପରେ ବୃନ୍ଦାବନରେ ଗୋପବାଳକଙ୍କ ସହିତ ଗୋ ବୃଷଭ ଚରାଇ ବନ୍ଧୁମାନଙ୍କ ଚିତ୍ତରେ ବଂଶୀବଜାଇ ଆନନ୍ଦିତ ହେଉଥିଲେ ।

ମନିଷ ତାର ସ୍ୱଭାବ ତ୍ୟାଗ କରିପାରେ ନାହିଁ । ସଚ୍ଚିଦାନନ୍ଦ ବିଗ୍ରହ ସର୍ବଦା ମୋଦମଗ୍ନ ହୋଇ ଥାଆନ୍ତି । ସେ ଯେ ଁଠି ଯେଉଁ ଅବସ୍ଥାରେ ଥିଲେ ମଧ୍ୟ ତାଙ୍କ ମୁଖମଣ୍ଡଳରୁ ଆନନ୍ଦର ଅମୀୟ-ଝର ଝରି ପଡ଼ୁଥାଏ ।

'ବନ୍ଧୁଗ, ମଥୁରାର କାରାବାସରୁ ଲୁଚି ପଳାଇ ଆସିବା ପରେ ଶ୍ରୀକୃଷ୍ଣ ଏଗାର ବର୍ଷର ହେବା ପର୍ଯ୍ୟନ୍ତ ଗୋପବାଳକମାନଙ୍କ ସହିତ ବୃନ୍ଦାବନର ଗହନ କାନନରେ ପରିଭ୍ରମଣ କରିଥିଲେ । ବଳଦେବ ସେତେବେଳେ ତାଙ୍କର ସହଚର ଓ ଗୋପକୁମାରୀମାନେ ତାଙ୍କର ସହଚରୀ ରୂପେ କାନନରେ ବୁଲୁଥିଲେ । ସେହି ମାନଙ୍କ ସହିତ ଶ୍ରୀକୃଷ୍ଣ ବାଳକ କର ବହୁବିଧ ଲୀଳା ସମ୍ପାଦନ କରିଥିଲେ । ଯେଉଁ ଗୋପ କୁମାର ଓ ଗୋପ କୁମାରୀମାନେ ପ୍ରଭୁଙ୍କ ସହିତ ଖେଳସାଥୀ ହୋଇଥିଲେ; ସେମାନଙ୍କ ଜୀବନ ଧନ୍ୟ ଏବଂ ସେମାନେ ବନ୍ଦନୀୟ ଅଟନ୍ତି । ଏହା ବ୍ୟତୀତ ଯେଉଁ ଅସୁରମାନେ ତାଙ୍କ ହାତରେ ପ୍ରାଣ ବିସର୍ଜନ କରିଛନ୍ତି, ସେମାନେ ମଧ୍ୟ କମ୍ ପୂଜ୍ୟ ନୁହନ୍ତି । ସେହି ଦୁଷ୍ଟ ଅସୁରମାନେ ଗରୁଡ଼ ପୃଷ୍ଠରେ ବିରାଜମାନ କରିଥିବା ପ୍ରଭୁଙ୍କ ଦର୍ଶନ ପାଇଛନ୍ତି । ସେମାନେ ମଧ୍ୟ ପ୍ରଭୁଙ୍କର ଭକ୍ତ । କେବଳ ପାର୍ଥକ୍ୟ ହେଉଛି— ଅସୁରମାନେ ଦ୍ୱେଷଭାବ ପୋଷଣ କରିଥିଲେ ଏବଂ ଗୋପକୁମାର ଓ ଗୋପାଙ୍ଗନା ମାନେ ସଖା ପ୍ରିୟ ତଥା ଅନ୍ତରଙ୍ଗ ଭାବରେ ତାଙ୍କୁ ଭଜନ କରିଥିଲେ ।

"ବସୁଦେବ ମହୋଦୟ ପ୍ରଭୁଙ୍କୁ ଗୋପରେ ଛାଡ଼ି ଆସିବା ପରେ, ସେଠାରେ ନିତ୍ୟ ନୂତନ ଲୀଳା ଲାଗିଲା । ପ୍ରଭୁ ସେଠାରେ ବାଳଲୀଳା ଛଳରେ ସର୍ବବିଧ ଚେଷ୍ଟା ପ୍ରଦର୍ଶନ କରି ମାତାପିତା, ଭାଇ ବନ୍ଧୁ ତଥା ସଖା ସହୋଦରଙ୍କୁ ମୁଗ୍ଧ କରିଥିଲେ । ଆଉ ଟିକିଏ ବଡ଼ ହୋଇ ଯିବାପରେ ପ୍ରଭୁ ଗୋପବାଳକ-ମାନଙ୍କ ସହିତ ଯମୁନା ପୁଳିନରେ ନାନା ପ୍ରକାର ଖେଳ ଖେଳି ସାଥୀମାନଙ୍କୁ ପ୍ରୀତ କରାଉଥିଲେ । ଯେ ଗାଈ ବାଛୁରୀମାନଙ୍କୁ ଆଦରର ସହିତ ଚରାଇ ବନଭୂମିକୁ ପବିତ୍ର କରାଇଥିଲେ । ସେ ଗାଈ, ବାଛୁରୀ ଓ ବୃଷଭମାନଙ୍କ ସହିତ ନାନା ପ୍ରକାର ଖେଳ ଖେଳୁଥିଲେ । ଗାଈ ବାଛୁରୀମାନେ ସ୍ନେହରେ ଶ୍ରୀକୃଷ୍ଣଙ୍କୁ ଦୃଷ୍ଟି ପକାଉ ଥିଲେ । ପ୍ରଭୁଙ୍କର ଖେଳ ଚାଲିଥିବା ସମୟରେ ବୃନ୍ଦାବନରେ ନିତ୍ୟନୂତନ ବସନ୍ତ ପ୍ରବାହିତ ହେଉଥିଲା ।

ଗୋଚାରଣ ସମୟରେ ପ୍ରଭୁଙ୍କ ମନମୋହନ ବେଶ ପ୍ରତ୍ୟେକ ବ୍ରଜପୁର-ବାସୀଙ୍କୁ ବିମୁଗ୍ଧ କରୁଥିଲା, ତାଙ୍କର ସୁଗଠିତ ଶରୀର ବାଙ୍କ ଚାହାଣି, ସିଂହଠାଣି ଗତି, ରାଜହଂସ ପରି ଧୀର ମନ୍ଥର ଚାଲି, ପାଦର ନୂପୁର ଓ ସୁକୁମାର ପାଦ ଯୁଗଳ ଦେଖି ସୁର, ନର, ନାଗ, ଗନ୍ଧର୍ବ ସମସ୍ତେ ବଶ ହୋଇ ଯାଉଥିଲେ । କେତେବେଳେ ପ୍ରଭୁ ଗୁଣୁ ଗୁଣୁ ହୋଇ ଗୀତ ଗାଇ ଗାଇ ଚାଲି ଚାଲି ବୁଲୁ ଥାଆନ୍ତି, ଆଉ କେତେବେଳେ ସାଙ୍ଗସାଥୀଙ୍କୁ ବିସ୍ମିତ କରାଇ ଗଛ ଉପରେ ଚଢ଼ି

ତାଲମାନଙ୍କୁ ଖେଳନ୍ତି ଏବଂ ଅନ୍ୟ କେତେବେଳେ ଶାଙ୍ଗପିଲାଙ୍କ କାନ୍ଧରେ ବସି ସେମାନଙ୍କ ସହିତ କଳରେ ମାତି ଯାଆନ୍ତି । ତାହା ଯେ ପ୍ରତ୍ୟକ୍ଷ କରିଛି, ସେହି କେବଳ ଜାଣେ ତା'ର ମାଧୁରୀ ।

"ତାଙ୍କ ମାମୁଁ କଂସ ଖେଳିବା ଲାଗି କେତେଗୁଡିଏ ଭୟଙ୍କର ଖେଳନା ପଠାଇ ଥିଲେ ସତ, ପ୍ରଭୁ ସେଥିପ୍ରତି ଆଦୌ ଦୃଷ୍ଟି ଦେଇ ନ ଥିଲେ । ସେଗୁଡ଼ିକ ଥିଲା ପ୍ରକୃତରେ ମହାଭୟଙ୍କର । ପ୍ରଭୁଙ୍କର ଅନିଷ୍ଟ ପାଇଁ କଂସ ସେଗୁଡ଼ିକୁ ପଠାଇ ଥିଲା । ପ୍ରଭୁଙ୍କ ପକ୍ଷରେ ସବୁ କିଛି ସୁନ୍ଦର, ସବୁ କିଛି ମନମୋହକ । ସେ ସ୍ୱୟଂ ଶିବ, ସୁନ୍ଦର ଓ ସତ୍ୟସ୍ୱରୂପୀ । ତେଣୁ ଯିଏ ଯାହା ତାଙ୍କୁ ଅର୍ପଣ କରେ, ତାଙ୍କ ପକ୍ଷରେ ସେ ସମସ୍ତ ପଦାର୍ଥ ସତ୍ୟ ଓ ସୁନ୍ଦର ରୂପରେ ପ୍ରତିଭାତ ହୋଇଥାଏ । ଶିଶୁପାଳ ଉଦର୍ଯ୍ୟ ଭାଷାରେ ଗାଳିଦେଲା, ସେ ତାକୁ ଆନନ୍ଦରେ ସହିଗଲେ । ପୂତନା ବିଷ ଭରି ସ୍ତନପାନ କରାଇଲା, ସେ ତାହା ପୂର୍ଣ୍ଣ ଆନନ୍ଦରେ ପିଇଗଲେ । ସୁଦାମ ଖୁଦ ମକୁଆ ଗଣ୍ଡାଏ ଦେଲା, ସେ ତାକୁ ଆଦରରେ ଖାଇଦେଲେ । ଦୁର୍ଯ୍ୟୋଧନ ତାଙ୍କ ଆଗରେ ଅଭିମାନ ପ୍ରଦର୍ଶନ କଲା, ସେ ତାକୁ ଗ୍ରହଣ କରିନେଲେ । ମାମୁଁ ମଧ୍ୟ ରାକ୍ଷସରୂପୀ ଖେଳନାଗୁଡ଼ିକୁ ପଠାଇଲା, ସେ ସେମାନଙ୍କ ଆହ୍ୱାନ ସାଦରେ ଗ୍ରହଣ କଲେ । ମାମୁଁ ପଠାଇଥିବା ଅଦରର ଜିନଷଗୁଡ଼ିକୁ ସେ ପ୍ରତ୍ୟାଖ୍ୟାନ କରନ୍ତେ କପରି ? ତେଣୁ ମାମୁଁ ଯେତେ ରାକ୍ଷସଙ୍କୁ ପଠାଇଲେ, ସେ କୌଣସି ଜଣକୁ ହେଲେ ମଥୁରା ଫେରି ଯିବାକୁ ଦେଲେନାହିଁ । କିଛି ସମୟ ପର୍ଯ୍ୟନ୍ତ ସେମାନଙ୍କ ସହିତ ଖେଳ କୁଦ ସେମାନଙ୍କୁ ସେଇଠି ବ୍ରଜଭୂମିରେ ଚିରନିଦ୍ରାରେ ଶୁଆଇ ଦେଲେ ।

"କାଳୀୟ ନାଗ ଦଂଶନ କରି ପ୍ରଭୁଙ୍କ ଶ୍ରୀଅଙ୍ଗରେ ବିଷ ଭରିଦେବାକୁ ଚେଷ୍ଟା କଲା, କିନ୍ତୁ ଯେ କିଛି କରିପାରିଲା ନାହିଁ । ତା'ର ଅପରାଧ ଲାଗି ତାକୁ କାଳିନ୍ଦୀ ହ୍ରଦରୁ ଚିରଦିନ ଲାଗି ଗ୍ରାଡ଼ି ଚାଲିଯିବାକୁ ହେଲା । କାଳିନ୍ଦୀ ହ୍ରଦର ଜଳକୁ ଅମୃତମୟ କରି ପ୍ରଭୁ ଗୋପବାଳକମାନଙ୍କୁ ପିଆଇଲେ ।

"ହେ ବନ୍ଧୁର ! ଭଗବାନ୍ ଶ୍ରେଷ୍ଠ ପିଲାଟିଏ ହୋଇ ମଧ୍ୟ ବଡ଼ ବଡ଼ କୁଳବୃଦ୍ଧମାନଙ୍କୁ ମହାନ୍ ଶିକ୍ଷା ଦେଇଥିଲେ । ସେ ବ୍ରଜଭୂମିର ଅଚଳା ବଭୂତକୁ ଯଜ୍ଞ ଓ ଦାନ କାର୍ଯ୍ୟରେ ବ୍ୟୟିତ କରିବା ଲାଗି ସମସ୍ତଙ୍କୁ ଉଚିତ ଶିକ୍ଷା ଦେଲେ । ସେ ବ୍ରଜବାସୀଙ୍କୁ ଇନ୍ଦ୍ର ପୂଜାରୁ ବିରତ କରାଇ ଗୋବର୍ଦ୍ଧନ ଉତ୍ସବ କରାଇଲେ । ତା' ଫଳରେ ଇନ୍ଦ୍ର ପ୍ରଭୁଙ୍କ ମହିମା ବୁଝି ନପାରି, ଗୋପପୁରବାସୀଙ୍କୁ ସମୁଚିତ ଦଣ୍ଡ ଦେବା ଲାଗି ପ୍ରସ୍ତୁତ ହୋଇଗଲେ । ସେ ପ୍ରଳୟକାଳୀନ ବର୍ଷା ଓ ବଜ୍ରାଘାତ କରି ଗୋପପୁରବାସୀଙ୍କୁ ସମୂଳେ ଧ୍ୱଂସ କରିଦେବା ଲାଗି ପ୍ରଚଣ୍ଡ ବେଗରେ ଧାଇଁ ଆସିଲେ; କିନ୍ତୁ ପ୍ରଭୁ ସେ ସମୟରେ ମଧ୍ୟ କମ୍ କୌତୁକିଆ ଖେଳ ଖେଳିଲେ

ନାହିଁ । ସେ ଗୋବର୍ଦ୍ଧନ ଗିରିକୁ ଆଙ୍ଗୁଳି ଅଗରେ ଟେକି ଧରି ସମଗ୍ର ଗୋପପୁରକୁ ରକ୍ଷା କରିବା ସଙ୍ଗେ ସଙ୍ଗେ ଇନ୍ଦ୍ରର ଗର୍ବ ଚୂର୍ଣ୍ଣ ବିଚୂର୍ଣ୍ଣ କରିଦେଲେ ।

"ବିଦୁର, ଏହିପରି ଅନେକ ଲୀଳା ନନ୍ଦନନ୍ଦନ ବ୍ରଜ ମଣ୍ଡଳ ମଣ୍ଡନ ତଥା ଗୋପୀଜନବଲ୍ଲଭ କରିଛନ୍ତି । ପୂତନାବଧଠାରୁ ଆରମ୍ଭ କରି ଅକ୍ରୂରଙ୍କ ଆଗମନ ପର୍ଯ୍ୟନ୍ତ ଯେତେ ଯେତେ ଲୀଳା ପ୍ରଭୁ ଗୋପପୁରରେ ଆରମ୍ଭ କଲେ, ତାହା ଯେ ସ୍ୱଚକ୍ଷୁରେ ଦେଖିଛି, ସେମାନଙ୍କ ଭାଗ୍ୟ ବିଷୟରେ ଆଉ କହିବା କଣ ? ସେହି ଲୀଳାସମ୍ବାଦ ଶ୍ରବଣରେ ପ୍ରାଣୀମାନେ ଭବସାଗରରୁ ମୁକ୍ତ ହୋଇଯାଆନ୍ତି, ଏହା ବ୍ୟତୀତ ରାସଲୀଳାରେ ସେ ଯେଉଁ ଦିବ୍ୟାତିଦିବ୍ୟ ରସର ପାରାବାର ଛୁଟାଇଲେ, ତାହା କିଏ ଅବା ଭାଷାରେ ବର୍ଣ୍ଣନା କରିବ ? ସେହି ଲୀଳା ହେଉଛି—ସର୍ବାପେକ୍ଷା ମାଧୁର୍ଯ୍ୟର ପରାକାଷ୍ଠା । କୋଟି କନ୍ଦର୍ପ ଜିଣା ସେହି ରୂପକୁ ଧ୍ୟାନ କରି, ଆଲିଙ୍ଗନ, ଚୁମ୍ବନଦ୍ୱାରା ଯେଉଁ ଗୋପୀମାନେ ଆତ୍ମାରାମ ସହିତ ବିଳାସ କଲେ, ସେହି ଗୋପୀମାନଙ୍କ ଚରଣରଜର ଉପାସକ ହେଉଛି ମୁଁ । ସେହି ସୌଭାଗ୍ୟବତୀ ବ୍ରଜଲଳନାମାନେ ହେଉଛନ୍ତି—ମୋର ଦୀକ୍ଷାଗୁରୁ । ସେ ସମ୍ପର୍କରେ ମୁଁ ତୁମକୁ ଅନ୍ୟ କେତେବେଳେ କହିବି ।"

ସୂତ କହିଲେ—"ହେ ମୁନିମାନେ, ଉଦ୍ଧବ ଏତିକି କହି କହି ସମସ୍ତ ମୌନ ହୋଇ ରହିଲେ । ରାସଲୀଳା ପ୍ରସଙ୍ଗ ମନରେ ପଡ଼ିବାକ୍ଷଣି ସେ ଆତ୍ମାନନ୍ଦ ଭାବ ସମାଧିରେ ତଲ୍ଲୀନ ହୋଇଗଲେ ।

## ଛପ୍‌ପୟ

"ନାଥ୍ୟୋ କାଳିୟନାଗ ନୀର ହ୍ରଦ ନିର୍ମଳ କୀହ୍ନୋ
ଇନ୍ଦ୍ରଯାଗ କୋ ଭାଗ ରାଜ ଗିରିବର କୁ ଦୀହ୍ନୋଂ ॥
କର୍‌ୟୋ କୋପ ସୁରରାଜ ପ୍ରଳୟ କୋ ଜଲ ବରସାୟୋ
ବ୍ରଜବାସିନୀ କରି ଅଭୟ ଶୈଲ କର କମଲ ଉଠାୟୋ ॥
ଗ୍ୱାଲ ବାଲ ଗୋପୀ ଗଊ ଜବ ଜଲତେଂ ନିର୍ଭୟ ଭୟେ
ରସ ବରସାୟୋ ମହିଁ ହରି ଅନ୍ତର୍ହିତ ହ୍ୱୈ ଗୟେ" ॥



# ମଥୁରାଲୀଳା

"ତତଃ ସ ଆଗତ୍ୟ ପୁରଂ ସ୍ୱପିତ୍ରୋ—
ଶ୍ଚିକୀର୍ଷୟା ଶଂ ବଲଦେବସଂଯୁତଃ ।।
ନିପାତ୍ୟ ତୁଙ୍ଗାଦ୍ରିପୁଯୂଥ ନାଥଂ
ହତଂ ବ୍ୟକର୍ଷଦ୍ ବ୍ୟସୁମୋଜସୋର୍ବ୍ୟାମ ।।"

( ଭାଗବତ ୩ । ୩ । ୧୭ )

## ଛପ୍ପୟ

"ବୃନ୍ଦାବନ ମହଁ ପ୍ରକଟ ଚରିତ ଅନୁପମ ଦରସାୟେ
ମଥୁରାଜୀ ତେଂ ଗୟେ ଫେରି ମଥୁରାମହଁ ଆୟେ ।।
ମାମାକୋ ଆତିଥ୍ୟ ଗ୍ରହଣ କରି ହରଷି ପଧାରେ
ଗଜ ମୁଷ୍ଟିକ ଚାଣୂର ଦୁଷ୍ଟ ସବ ପକରି ପଛାରେ ।।
ସବ ଅସୁରନ କେ ମୁକୁଟମଣି, କୁଲକଲଙ୍କ ଓ୍ୱା କଂସ କୂଁ
ମାରି ଘସୀଟେ୍ୟା ଗଲନ ମହଁ ଅଭୟ କରେ୍ୟା ଯଦୁବଂଶ କୂଁ ।।

ଅର୍ଥାତ୍—ଉଦ୍ଧବ କହୁଛନ୍ତି—"ହେ ବିଦୁର ! ଶ୍ୟାମସୁନ୍ଦର ନିଜ ଭାଇ ବଳଦେବଙ୍କ ସହିତ ମାତାପିତାଙ୍କୁ ସୁଖ ଦେବା ନିମିତ୍ତ ବ୍ରଜପୁରରୁ ପୁଣି ମଥୁରାକୁ ଫେରି ଆସିଲେ । ସେଠାରେ ସେ ଦାନବ କୁଳର ଅଗ୍ରଣୀ କଂସକୁ ଉଚ୍ଚ ମଞ୍ଚରୁ ଟାଣି ଆଣି ତାର ନିର୍ଜୀବ ଦେହଟିକୁ ଭୂଇଁରେ ଘୋଷାରି ଥିଲେ ।

ଏହି ସଂସାରର ଚକ୍ର ଅହରହ ଘୂରିବାକୁ ଲାଗିଛି । ଆଜି ଆମେ ଯେଉଁ-ମାନଙ୍କୁ ଛାଡ଼ି ଆଗେଇ ଯାଉଥାଉଁ, କାଳକ୍ରମେ ପୁଣି ସେହିମାନଙ୍କ ସହିତ ମିଳିତ ହେଉଥାଉଁ । କାଲି ପୁଣି ଆମେ ଯାହାକୁ ଡରୁଥିଲେ, ଆଜି ସେହି ବ୍ୟକ୍ତି ଆମକୁ

ଭସ୍ମ କରୁଛୁ । କାଳର କୁଟୀଳ କର୍ମକୁ ଜଣାଇ ଦେବାପାଇଁ ପ୍ରଭୁ ମନୁଷ୍ୟ ଅବତାର ଗ୍ରହଣ କରିଛନ୍ତି ।

"ହେ ବିଦୁର, ପ୍ରଭୁ ଏଗାର ବର୍ଷ ପର୍ଯ୍ୟନ୍ତ ବ୍ରଜଲୀଳାରେ ମାତିରହି ସମସ୍ତଙ୍କୁ ସୁଖଦାନ କରିଥିଲେ । ତାପରେ ସେ ନିଜର ପ୍ରକଟଲୀଳା ବ୍ରଜଭୂମିରୁ ସମ୍ବରଣ କରି ମଥୁରାକୁ ଚାଲି ଆସିଲେ, ବ୍ରଜବାସୀଙ୍କୁ ପ୍ରଭୁ ଅନ୍ତରଙ୍ଗତାର ସହିତ ଭଲ ପାଉଥିଲେ । ସେମାନେ ମଧ୍ୟ ପ୍ରଭୁଙ୍କୁ ଅନ୍ତରର ନିଭୃତ କୋଣରେ ଚାହିଁ ରଖିଥିଲେ । ତଥାପି ଲୋକ ଦେଖାଣିଆ ଭାବରେ ଶ୍ରୀକୃଷ୍ଣ ମାମୁଁଙ୍କ ନିମନ୍ତ୍ରଣ ପାଇ ମଥୁରା ଚାଲିଯାଇଥିଲେ ।

"ଆପଣ କହି ପାରନ୍ତି, ପ୍ରଭୁ କ'ଣ କଂସଠାରୁ ପ୍ରତିଶୋଧ ନେବାପାଇଁ ମଥୁରା ଯାଇଥିଲେ ? ନା, ତା'ନୁହେଁ, ସେ ଦେବକୀ ବସୁଦେବଙ୍କୁ ଆନନ୍ଦ ଦେବା ଲାଗି ସେଠାକୁ ଯାଇଥିଲେ ।

ଗୋପପୁରରେ ଶ୍ରୀକୃଷ୍ଣଙ୍କ ଲୀଳା ସମ୍ବନ୍ଧରେ ବାର୍ତ୍ତାପାଇ, ମଥୁରାପୁରର ନାରୀମାନେ ଭାବୁଥିଲେ—'ହାୟ, ଆମେମାନେ କ'ଣ ସେହି ସୁକୁମାର କିଶୋରଙ୍କୁ ଦର୍ଶନ କରିବାର ସୌଭାଗ୍ୟ ଲାଭ କରିପାରିବୁ ନାହିଁ' ?

"ମଥୁରାର ମଲ୍ଲବୀରମାନେ ଶ୍ରୀକୃଷ୍ଣଙ୍କ ଅଦ୍ଭୁତ କର୍ମମାନଙ୍କ ବିଷୟରେ ଶୁଣି ଭାବୁଥିଲେ—ଶ୍ରୀକୃଷ୍ଣଙ୍କ ଅଙ୍ଗରେ ଅଙ୍ଗ ଲଗାଇ ଆମେ କଣ କେବେ ମଲ୍ଲଯୁଦ୍ଧରେ ତାଙ୍କ ସହିତ ମିଶି ପାରିବୁ ନାହିଁ ? କେବେ ସେ କରୁଣାସାଗର ମଥୁରା ଆସି ଆମ ପରି ଦ୍ୱିପଦ ପଶୁମାନଙ୍କୁ ଉଦ୍ଧାର କରିବେ ?

"କଂସ ଶୟନ, ସ୍ୱପ୍ନରେ ଚିନ୍ତା କରୁଥିଲା—ଶ୍ରୀକୃଷ୍ଣ ମୋର କାଳ, କେବେ ସେ ଆସି ମୋତେ ବଧ କରିବେ ? ତେଣୁ ସେ ସର୍ବଦା ଶ୍ରୀକୃଷ୍ଣଙ୍କୁ ମନେ ମନେ ଭଜନ କରୁଥିଲା ।

"ବସୁଦେବ ବନ୍ଦୀଗୃହରେ ବସି ଭାବୁଥିଲେ—'ମୋ' ପୁଅ ଏବେ କେତେ ବଡ଼ ହୋଇ ଯିବଣି । ଗତ ଭାଦ୍ରକୃଷ୍ଣ ଅଷ୍ଟମୀରେ ତା'ର ଦଶବର୍ଷ ପୂର୍ଣ୍ଣ ହୋଇଗଲା । ଆଗାମୀ ଭାଦ୍ରମାସକୁ ତାର ଏଗାର ବର୍ଷ ବୟସ ପୂର୍ଣ୍ଣ ହୋଇଯିବ । ଆଉ କେବେ ମୋ' ପୁଅଟିକୁ ଛାତିରେ ଲଗାଇ ମୋର ଦଗ୍ଧ ପ୍ରାଣକୁ ଶୀତଳ କରିବି ?

ମାତା ଦେବକୀ ମଧ୍ୟ ନବଘନ ଶ୍ୟାମସୁନ୍ଦରଙ୍କୁ ମନେ ମନେ ଚିନ୍ତା କରୁଥିଲେ । ସ୍ନେହରେ ତାଙ୍କର ସ୍ତନରୁ କ୍ଷୀର ସ୍ରାବ ଆସୁଥିଲା । ପ୍ରତିଦିନ ସେ ଭାବୁଥିଲେ—କାଲି ପ୍ରଭାତରେ ମୁଁ ମୋର ଅନ୍ଧର ଲଉଡ଼ିକୁ ଦେଖିବାକୁ ପାଇବି ।

ଛଅ ପାହ୍ନ ଘଣ୍ଟା ପରେ ଘଣ୍ଟା ବିତି ଯାଉଥିଲା, ଭଗବାନ୍ ମରୀଚିମାଳୀ ସୂର୍ଯ୍ୟ ଅସ୍ତାଚଳକୁ ଗମନ କରୁଥିଲେ । ତା'ପରେ ଦେବକୀ ନିରାଶ ହୋଇ ଭାବୁଥିଲେ— ନାଃ, କାଲି ସକାଳୁ ମୁଁ ମୋର ପୁଅକୁ ଦେଖି ପାରିବି । ମାତା ଦେବକୀଙ୍କର ଏହିପରି ଚିନ୍ତା ଦିନ, ସପ୍ତାହ, ମାସ, ଋତୁ ଓ ବର୍ଷ ଧରି ଚାଲିଥାଏ । ଦିନ ଗଣି ଗଣି ଦେବକୀ ଦଶଟି ବର୍ଷ ବିତାଇ ଦେଲେ ।

"ଦେବତାମାନେ ସାନ୍ଦୀପନି ମୁନିଙ୍କୁ ଆଲୋଚନା ପ୍ରସଙ୍ଗରେ କହିଥିଲେ— ସ୍ୱୟଂ ପରଂବ୍ରହ୍ମ ତୁମର ଶିଷ୍ୟତ୍ୱ ଗ୍ରହଣ କରିବେ । କାଶୀର ଅଧିବାସୀ ଗୁରୁ ସାନ୍ଦୀପନି ବେଳକାଳ ଜାଣି ଗୋପପୁର ନିକଟସ୍ଥ ଅବନ୍ତୀପୁରରେ ଆସି ବସବାସ କରିବାକୁ ଲାଗିଲେ । ଦୂରଦୂରାନ୍ତରୁ ବହୁ ଛାତ୍ର ଆସି ତାଙ୍କ ନିକଟରେ ଅଧ୍ୟୟନ କରୁଥିଲେ; କିନ୍ତୁ ସାନ୍ଦୀପନିଙ୍କ ମନର ଔତ୍ସୁକ୍ୟ ଦିନକୁ ଦିନ ବୃଦ୍ଧି ପାଇବାକୁ ଲାଗିଲା । ସେ କେବେ ପ୍ରଭୁଙ୍କ ମୁଖ ଦର୍ଶନ କରିବେ, ସେହି ଚିନ୍ତା ତାଙ୍କୁ ଘାରିବାକୁ ଲାଗିଲା । ଗୁରୁ ସାନ୍ଦୀପନି ଥିଲେ— ଚତୁର୍ବେଦ୍ ଜ୍ଞ । ତାଙ୍କ ମନର ଉତ୍କଣ୍ଠା ଚରମସୀମାରେ ଉପନୀତ ହେବାପରେ, ଶ୍ରୀକୃଷ୍ଣ ଅକ୍ରୂରଙ୍କ ରଥରେ ବସି ମଥୁରା ପୁରରେ ପଦାର୍ପଣ କଲେ । ମଥୁରାର ଅଧିବାସୀମାନେ ଚିରତୃଷିତ ଚକୋର ପରି ଶ୍ରୀକୃଷ୍ଣଚନ୍ଦ୍ରଙ୍କ ମୁଖମଣ୍ଡଳରୁ ସୁଧାପାନ କରି ପରିତୃପ୍ତ ହେଲେ । ମଥୁରାର ରଙ୍ଗମଞ୍ଚର ଦର୍ଶକମାନେ ଶ୍ରୀକୃଷ୍ଣଙ୍କ ସୌନ୍ଦର୍ଯ୍ୟ ଅବଲୋକନ କରି ପ୍ରୀତ ହେଲେ । ମଲ୍ଲମାନେ ଶ୍ରୀକୃଷ୍ଣଙ୍କ ନବନୀତ କୋମଳ ଶରୀରରେ ଘୋର ଲଗାଇ ନିଜ ନିଜର ଚିର ଅଭିଳଷିତ ଇଚ୍ଛା ପୂରଣ କରିବା ସଙ୍ଗେ ସଙ୍ଗେ ଅମରପୁରର ଯାତ୍ରୀ ହୋଇ ଇହଲୀଳା ସମାପ୍ତ କଲେ ।

"କଂସ ବିଚରା ତ କଳୁଆଭୟରେ ଉଚ୍ଛନ୍ନ । ସେ ସବୁବେଳେ ଭାବୁଥିଲେ— 'ଶ୍ରୀକୃଷ୍ଣ ତାକୁ ଗୋଡ଼ାଉଛନ୍ତି । ହେଇ....ଶ୍ରୀକୃଷ୍ଣ ଆସିଗଲେ ....ମୋ' କାଳ.... ଆସିଗଲେ' । ତାର ଭାବନା ଅନୁସାରେ ପ୍ରଭୁ ତାକୁ ମଞ୍ଚ ଉପରୁ ଓଟାରି ଆଣି ତଳେ ଘୋଷାରି ଘୋଷାରି ମାରି ପକାଇଲେ ।

"ତା'ପରେ ଶ୍ରୀକୃଷ୍ଣ ବନ୍ଦୀଗୃହକୁ ଯାଇ ମାତାପିତାଙ୍କୁ ପଙ୍ଖୋଳି ଆଣିଲେ । ବୃନ୍ଦାବନର ଗୋପାଳ ପଲ୍ଲୀରେ ଚଟ୍ଟଶାଳୀ କୁଆଡ଼ୁ ଆସିବ ? ତେଣୁ ସେ ଆଦୌ ପାଠ ପଢ଼ି ନ ଥିଲେ । ଗାଈ ଚରାଇବା ଲୋକର ପାଠ ବା' କଣ ଦରକାର ? କିନ୍ତୁ ମଥୁରାରେ ଦେବକୀ ବସୁଦେବ ତାଙ୍କୁ ପାଠ ନ ପଢ଼ାଇ ମୂର୍ଖ କରନ୍ତେ କିପରି ? ତେଣୁ ଶ୍ରୀକୃଷ୍ଣ ଓ ବଳରାମ ଦୁଇଭାଇଙ୍କୁ, ବସୁଦେବ ସାନ୍ଦୀପନିଙ୍କ ଚଟ୍ଟଶାଳୀକୁ ପଢ଼ିବା ପାଇଁ ଛାଡ଼ିଦେଲେ ।

"ସେ ଦୁହିଁଙ୍କୁ ଦେଖିବା ମାତ୍ରେ ସାନ୍ଦୀପନି ବେଶ୍ ବୁଝି ପାରିଲେ ଯେ ସ୍ୱୟଂ ନାରାୟଣ ତାଙ୍କ ଶିଷ୍ୟତ୍ୱ ଗ୍ରହଣ କରିବାକୁ ଆସିଛନ୍ତି । ସ୍ୱୟଂ ପରମାତ୍ମାଙ୍କୁ କିଏ ଅବା ପାଠ ପଢ଼ାଇବ ? ଯେ ଜଗତର ବିଦ୍ୟାସ୍ୱରୂପୀ, ତାଙ୍କୁ ବିଦ୍ୟା ଅଭ୍ୟାସ କରାଇବାର ଦାୟିତ୍ୱ ଗ୍ରହଣ କଲେ ସାନ୍ଦୀପନି । ହଁ, ଗୁରୁ ହେବା ଲାଗି କାହାର ଲୋଭ ନ ଥାଏ

ଯେ ? ପ୍ରତ୍ୟେକ ଲୋକ ଗୃହେଁ, ତା'ର ଜଣେ ଶ୍ରେଷ୍ଠ ଶିଷ୍ୟ ହୁଅନ୍ତୁ କି ? ସେ ତା'ର ଆଦେଶ ମାନି ଚଳନ୍ତୁ । ସାନ୍ଦୀପନି ଥିଲେ ମହାଜ୍ଞାନୀ, ସ୍ୱୟଂ ନାରାୟଣ ମହାପ୍ରଭୁଙ୍କର ଗୁରୁ ହେବାର ଗୌରବକୁ ସେ ସହଜରେ ଗ୍ରହଣ କରିନେଲେ । ଯେ କୌଣସି ପାଠକୁ ଥରଟିଏ ମାତ୍ର କହିଦିଆଯାଏ କିମ୍ବା ପଢ଼ାଇ ଦିଆଯାଏ । ସେ ଅଳ୍ପ କେଇଦିନ ମଧ୍ୟରେ ଗୁରୁଙ୍କଠାରୁ ସମସ୍ତ ବିଦ୍ୟା ଅଧ୍ୟୟନ କରିସାରି, ତାଙ୍କୁ ଦକ୍ଷିଣା ଦେବାପାଇଁ ପ୍ରସ୍ତୁତ ହୋଇଗଲେ । ଶ୍ରୀକୃଷ୍ଣଙ୍କ ପ୍ରଶ୍ନ ଶୁଣି ସାନ୍ଦୀପନି ଅବାକ ହୋଇ ଶିଷ୍ୟଙ୍କ ମୁହଁକୁ ଚାହିଁ ରହିଲେ, ଅଷ୍ଟଐଶ୍ୱର୍ଯ୍ୟ, ନବନିଧି, ଧର୍ମାର୍ଥ-କାମମୋକ୍ଷ ଦାତାଙ୍କୁ ସେ ପୁଣି ମାଗିବେ କ'ଣ ? କିନ୍ତୁ ସାନ୍ଦୀପନିଙ୍କ ପତ୍ନୀ ମୃତ ପୁତ୍ରଙ୍କୁ ଫେରିପାଇବାପାଇଁ ଗୁରୁଦକ୍ଷିଣା ମାଗିଲେ । ପରମାତ୍ମାଙ୍କୁ ଅବା କେଉଁ କଥା ଅପୂର୍ବ ? ସେ ମୃତ ଗୁରୁପୁତ୍ରଙ୍କୁ ସଞ୍ଜୀବନୀ ପୁରରୁ ଆଣି ଗୁରୁପତ୍ନୀଙ୍କ ହାତରେ ଦେଇ ମଥୁରା ଫେରି ଆସିଲେ ।

"ପିଲାଦିନରୁ ଯାହାର ଯେଉଁ ଅଭ୍ୟାସ ହୋଇଯାଇଥାଏ, ସେ ତାହା ଛାଡ଼ିପାରେ ନାହିଁ । ସ୍ୱୟଂ ପ୍ରଭୁ ମାନବ ରୂପରେ ଲୀଳା ପ୍ରଦର୍ଶନ ଲାଗି ଜନ୍ମ ହୋଇଥିଲେ; ସେ ତାଙ୍କ ପିଲାଦିନର ଅଭ୍ୟାସ ଛାଡ଼ନ୍ତେ କିପରି ? ମଥୁରାରୁ ଗୋପପୁର, ପୁଣି ଗୋପରୁ ମଥୁରା ଯିବା ଆସିବା କରି ତାଙ୍କ ମନରେ ଶାନ୍ତି ଆସିଲା ନାହିଁ । ସେ ମଥୁରାରୁ ଦ୍ୱାରକା ଯାଇ, ସେଠାରେ ସମୁଦ୍ର ମଧ୍ୟସ୍ଥିତ ଦ୍ୱୀପରେ ଭାଇବନ୍ଧୁ ଓ କୁଟୁମ୍ବମାନଙ୍କ ସହିତ ମହାଆଡ଼ମ୍ବରରେ ବାସକଲେ ।

"ହେ ବିଦୁର, ଭଗବାନ୍‌ଙ୍କ ଲୀଳାରେ କୌଣସି କାରଣ ନଥାଏ । କାହିଁକି ସେ ଲୀଳା କରନ୍ତି, ତାହା ସେ ନିଜେ ଜାଣନ୍ତି ! ସେ ସ୍ୱୟଂ ସୁଖସ୍ୱରୂପ ହୋଇଥିବାରୁ, ତାଙ୍କର ପ୍ରତ୍ୟେକ ଲୀଳା ମାନବ ସମାଜର; ବିଶେଷତଃ ଭକ୍ତସମାଜର ସୁଖଦାୟୀ ।"

ସୂତ ମହର୍ଷି କହିଲେ—"ହେ ମୁନିଗଣ, ଉଦ୍ଧବ ବିଦୁରଙ୍କ ଆଗରେ ମଥୁରା ଲୀଳା କହିବା ପରେ, ଦ୍ୱାରକାଲୀଳା ଶୁଣାଇବାକୁ ପ୍ରସ୍ତୁତ ହେଲେ ।"

## ଛପ୍‌ପୟ

"ବିଦୁର, କୃପାବଶ କୃଷ୍ଣକରେଁ କ୍ରୀଡ଼ା ଜା ଜଗ ମହଁ
ଜହଁ ଜହ ସୁମରହି ଭକ୍ତ ହୋୟଂ ପରକଟ ପ୍ରଭୁ ତହଁ ॥
କହୁଁ ପତ୍ରବନ ପ୍ରେମ ସହିତ ପିତୁ ପଗକୁଁ ପୂଜେଂ
କହୁଁ ଧାରିକେ ଅସ୍ତ୍ର ଶସ୍ତ୍ର ଲେ ରଣ ମହଁ ଜୁଝେଂ ॥
ଜାକୀ ବାଣୀ ବେଦ ହୈ ସବୀ ଶାସ୍ତ୍ର ଉଚ୍ଛ୍ୱାସ ହୈ
ଜହଁ ପଢ଼ନ ଚଟସାରତେ ସବ ଭନକେ ପରିହାସ ହୈ ॥"

## ଦ୍ୱାରକାଲୀଳା

"କାଳମାଗଧ ଶାଲ୍ୱାଦୀନନୀ କୈ ରୁନ୍ଧତଃ ଗୁରମ୍
ଅଜୀଘନତ୍ ସ୍ୱୟଂ ଦିବ୍ୟଂ ସ୍ୱପୁଂସାଂ ତେଜ ଆଦିଶତ୍ ।।
ଶମ୍ବରଂ ଦ୍ୱିବିଦଂ ବାଣଂ ମୁରଂ ବଲ୍ୱଲମେବଚ
ଅନ୍ୟାଂଶ୍ଚ ଦନ୍ତବକ୍ରାଦୀନବଧୀତ୍ କାଂଶ୍ଚ ଘାତୟତ୍ ।।"

( ଭାଗବତ ୩ । ୩ । ୧୦/୧୧ )

### ଛପ୍ପୟ

"ମଥୁରାହୂତେଂ ଭଗେ ତରେ ଦ୍ୱାରବତୀ ଆୟେ
କରେ ନ କୋଇ ବ୍ୟାଧି ଦାବ ଅରୁ ପେଂଚ ଭିଡ଼ାୟେ ।।
କରେଯା ରାକ୍ଷସ ବ୍ୟାହ ଛୀନକେ କନ୍ୟା ଲୀନ୍ହୀ
ରୁକ୍ମୀ କ୍ରୋଧିତ ଭୟୋ ଦୁର୍ଦଶା ତା କୀ କୀନ୍ହୀ ।।
ବାଣାସୁର ଶମ୍ବର ଦ୍ୱିବିଦ ଦନ୍ତବକ୍ର ବଲ୍ୱଲ ଅସୁର
ମରଓ୍ୱାୟେ କନ୍ହ, ହରେଯା ଭାର ଭୂ ସୁରେଶ୍ୱର" ।।

ଅର୍ଥାତ୍—ଉଦ୍ଧବ କହୁଛନ୍ତି—"ହେ ବିଦୁର ! ମଥୁରାକୁ ଆସିବା ମାତ୍ରେ କାଳଯବନ, ଜରାସନ୍ଧ ଓ ଶାଲ୍ୱ ଆଦି ଦୁଷ୍ଟମାନେ ଯେତେବେଳେ ପ୍ରଭୁଙ୍କ ବିରୁଦ୍ଧରେ ଅଭିଯାନ କଲେ, ସେତେବେଳେ ସେ କେତେକ ରାକ୍ଷସଙ୍କୁ ନିଜେ ବଧ କଲେ ଏବଂ ଅନ୍ୟ କେତେକଙ୍କୁ ନିଜେ ଦିବ୍ୟତେଜ ପ୍ରଦାନ କରି ଭକ୍ତମାନଙ୍କ ହସ୍ତରେ ମରାଇଲେ । ଠିକ୍ ସେହିପରି ଶମ୍ବର, ଦ୍ୱିବିଦ, ବାଣାସୁର, ମୁର, ବଲ୍ୱଲ ଓ ଦନ୍ତବକ୍ର ଆଦି ଦୁଷ୍ଟଙ୍କୁ ସଂହାର କରି ପ୍ରଭୁ ପୃଥିବୀର ଭାର ହ୍ରାସ କଲେ ।

ଯାହାର ଜନ୍ମ ଯେଉଁ ମୁହୂର୍ତ୍ତରେ ହୋଇଥାଏ, ସେ କାଳବେଳର ଗତି ଅନୁସାରେ ସେହି ସ୍ୱଭାବ ପାଇଥାଏ । ଜନ୍ମର ଶୁଭାଶୁଭ ସେହି ମୁହୂର୍ତ୍ତରେ ହିଁ

ଜଣା ପଡ଼ିଯିବ । ପ୍ରଭୁ କୃଷ୍ଣପକ୍ଷରେ ଜନ୍ମ ହୋଇଥିଲେ; ତେଣୁ ଶରୀରର ରଙ୍ଗ ଶ୍ୟାମଳ । କଳଙ୍କରେ ଜନ୍ମ ହୋଇଥିବାରୁ ତାଙ୍କର ଆଚରଣ କେହି କିଛି ଜାଣି ପାରିଲେ ନାହିଁ । ଜନ୍ମକାଳରୁ ପଳାଇବା ମନୋବୃତ୍ତି ତାଙ୍କର ଥିବାରୁ, ଯେତେବେଳେ ଇଚ୍ଛା କଲେ, ଗୋଟିଏ ଥାନରୁ ଉଠିଯାଇ ଆଉ ଗୋଟିଏ ଥାନରେ ବସା ବାନ୍ଧିଲେ । ଦୋଳରେ ଝୁଲୁଇବାବେଳେ ପାପିନୀ ପୂତନାକୁ ବଧ କରି ଥିବାରୁ, ଜୀବବସାଧ୍ୟ କେବଳ ଦୁଷ୍ଟ ଦଳନରେ ଲାଗି ରହିଲେ ।

"ହେ ବନ୍ଧୁର ! ତୁମେ ପ୍ରଭୁଙ୍କ ସମ୍ବନ୍ଧରେ ଜାଣିବାକୁ ଚାହୁଁଛ ପଛେ; କିନ୍ତୁ ତାଙ୍କର ପ୍ରତ୍ୟେକ ଲୀଳା ବିଚିତ୍ର ! ଆମ ସମ୍ବନ୍ଧରେ ଯେପରି ଘଟଣା ଘଟିଥିଲେ ହୁଏତ, ଆମେମାନେ କହିବାକୁ ଲଜ୍ଜା ବୋଧ କରି ଥାଆନ୍ତେ । କିନ୍ତୁ ଯେ ମାନ, ଅପମାନ, ନିନ୍ଦା ଓ ଅପବାଦଠାରୁ ବହୁଦୂରରେ ସେ ତାହିଁକି ସେପରି କାର୍ଯ୍ୟ କର୍ମକୁ ଖାତିର କରିବେ ? ସେ ଆନନ୍ଦମୟ, ତେଣୁ ତାଙ୍କର ପ୍ରତ୍ୟେକ କାର୍ଯ୍ୟରେ ପୂରି ରହିଥାଏ ଆନନ୍ଦର ପ୍ରାଚୁର୍ଯ୍ୟ । ମଥୁରା ଛାଡ଼ି କାଳଯବନ ଓ ଜରାସନ୍ଧ ଭୟରେ ଯାଇ ଦ୍ୱାରକାରେ ରହିଲେ । ସେଠାରେ ପୁର ଓ ଦୁର୍ଗ ନିର୍ମାଣ କରି ରହିବା ପରେ, ପିତାମାତା ଶ୍ରୀକୃଷ୍ଣଙ୍କ ବିବାହ ପାଇଁ ଚିନ୍ତାକଲେ । ଯେତେବେଳେ ଭାଇ କୁଟୁମ୍ବମାନେ ସନ୍ଦେହ କଲେ; ଏଠାରେ ସ୍ଥାୟୀ ବାସିନ୍ଦା ହୋଇ ରହିବେ କି ନା ପୁଣି କେଉଁଠିକି ପଳାଇ ଯିବେ । ଏପରି ଅବସ୍ଥାରେ ତାଙ୍କୁ କନ୍ୟା ଦେବା ପାଇଁ କିଏ ରାଜି ହେବ ଯେ ?

"ହେ ବନ୍ଧୁର ! ପ୍ରକୃତରେ କ'ଣ ପ୍ରଭୁଙ୍କୁ କନ୍ୟା ଅଭାବ ଥିଲା କି ? ସେ କେବଳ ଲୀଳା ପ୍ରଦର୍ଶନ ଉଦ୍ଦେଶ୍ୟରେ ନିଜର ଅପ୍ରତିମ ପ୍ରତିଭା ତଥା ପ୍ରଭାବ ପ୍ରଦର୍ଶନ କରିଥିଲେ ମାତ୍ର । ସମସ୍ତଙ୍କ ଆଖି ଆଗରେ ମନ୍ଦିରରୁ ପୂଜାକରି ଫେରି ଆସୁଥିବା ରୁକ୍ମିଣୀଙ୍କୁ ରଥରେ ବସାଇ ଦ୍ୱାରକାକୁ ନେଇ ଆସିଲେ । ବିବାହ ପାଇଁ ଆସିଥିବା ବର ଶିଶୁପାଳ ନିଜର ଓଠ କାମୋଡ଼ି ମୁହଁରେ ଚୂନକାଳି ଲଗାଇ ଘରକୁ ଫେରିଗଲା । ସେ ତା'ପରେ ଗୋଟିକ ପରେ ଗୋଟିଏ, ଷୋଳ ହଜାର ଏକଶହ ଆଠଟି ବିବାହ କଲେ ।

"ନାଗ୍ନଜିତୀଙ୍କୁ ବିବାହ କରିବା ପାଇଁ ପ୍ରଭୁ ସତୋଟି ରୂପରେ ଅବତୀର୍ଣ୍ଣ ହୋଇ ସାତୋଟି ଦୁର୍ଦ୍ଦର୍ଷ ଷଣ୍ଢଙ୍କୁ ବାନ୍ଧି ପକାଇଲେ । ଏମିତି ଆହୁରି କେତେ କ'ଣ ଲୀଳା କରିଛନ୍ତି ପ୍ରଭୁ, ତା' କେତେ ଗୋଟି ଗୋଟି କରି ବଖାଣିବ ?

"ବନ୍ଧୁର ! ସତ୍ୟଭାମାଙ୍କୁ ଖୁସି କରିବାପାଇଁ ପ୍ରଭୁ ବଳପୂର୍ବକ କଳ୍ପବୃକ୍ଷକୁ ଉପାଡ଼ି ଆଣିଲେ । ଇନ୍ଦ୍ର ବିଚରା ସେହି ଅବସରରେ ମତିଭ୍ରଷ୍ଟ ହୋଇ ଯାଇ, ଯୁଦ୍ଧ ଆରମ୍ଭ କଲା; କିନ୍ତୁ ପ୍ରଭୁଙ୍କ ଆଗରେ ଇନ୍ଦ୍ରର ବଳ ଅବା କେତେ ? ସେ ଯୁଦ୍ଧରେ ହାରି ଲଜ୍ଜିତ ହୋଇ ପଳାଇଗଲା ।

"ପ୍ରଭୁ ଅଷ୍ଟ ପାଟରାଣୀଙ୍କୁ ବିଭିନ୍ନ ଉପାୟରେ ବିବାହ କଲେ; କିନ୍ତୁ ଭୌମାସୁରକୁ ମାରି, ସେ ବନ୍ଦୀ କରି ରଖିଥିବା ଷୋଳ ହଜାର ଏକଶହ କନ୍ୟାଙ୍କୁ ମଧ୍ୟ ପ୍ରଭୁ ଘରକୁ ନେଇ ଆସିଲେ । ଭୌମାସୁରର ପୁତ୍ର ଭଗଦତ୍ତଙ୍କୁ ରାଜ-ସିଂହାସନରେ ବସାଇ ପ୍ରଭୁ କନ୍ୟାମାନଙ୍କ ସହିତ ଦ୍ୱାରାବତୀ ଫେରି ଆସିଲେ । ପ୍ରତ୍ୟେକ ରାଣୀଙ୍କଠାରୁ ଦଶଟି ଲେଖାଏଁ ପୁତ୍ର ଜାତ ହୋଇଥିଲେ ।

"ବ୍ରଜପୁରରେ ଥିବା ସମୟରେ ସେ ଅନେକ ଅସୁରଙ୍କୁ ବାହୁ ବଳରେ ଜିଣିଥିଲେ; କିନ୍ତୁ ଦ୍ୱାରବତୀପୁରରେ ଦ୍ୱାରକାଧୀଶ ହୋଇ ରହିଥିବା ସମୟରେ କିମ୍ବ ଦୁଷ୍ଟଙ୍କୁ ବଧ କରିନାହାନ୍ତି । କାଳଯବନ, ଜରାସନ୍ଧ, ଶାଲ୍ୱ, ଶମ୍ବର, ବାଣାସୁର, ସୁର,ଦନ୍ତବକ୍ର, ଶକୁନି, ଦୁର୍ଯ୍ୟୋଧନ, ଦୁଃଶାସନ ଓ ତାଙ୍କର ଅନ୍ୟାନ୍ୟ ଦୁର୍ଦ୍ଦାନ୍ତ ଭାଇମାନଙ୍କୁ ବଧ କରାଇ ପୃଥିବୀର ଭାର ଲାଘବ କଲେ ।

"ବିଦୁର ! ମୁଁ ପ୍ରଥମରୁ କହିଛି ଯେ, ପ୍ରଭୁ କେବଳ ବସି ରହିବାପାଇଁ ମର୍ତ୍ତ୍ୟକୁ ଆସି ନ ଥିଲେ । ଯଦି କେବଳ ଘରବରେ ବସି ରହିବା ତାଙ୍କର କାମ ହୋଇଥାଆନ୍ତା, ତେବେ କ୍ଷୀର ସାଗରର ଶେଷ ଶଯ୍ୟା ସେ ଛାଡି ଆସିଥାନ୍ତେ କାହିଁକି ? ତା'ଠାରୁ ନିର୍ମଳ, ନିରୁପଦ୍ରବ ତଥା ଆନନ୍ଦମୟ ଧାମ କ'ଣ ଆଉ ଅଛି କି ? ସେ ଇଚ୍ଛାମୟ; ନିଜ ଇଚ୍ଛାରେ କାହାକୁ କେତେବେଳେ କ'ଣ କରନ୍ତି; ସେ' ହିଁ ଜାଣନ୍ତି । କେତେବେଳେ କାହାକୁ ବଢ଼ାଇ ଦିଅନ୍ତି ଏବଂ ପୁଣି କେତେବେଳେ କାହାକୁ ମୂଳରୁ ଛିଡ଼ାଇ ଦିଅନ୍ତି ।

"ଆପଣ ଜାଣନ୍ତି, ପାଣ୍ଡବଙ୍କ ଦୂତ ସାଜି ହସ୍ତିନାରେ ଯାଇ ପହଞ୍ଚିବା ମାତ୍ରେ, କୌରବମାନେ ଖୁବ୍ ଖାତିର କଲେ । ରହିବା ପାଇଁ ଖାଇବାପାଇଁ ସମସ୍ତ ବ୍ୟବସ୍ଥା କରିଯାଇ ଥିଲେ ମଧ୍ୟ ସେ କାହିଁକି ଅବା ସେଠାରେ ରହନ୍ତେ ? ସେ ବେଶ୍ ଜାଣିଥିଲେ; ମୋ' ଭକ୍ତର ଶତ୍ରୁ ମୋର ମଧ୍ୟ ଶତ୍ରୁ । କେବଳ ସେତିକରେ ସେ କୌରବମାନଙ୍କୁ ଛାଡ଼ିଲେ ନାହିଁ । ନିଜ ଭକ୍ତମାନଙ୍କ ହାତରେ ଦୁର୍ଯ୍ୟୋଧନକୁ ସବଂଶରେ ମରାଇ ଭକ୍ତର ମାନ ରକ୍ଷା କରିଥିଲେ । ସମସ୍ତେ ଭାବିଲେ, ଯା'ହେଉ ପୃଥିବୀର ଭାର ଲାଘବ ହୋଇଗଲା । ଦୁର୍ଦ୍ଦାନ୍ତ ବୀରମାନଙ୍କ ହାତରୁ ପୃଥିବୀ ରକ୍ଷା ପାଇଗଲା ।

"ତଥାପି କ'ଣ ସେ ବସି ରହିଲେ ? ବାହାରର ଦୁଷ୍ଟମାନଙ୍କୁ ନିପାତ କରିବା ପରେ, ଘର ଭିତରର ଦୁର୍ଦ୍ଦାନ୍ତମାନଙ୍କୁ ମଧ୍ୟ ଛାଡ଼ିଲେ ନାହିଁ । ସମସ୍ତଙ୍କୁ ମଦିରାପାନରେ ମତ୍ତ କରାଇ ଘରୁଆ ମଧ୍ୟରେ ସ୍ୱବଂଶକୁ ନିପାତ କରାଇଦେଲେ ।

"ବିଦୁର ! ତାଙ୍କ ନିକଟରେ ଆପଣା ପର କିଛି ହେଲେ ବାଛ ବିଚାର ନାହିଁ । ସେ ସ୍ନେହ କରନ୍ତି ସତ, କିନ୍ତୁ ମୋହ ତାଙ୍କ ମନକୁ ସ୍ପର୍ଶ କରିନାହିଁ ।

ଦୁଷ୍ଟଙ୍କୁ ଦମନ କରିବା ତାଙ୍କର ଧର୍ମ । ସେ ଭକ୍ତର ଅଧୀନ, ଭକ୍ତଡ଼ୋରେର ବନ୍ଧା । ସଂସାରରେ ଭକ୍ତମାନଙ୍କ ପାଳନ ପାଇଁ ଦୁଷ୍ଟଙ୍କୁ ସଂହାର କରିବା ତାଙ୍କର ଧର୍ମ ଓ କର୍ତ୍ତବ୍ୟ ।

"ସେ ସତ୍ୟସନ୍ଧ ତଥା ସଙ୍କଳ୍ପବଦ୍ଧ । ସେ ଯାଦବମାନଙ୍କ ବିନାଶ ଲାଗି ସଙ୍କଳ୍ପବଦ୍ଧ ହେବାମାତ୍ରେ, ସେମାନେ କ୍ଷୀଣାୟୁଷ ହୋଇଗଲେ । ବିନାଶକାଳ ଉପସ୍ଥିତ ହେବାରୁ, ସେମାନଙ୍କର ବୁଦ୍ଧି ବିପଥଗାମୀ ହୋଇଥିଲା । ଗୃହୁଁ ଗୃହୁଁ ସମସ୍ତେ ମରଣ ମୁହଁକୁ ଆଗେଇଗଲେ ।

"ଧର୍ମରାଜ ଯୁଧିଷ୍ଠିରଙ୍କୁ ରାଜା କରାଇ, ତାଙ୍କଦ୍ୱାରା ତିନୋଟି ଅଶ୍ୱମେଧ ଯଜ୍ଞ କରାଇନେଲେ । ତାଙ୍କ ବଂଶ ପରମ୍ପରାର ରକ୍ଷା ଲାଗି ଉତ୍ତରା ଗର୍ଭର ବାଳକକୁ ବ୍ରହ୍ମାସ୍ତ୍ରର ଉତ୍ତାଡ଼ରେ ତ୍ରାଣ କଲେ । ଶେଷକୁ ରହିଗଲେ ଯଦୁବଂଶ; ସେମାନଙ୍କୁ ଯେଉଁ ଉପାୟରେ ବଧକଲେ, ତାହା ବିଶଦଭାବରେ ମୁଁ ତୁମକୁ କହିବ ।"

## ଛପ୍ପୟ

"ହରି ସୋଚେଂ ଭୂଭାର ନ ଉତରେୟା ସବରେ ଅବହି
ଯଦୁକୁଳ କୋ ସଂହାର ହୋୟ ଉତରେଗୋ ତବହି ॥
ବହୁତ ବଢ଼େୟା ଯଦୁବଂଶ ଅଂଶ ମେରେ ହୈଂ ସବ୍ୟେ
ମଦମାତେ ହୈଁ, ଲଡ଼େଂ ପରସ୍ପର ନହିଁ ତବ୍ ୟେ ॥
ପ୍ରେମପ୍ରଦର୍ଶିତ କରେଥ୍ୟା ବହୁ ପୁନ ମରୱାୟେ ବନ୍ଧୁ ସବ
ଭାର ଉତାରେୟା ଅବନି କୋ ଗୱନ ହରି ଗୋଲକ ତବ ॥



# ଯଦୁବଂଶ ନାଶ

"ପୁର୍ଯ୍ୟାଂ କଦାଚିତ୍ କ୍ରୀଡ଼ଦ୍ଭି ର୍ଯଦୁଭୋଜ କୁମାରକୈଃ
କୋପିତା ମୁନୟଃ ଶେପୁ ର୍ଭଗବନ୍ମତ କୋବିଦାଃ ॥"

(ଭାଗବତ ୩।୩।୨୪)

## ଛପ୍ପୟ

"ଜାତେ ଜବ ନେ ଶ୍ୟାମ କଲ୍ପହେଁ ଜହାଁ ନୋ ଜୈସେ
ସୋ ତବ ତୁରତ ହ୍ୱ ତହାଁ । କରେ ପ୍ରେରିତ ହ୍ୱୈ ତୈସେ ॥
ଯଦୁକୁଲ କୋ ସଂହାର କରନ ଜିତମହାଁ ଜବ ଆୟୋ ।
ତବହି ତପତେ ପୂତ ମୁନିନି ତେ ଶାପ ଦୱାୟୋ ॥
ଜୈଁସା ବାଜୀଗର ବାନର ହାଁ, ନାଚ ନଚାଵେ ଜବ ଜହାଁ
ତୈଁସା ଇ ଈଶ ଅଧୀନ ହ୍ୱୈ ଜୀବ ନଚେ ସ୍ୱହ ସ୍ୱବଶ ନହାଁ ॥"

ଅର୍ଥାତ୍—ଉଦ୍ଧବ କହୁଛନ୍ତି—"ହେ ବିଦୁର ! ଏକଦା ଯଦୁବଂଶୀ ଓ ଭୋଜବଂଶୀ ବାଳକମାନେ ଖେଳୁଥିଲେ । ଖେଳିବାବେଳେ ସେମାନେ ନିଜ ନିଜର ଅଶିଷ୍ଟ ବ୍ୟବହାରରେ ମୁନିମାନଙ୍କୁ କ୍ରୋଧିତ କରାଇଦେଲେ । ମୁନିମାନେ ପ୍ରଭୁଙ୍କ ଉଦ୍ଦେଶ୍ୟ ଜାଣିଥିଲେ । ତେଣୁ ସେମାନେ ଯଦୁବଂଶର ନାଶ ଲାଗି ଅଭିଶାପ ପ୍ରଦାନ କଲେ ।

ବର୍ଷାଜଳ ଦିନେ ନା ଦିନେ ସମୁଦ୍ରରେ ପଡ଼ିବ । ଯଦି ଦୈବାତ୍ ପ୍ରଖର ସୂର୍ଯ୍ୟତାପରେ ଶୁଖିଯାଏ, ତେବେ ବାଷ୍ପ ହୋଇ ଦିନେ ନା ଦିନେ ସମୁଦ୍ରରେ ବର୍ଷିଯିବ । ସମୁଦ୍ରରେ ବର୍ଷା ହେଲେ ତାହା ଶୀଘ୍ର ମହୋଦଧିରେ ମିଶିଯାଏ । ମହାନଦୀର ଜଳ ମଧ୍ୟ ସାମାନ୍ୟ ବିଳମ୍ବରେ ସମୁଦ୍ର ସହିତ ମିଶିଯାଏ । ଶ୍ରେଷ୍ଠ ଶ୍ରେଷ୍ଠ ନଦୀ, ପୁଷ୍କରିଣୀ ଓ ମରୁନଦୀର ଜଳ ବିଳମ୍ବରେ ହେଲେ ମଧ୍ୟ ସମୁଦ୍ରରେ ମିଶେଥାଏ । ସେହିପରି ଭବରେ ପ୍ରତ୍ୟେକ ପ୍ରାଣୀଙ୍କୁ ପରମାତ୍ମା ଶୀଘ୍ର କିମ୍ବା ବିଳମ୍ବରେ ମୁକ୍ତ

ପ୍ରଦାନ କରନ୍ତି । କେତେବେଳେ ତାହା କାର୍ଯ୍ୟରେ କୃପାନାଥ ପରିପୁଷ୍ଟ ହୁଅନ୍ତି, ତାହା ସେ ହିଁ ଜାଣନ୍ତି । ମହାମୂର୍ଖ ଗଜ ଥରେ ମାତ୍ର 'ହରି' ବୋଲି ସ୍ମରଣ କରି ମୁକ୍ତ ହୋଇଥିଲା । ଗୃଧ୍ର ସାରା ଜୀବନ ଜୀବହିଂସା କରି ମଧ୍ୟ ଦୂର୍ବାଦଳ ଶ୍ୟାମ ରଘୁନାଥଙ୍କ କରସ୍ପର୍ଶରେ ମୁକ୍ତିଲାଭ କଲା; କିନ୍ତୁ ଶ୍ରୀକୃଷ୍ଣଙ୍କର ଷୋଳ ହଜାର ରାଣୀ ସର୍ବଦା ପ୍ରଭୁଙ୍କ ଅଙ୍ଗସଙ୍ଗ, ହାସ ପରିହାସ, ବିନୋଦ କ୍ରୀଡ଼ାଦି ଲାଭ କରୁଥିଲେ ହେଁ ନିର୍ଜନ ବନରେ ବନ୍ୟ ଆଭୀରମାନଙ୍କ ହସ୍ତରେ ଅପହୃତା ହେଲେ । ଗୋପୀମାନେ ବାଲ୍ୟକାଳରୁ ଶ୍ରୀକୃଷ୍ଣଙ୍କୁ ନିଜ ନିଜର ସ୍ନେହ ଡୋରିରେ ବାନ୍ଧିରଖି ମନେ ମନେ ଅଭିମାନିନୀ ହୋଇ ଉଠିଲେ । ସେମାନେ ଭାବିଥିଲେ ମନମୋହନ ଆମକୁ ଛାଡ଼ି ଅନ୍ୟ କେଉଁଆଡ଼େ ଯିବେନାହିଁ; କିନ୍ତୁ ପ୍ରଭୁ ସେମାନଙ୍କ ଗର୍ବ ଚୂର୍ଣ୍ଣ କରିଦେଇ ହଠାତ୍ ଦିନେ ମଥୁରାକୁ ପଳାଇ ଆସିଲେ । ଯାଦବମାନେ ମଧ୍ୟ ପ୍ରଭୁଙ୍କ ପ୍ରକୃତ ସ୍ୱରୂପକୁ ନ ଚିହ୍ନି, ମୋହରେ ବଶୀଭୂତ ହେଲେ । ତେଣୁ ସେମାନେ ମଧ୍ୟ ପ୍ରଭୁଙ୍କ ମାୟାରେ ବନ୍ଦୀ ହୋଇ ରହିଲେ ।

"ବିଦୁର ! ଶ୍ରୀକୃଷ୍ଣ ଦ୍ୱାରକାରେ ଦେହ ବେଦବିହିତ ମାର୍ଗ ଅନୁସରଣ କରୁଥିଲେ । ଲୋକ ବ୍ୟବହାରରେ ନିପୁଣ ପ୍ରଭୁଙ୍କ କାର୍ଯ୍ୟାବଳୀ ସାଧାରଣ ଧରଣର ହୋଇଥିବା ପରି ମନେ ହେଉଥିଲା; କିନ୍ତୁ ବିଦୁର ! ପ୍ରଭୁ ଏସବୁ ଲୀଳା ଉଦ୍ଦେଶ୍ୟରେ କରୁଥିଲେ ମାତ୍ର; ତାଙ୍କର କୌଣସି କାର୍ଯ୍ୟରେ ଆସକ୍ତି ନ ଥିଲା । ସେ ବହୁଦିନ ପର୍ଯ୍ୟନ୍ତ ଦ୍ୱାରକାରେ ଦିବ୍ୟ ଭୋଗ ବିଳାସରେ ମାତିଥିଲେ । ସମସ୍ତ ପ୍ରକାର ସାଂସାରିକ ଆଚାର ବିଚାର ପୂର୍ଣ୍ଣ କାର୍ଯ୍ୟ କରି ଚାଲିଥିଲେ । ଏହା ସବୁ କରୁଥିଲେ ମଧ୍ୟ ହଠାତ୍ ଦିନେ ସେଥିପ୍ରତି ତାଙ୍କର ବିରାଗ ଜାତ ହୋଇଥିଲା ।

"ବିଦୁର, ସେ କେବେହେଲେ କୌଣସି କାର୍ଯ୍ୟ ପ୍ରତି ଅନୁରାଗ ପ୍ରଦର୍ଶନ କରି ନ ଥିଲେ । ତେଣୁ ତାଙ୍କ ମନରେ ଅନୁରାଗ ଅବା ଜାତ ହୁଅନ୍ତା କେଉଁଠୁ ? କେବଳ ତୁମେ ପଚାରୁ ଥିବାରୁ ମୁଁ ସେ ସମ୍ବନ୍ଧରେ କହୁଛି ମାତ୍ର । ତାଙ୍କର ଏହି କାର୍ଯ୍ୟାବଳୀ ଲୋକଶିକ୍ଷା ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ । ତାଙ୍କର କାର୍ଯ୍ୟାବଳୀରୁ ଲୋକମାନେ କିଛି ଶିକ୍ଷା ଗ୍ରହଣ କରନ୍ତୁ, ଏହା ହିଁ ଥିଲା ତାଙ୍କର ମନୋଭାବ ।

"ନିଜହାତରେ ଲଗା ଯାଇଥିବା ବିଷ ବୃକ୍ଷଟିକୁ ମଧ୍ୟ ଲୋକେ କାଟନ୍ତି ନାହିଁ । ଦୟାଳୁ ଲୋକମାନେ ସର୍ପ, ବିଛା ପ୍ରଭୃତି ବିଷାକ୍ତ ଜୀବମାନଙ୍କୁ ମଧ୍ୟ ବଧ କରନ୍ତି ନାହିଁ । ତଥାପି ପ୍ରଭୁ କିପରି ନିଜହାତରେ ପରିପାଳିତ ଯାଦବମାନଙ୍କୁ ବଧ କଲେ, ତାହାର ରହସ୍ୟ କେହି ବୁଝିପାରି ନାହାନ୍ତି । ସେ ବ୍ରାହ୍ମଣ ମୁନିମାନଙ୍କୁ ଆଗୁଧ କରି, ଏଡ଼େ ବଡ଼ ବଂଶଟାକୁ ପ୍ରଭୁ ଘଡ଼ିକେ ବିନାଶ କରାଇଦେଲେ ! ମୁନିମାନଙ୍କ ଶାପମୁକ୍ତ ହେବା ଲାଗି ଯାଦବମାନେ ବହୁ ଚେଷ୍ଟା କରିଥିଲେ; କିନ୍ତୁ ପ୍ରକୃତରେ ଦେଖିବାକୁ ଗଲେ, ମୁନିମାନେ କ'ଣ ଅଭିଶାପ ଦେଇଥିଲେ କି ?

ସେମାନଙ୍କର କ'ଣ ବା ସାଧ ଥିଲା ଯେ, ଯଦୁବଂଶର ବିନାଶ ପାଇଁ ସେମାନେ ଶାପ ଦେବାକୁ ସାହସ କରନ୍ତେ ? ସେମାନେ ଥିଲେ ପ୍ରଭୁଙ୍କ ପ୍ରେରଣାର ଯନ୍ତ୍ର । ପ୍ରଭୁ ଯାହା ଇଚ୍ଛା କରୁଥିଲେ, ସେମାନେ ତାକୁ କାର୍ଯ୍ୟରେ ପରିଣତ କରୁଥିଲେ । ଯାଦବମାନେ ଲୌହ ପାଉଁଶକୁ ଘଷି ନିଃଶେଷ କରି ଦେଇ ଥିବାରୁ, ମନେ ମନେ ଭାବିଲେ, ମୁନିମାନଙ୍କ ଶାପ ଆମର ଆଉ କିଛି ଅନିଷ୍ଟ କରିପାରିବ ନାହିଁ । ତେଣୁ ସେମାନେ ନିଶ୍ଚିନ୍ତ ହୋଇ ଭ୍ରମଣ କରିବାକୁ ଲାଗିଲେ; କିନ୍ତୁ କାଳ ଠିକ୍ ଅବସରର ସନ୍ଧାନରେ ଲୁଚି ରହିଥିଲା । ସମୟର ରଥ ଖରବେଗରେ ଗଡି ଚାଲିଲେ । ତା'ର ଗତିରୋଧ କରିବା ସ୍ୱୟଂ ଚକ୍ରଧାରୀ ମଧ୍ୟ ସମ୍ଭାବ୍ୟ ନାହିଁ । ଠିକ୍ ସମୟ ଆସି ଯିବାରୁ, ଯାଦବମାନେ ପୁଣ୍ୟାର୍ଜନ କାମନାରେ ପ୍ରଭାସ କ୍ଷେତ୍ରକୁ ଗମନ କଲେ । ସେଠାରେ ସ୍ନାନ ଶେଷ କରି ବ୍ରାହ୍ମଣ ଓ ଋଷିମାନଙ୍କୁ ସର୍ବସ୍ୱ ଦାନ କଲେ । ଦେବ, ବ୍ରାହ୍ମଣ, ପିତୃ, ଗୋ ଆଦି ସମସ୍ତ ପୂଜ୍ୟମାନଙ୍କୁ ସନ୍ତୁଷ୍ଟ କରିବା ପରେ, ସେମାନେ ବ୍ରାହ୍ମଣଙ୍କଠାରୁ ଆଜ୍ଞା ନେଇ ଭୋଜନ କଲେ; କିନ୍ତୁ ବିଦୁର ! ତାହା ହିଁ ଥିଲା ସେମାନଙ୍କର ଅନ୍ତିମ ଭୋଜନ । କାଳର ଗଣନା ଶେଷ ହୋଇଆସିଲା । ଭୋଜନ ପରେ ସେମାନେ ବାରୁଣୀପାନ କଲେ, ବାରୁଣୀପାନ ପରେ ସେମାନେ ଉନ୍ମତ୍ତ ହୋଇ ଉଠିଲେ । ଉନ୍ମତ୍ତତାବଶତଃ ସେମାନେ ସଂପୂର୍ଣ୍ଣ ଭାବରେ ବିବେକ ହରାଇ ବସିଲେ । ପରସ୍ପରକୁ ବିନା କାରଣରେ କଟୁବାକ୍ୟ କହିବାକୁ ଲାଗିଲେ । ସେହି କୁବାକ୍ୟ ପ୍ରୟୋଗରୂପକ ଅଗ୍ନି କଣିକାରୁ ଦାବାନଳ ସୃଷ୍ଟି ହେବାକୁ ଲାଗିଲା । ତା'ପରେ ଚାଲିଲା ଭୀଷଣ ନରସଂହାର । ପରସ୍ପର ମଧ୍ୟରେ ହଣାହଣି ହୋଇ ସୂର୍ଯ୍ୟାସ୍ତ ସୁଦ୍ଧା ସମସ୍ତେ ସ୍ୱାହା ହୋଇଗଲେ । ଶ୍ରୀକୃଷ୍ଣଙ୍କ ଲୀଳାର ଏହି ଦୃଶ୍ୟଟି ଅତ୍ୟନ୍ତ ହୃଦୟବିଦାରକ ତଥା କରୁଣାପୂର୍ଣ୍ଣ । ସମସ୍ତଙ୍କୁ ସଂହାର କରିବା ପରେ, ପ୍ରଭୁ ସୁସ୍ଥ ଚିତ୍ତରେ ଗୋଟିଏ ଅଶ୍ୱତ୍ଥବୃକ୍ଷ ମୂଳରେ ବସି ପଡ଼ିଲେ । ସେ ସ୍ୱଧାମକୁ ଶୀଘ୍ର ଫେରିଯିବାକୁ ମନେ ମନେ ବିଚାର କରୁଥିଲେ । ଠିକ୍ ସେହି ସମୟରେ ମୁଁ ଯାଇ ସେଠାରେ ପହଞ୍ଚିଗଲି ।''

ସେତିକିବେଳେ ବିଦୁର ଉଦ୍ଧବଙ୍କ କଥାରେ ବାଧା ଦେଇ କହିଲେ—''ମହାଭାଗ, ଆପଣ ସେଠାରେ ହଠାତ୍ କିପରି ପହଞ୍ଚିଲେ ? ଆପଣ ଅନ୍ୟାନ୍ୟ ଯଦୁବୀରମାନଙ୍କ ସହିତ ପ୍ରଭାସ କ୍ଷେତ୍ରକୁ ଯାଇଥିଲେ କି ? ତା'ହେଲେ କ'ଣ ଆପଣ ସେଠାକାର ଯୁଦ୍ଧରେ ଅଂଶ ଗ୍ରହଣ କରି ନ ଥିଲେ ?''

ବିଦୁରଙ୍କ ପ୍ରଶ୍ନ ଶୁଣି କହିଲେ ଉଦ୍ଧବ—''ମହାଶୟ, ଏହି ଘଟଣାର କିଛିଦିନ ପୂର୍ବରୁ ମୋତେ ଦିନେ ଏକାନ୍ତରେ ବସାଇ କହିଥିଲେ ପ୍ରଭୁ—'' ମୋର ଇହଲୀଳା ଶେଷ ହେବାକୁ ବସିଲାଣି; କିନ୍ତୁ ତୁମେ ଆଉ କିଛିଦିନ ଏଠାରେ ରହ;

ନୋହିଁ ମୋର ଇଚ୍ଛା । ବନ୍ଧୁର, ମୁଁ କେବେହେଲେ ପ୍ରଭୁଙ୍କ ଆଜ୍ଞା ଅବଜ୍ଞା କରିନାହିଁ । ସେ ମୋତେ ଦ୍ୱାରକା ତ୍ୟାଗକରି ବଦରିକା ଯିବା ଲାଗି ଆଦେଶ ଦେବାରୁ, ମୁଁ ବିଶାଳପୁରୀ ଉଦ୍ଦେଶ୍ୟରେ ଯାତ୍ରା ଆରମ୍ଭ କରିଦେଲି; କିନ୍ତୁ ଦ୍ୱାରକାରୁ ମୋ ପାଦ ଆଦୌ ଚାଲିଲା ନାହିଁ । ମୁଁ ଯେତେ ଚେଷ୍ଟାକଲେ ମଧ୍ୟ ଆଗକୁ ଅଗ୍ରସର ହୋଇ ପାରିଲି ନାହିଁ । ଯେତେ ଯେପରି ମନେ ହେଲା, ମୋ'ସହିତ ଦ୍ୱାରକାପୁରୀ ମଧ୍ୟ ବଦରିକା ଉଦ୍ଦେଶ୍ୟରେ ଅଗ୍ରସର ହେଉଛି ! ଏତିକିବେଳେ ମୁଁ ଲକ୍ଷ୍ୟ କଲି, ପ୍ରଭୁ ଶ୍ରୀକୃଷ୍ଣ ନିଜ ରଥରେ ବସି ପ୍ରଭାସକ୍ଷେତ୍ର ଅଭିମୁଖେ ଯାତ୍ରା ଆରମ୍ଭ କରିଛନ୍ତି । ମୁଁ ଗୋଟିଏ ବୃକ୍ଷ ଉହାଡ଼ରେ ରହି ତାଙ୍କ ଯାନାକୁ ଲକ୍ଷ୍ୟ କଲି । ଅନ୍ତର୍ଯ୍ୟାମୀନାଥ ମୋତେ ଦେଖିଥିବେ ନିଶ୍ଚୟ । ଯେଉଁ ପ୍ରଭୁ ଜଗତର ଚକ୍ଷୁ ସ୍ୱରୂପ, ସେ କି ଦେଖନ୍ତେ ଅବା କିପରି ? ତଥାପି ସେ ମୋ' ଆଡ଼କୁ ଦୃଷ୍ଟି ନ ଦେଇ, ପ୍ରଭାସ ଅଭିମୁଖେ ଆଗେଇଗଲେ । ରଥ ଖୁବ୍ ବେଗରେ ଛୁଟିଗଲା । ମୁଁ କିନ୍ତୁ ପ୍ରଭୁଙ୍କ ପଥ ଅନୁସରଣ କରି ପ୍ରଭାସ ଆଡ଼କୁ ଆଗେଇଗଲି; କିନ୍ତୁ ବନ୍ଧୁର ! ମୁଁ ପ୍ରଭାସ କ୍ଷେତ୍ରରେ ପହଞ୍ଚିବା ବେଳକୁ ସବୁ କିଛି ସ୍ୱାହା ହୋଇ ସାରିଥିଲା । ମୁଁ ଭାବିଲି, ସେହି ସଂହାରଣ ଲୀଳା ମଧ୍ୟରେ ପ୍ରଭୁ ନିଜକୁ ଧ୍ୱଂସର ଲେଲିହାନ ଶିଖା ମଧ୍ୟକୁ ପକାଇ ଦେଇଛନ୍ତି । ତେଣୁ ମୁଁ ପାଗଳଙ୍କ ପରି ଏଣେତେଣେ ଧାଇଁ, ପ୍ରଭୁଙ୍କୁ ଖୋଜିବାକୁ ଲାଗିଲି । ସେ ସମୟରେ ମୋ' ମନର ଅବସ୍ଥା ମୁଁ କ'ଣ ବର୍ଣ୍ଣନା କରିବି ବନ୍ଧୁର ? ଜଳରୁ ବାହାର ମୀନ ଛଟପଟ ହେଲାପରି, ମୁଁ ବ୍ୟାକୁଳତାର ସହିତ ଯୂଥହରା ହରିଣୀ ପରି କାତର ଭାବରେ ଧାଇଁବାକୁ ଲାଗିଲି । ସେହି ଧ୍ୱଂସଲୀଳା ଘଟିଥିବା ସ୍ଥାନରେ ମୁଁ ପ୍ରଦ୍ୟୁମ୍ନ, ଶାମ୍ବ, ଅନିରୁଦ୍ଧ ପ୍ରଭୃତିଙ୍କ କ୍ଷତବିକ୍ଷତ ଶବ ଦେଖି ଆହୁରି ଅଧିକ ବ୍ୟଗ୍ର ହୋଇ ଉଠିଲି । ମୁଁ ଆକୁଳ ହୋଇ ଖୋଜୁଥାଏ ପ୍ରଭୁଙ୍କର ପାର୍ଥିବ ଶରୀରଟିକୁ । ଖୋଜି ଖୋଜି ମୁଁ ନିରାଶ ହୋଇ ପଡ଼ିଲି । ଶେଷକୁ ମୁଁ ଆଉ ନିଜକୁ ସମ୍ଭାଳି ପାରିଲି ନାହିଁ । ମୁଁ ବିଶ୍ୱବନ୍ଦ୍ୟ ପ୍ରଭୁଙ୍କ ଶରୀରକୁ ନ ପାଇ ଉଚ୍ଚସ୍ୱରରେ କାନ୍ଦିବାକୁ ଲାଗିଲି । କାନ୍ଦିକାନ୍ଦି ମୁଁ ସେଇଠି ମୂର୍ଚ୍ଛିତ ହୋଇ ତଳି ପଡ଼ିଲି ।"

ଶ୍ରୀଶୁକ ଦେବ କହିଲେ—"ମୁନିବୃନ୍ଦ, ପରମ ଭାଗବତ ଉଦ୍ଧବ ଶ୍ରୀକୃଷ୍ଣଙ୍କ ସମ୍ବନ୍ଧରେ କହୁଁ କହୁଁ ପ୍ରକୃତରେ ସେହିଠାରେ ମୂର୍ଚ୍ଛିତ ହୋଇଗଲେ । ତାଙ୍କର ବାହ୍ୟଜ୍ଞାନ ଲୁପ୍ତ ହୋଇଗଲା ।"

## ଛପ୍‌ପୟ୍

"ଦ୍ୱାର୍‌କାବତୀ ମହିଁ କୃଷ୍ଣ ଦରଶ ହିତ ମୁନିଗନ ଆୟେ
କଚରୈଯା ହାସ ପରିହାସ କୁମାରନ ବହୁତ ଖିଜାୟେ ।।
କୁପିତ ତପୋଧନ ଭୟେ ଶାପ କୁଲ ଭର କୋ ଦୀହ୍ନୋଂ
ସୁନେୟା ଶ୍ୟାମ ସବଶାପ ସମର୍ଥଂନ ହୁଁ ସିକେଂ କୀହ୍ନୋ ।।
ସବ ମିଲ ଗୟେ ପ୍ରଭାସ ମହଁ, ଭୟୋ ପରସ୍ପର ଯୁଦ୍ଧ ଅତି
ବଂଶ ଅଗ୍ନି କଲି ତେଂ ଜରେ, ହରି ପ୍ରେରିତ ଅସ ଭଈ ମତି ।।"



# ଭଗବାନଙ୍କ ଉପଦେଶ

ପୁରାମୟା ପ୍ରୋକ୍ତମଜାୟ ନାଭ୍ୟେ
ପଦ୍ମେ ନିଷଣ୍ଣାୟ ମମାଦି ସର୍ଗେ ॥
ଜ୍ଞାନଂ ପରଂ ମନ୍ମହିମାବଭାସମ୍
ଯତ୍ ସୂରୟୋ ଭାଗବତଂ ବଦନ୍ତି ॥

( ଭାଗବତ ୩ । ୪ । ୧୩ )

## ଛପ୍ପୟ

ମୋତୋଂ ହରିନେ କହ୍ୟୋ ଜାହୁ ବଦରୀବନ ଉଧୋ
ଜନ୍ମୁଦୈବଗତ ସମୁଝି ଚଲେଉଁ ହରି ପୀଛେ ସୂଧୋ ॥
ଯଦୁକୁଲକୋ ସଂହାର କରହୁଁଗୋ ହରି ପୀପର ତରୁତର
' ବୈଠେ ହୈଂ ଢିଙ୍ଗ ବହୁଁଚ ବୋଲେ ଶ୍ରୀ ଯଦୁବର ॥
ଭଲେ ମିଲେ ଉଦ୍ଧବ ସଖେ ଆ - ୟୁ ନୁମ ହୋ ବିମଲ ମତ
କହୁଁ ଭାଗବତ ପରମ ଅତ ସୁନେଂ ପଢ଼େଂ ହୋଁ ଓ ସୁଗତ ॥"

ଅର୍ଥାତ୍—ଉଦ୍ଧବ କହୁଛନ୍ତି "ହେ ବିଦୁର, ମୁଁ ଯେତେବେଳେ ଭଗବାନଙ୍କ ନିକଟରେ ପହଞ୍ଚିଲି, ସେ ମୋତେ କହିଲେ—ଉଦ୍ଧବ, ମୁଁ ତୁମକୁ ପରମ ଜ୍ଞାନ ଉପଦେଶ ଦେଉଛି । ଯେଉଁ ଉପଦେଶ ମୁଁ ପାଦକଳ୍ପର ପ୍ରାରମ୍ଭରେ ମୋ ନାଭି କମଳରେ ବସିଥିବା ବ୍ରହ୍ମାଙ୍କୁ ଦେଇଥିଲି । ଏହା ଶ୍ରେଷ୍ଠ ଜ୍ଞାନ ଉପଦେଶ ଅଟେ ; ବୁଦ୍ଧିମାନ୍ ଲୋକମାନେ ତାହାକୁ ଭାଗବତ ବୋଲି କହିଥାନ୍ତି ।

କେବେ କେବେ ଗୁରୁଜନମାନେ କର୍ତ୍ତବ୍ୟର ତାଡ଼ନାରେ ଆମକୁ କେତେକ ଗୁରୁତ୍ୱପୂର୍ଣ୍ଣ ଆଦେଶ ଦେଇଥାନ୍ତି । ଆମେମାନେ ତାଙ୍କ ଚରଣ କମଳରୁ ପୃଥକ୍ ହେବା ଭୟରେ ସେହି ଉପଦେଶକୁ ପାଳନ କରୁ ନ ଥାଉଁ । ଅବଶ୍ୟ ସେ

ଉପଦେଶର ଉଚିତ ଅନୁଚିତ ରହସ୍ୟକୁ ବିଚାର ନ କରି ପାଳନ କରାଯିବା ଆବଶ୍ୟକ; କିନ୍ତୁ ସ୍ନେହର ବଶବର୍ତ୍ତୀ ହୋଇ ଆମେମାନେ ବେଳେବେଳେ ତାହା ପାଳନ କରିବାରେ ଅବହେଳା ପ୍ରଦର୍ଶନ କଲେ, ଗୁରୁଜନମାନେ ତାହାକୁ ଅପରାଧ ବୋଲି ଗ୍ରହଣ କରନ୍ତି ନାହିଁ ।

ଯଦୁକୁଳର ବିନାଶ ସମୟ ଉପସ୍ଥିତ ହୁଅନ୍ତେ, ଶ୍ରୀକୃଷ୍ଣ ଉଦ୍ଧବଙ୍କୁ ବଦରିକା ବନକୁ ଚାଲିଯିବା ପାଇଁ ଉପଦେଶ ଦେଇଥିଲେ । ଉଦ୍ଧବ ସେଠାରେ ରହି ପ୍ରଭୁଙ୍କୁ ଧ୍ୟାନ କଲେ, ସେ ତାଙ୍କର ହୃଦୟ ମଧ୍ୟରେ ବାସ କରିବେ । ଉଦ୍ଧବ ପ୍ରଭୁଙ୍କ ଆଦେଶ ମାନି ସେଠାରୁ ଚାଲିଗଲେ ସତ; କିନ୍ତୁ ଆଗକୁ ଯିବାପାଇଁ ତାଙ୍କ ପାଦ ଚାଲିଲା ନାହିଁ । ଭଗବାନ ଯାଦବମାନଙ୍କୁ ନେଇ ପ୍ରଭାସକ୍ଷେତ୍ରକୁ ଯାତ୍ରାକରିବା ମାତ୍ରେ ନିଜର ଅନ୍ତଃକରଣରେ ଉଦ୍ଧବ ତାଙ୍କ ପଛ ପଛ ପ୍ରଭାସତୀର୍ଥକୁ ଯାତ୍ରା କଲେ । ଉଦ୍ଧବ ସେଠାରେ ପହଞ୍ଚିବାବେଳକୁ ଯଦୁବଂଶ ଧ୍ୱଂସ ହୋଇ ସାରିଥିଲା । ସେ ବାତୁଳଙ୍କ ପରି କିପରି ଭଗବାନଙ୍କୁ ସେଠାରେ ଖୋଜିଥିଲେ, ସେହି ପ୍ରସଙ୍ଗରେ ଉଦ୍ଧବ ବିଦୁରଙ୍କୁ କହୁଛନ୍ତି ।

ଉଦ୍ଧବ ଆଲୋଚନା ଆରମ୍ଭ କରି କହିଲେ—"ହେ ବିଦୁର ! ମୁଁ ମୃତ ବ୍ୟକ୍ତିମାନଙ୍କ ମଧ୍ୟରେ ମୋର ଆରାଧ୍ୟଙ୍କୁ ନ ପାଇ କାନ୍ଦି କାନ୍ଦି ସରସ୍ୱତୀ ନଦୀର କୂଳେ କୂଳେ ଚାଲିବାକୁ ଲାଗିଲି । ଦୂରରୁ ତୁଳସୀ ମଞ୍ଜରୀର ସୁଗନ୍ଧ ଭାସି ଆସୁଥିବାର ମୁଁ ଅନୁଭବ କଲି । ତହୁଁ ମୁଁ ମନେ ମନେ ଆନନ୍ଦିତ ହୋଇ ସେହି ସୁଗନ୍ଧର ଅନୁସରଣ କରି ଧାଇଁବାକୁ ଲାଗିଲି । କାରଣ ମୁଁ ବେଶ୍ ଜାଣି ପାରିଲି ଯେ, ତାହା ପ୍ରଭୁଙ୍କ ବନମାଳାରେ ଗୁନ୍ଥା ହୋଇଥିବା ତୁଳସୀର ସୁଗନ୍ଧ । ମୁଁ ସେହି ତୁଳସୀଦଳକୁ ପ୍ରତିଦିନ ପ୍ରସାଦ ରୂପରେ ପାଇ ଜୀବନକୁ ଧନ୍ୟ ମନେ କରୁଥିଲି । ପ୍ରଭୁ ମେହିଠାରେ କେଉଁଠି ଅଛନ୍ତି ବୋଲି ମନେକରି, ମୁଁ ଚାରିଆଡ଼କୁ ଲକ୍ଷ୍ୟ କଲି । ହଠାତ୍ ଦୂରରେ ଥିବା ଗୋଟିଏ ସଘନ ଅଶ୍ୱତ୍ଥ ବୃକ୍ଷ ମୂଳରେ ନୀଳମଣିର ଆଭା ତଥା ପୀତାମ୍ବରର ଅଞ୍ଚଳ ମୋ ଆଖିରେ ପଡ଼ିଲା । ସେହି ଆଡ଼କୁ ଧାଇଁ ଯାଇ ଦେଖିଲି, ପ୍ରଭୁ ନିରାଶ୍ରୟ ଭାବରେ ଅଶ୍ୱତ୍ଥ ଗଛକୁ ଆଉଜି ସେହି ସରସ୍ୱତୀ ନଦୀ କୂଳରେ ବସିଛନ୍ତି ! ଆହା....ସେ ସମୟରେ ପ୍ରଭୁଙ୍କ କମନୀୟ କାନ୍ତି କେଡ଼େ ମନୋହର ହୋଇଥିଲା ! ସେତେବେଳେ ପ୍ରଭୁ ସତ୍ତ୍ୱଗୁଣରେ ମଣ୍ଡିତ ହୋଇ ବିରାଜମାନ କରିଥିଲେ । ବିକଚ କମଳ ପରି ତାଙ୍କର ଚକ୍ଷୁ ଦୁଇଟିରୁ ଶୀତଳ କିରଣ ନିର୍ଗତ ହୋଇ ସେହି ଅଞ୍ଚଳକୁ ସୁଖମୟ କରିଥିଲା । ସେତେବେଳେ ପ୍ରଭୁ ଚତୁର୍ଭୁଜ ମୂର୍ତ୍ତି ଧାରଣ କରିଥିଲେ ଏବଂ ଶଙ୍ଖ, ଚକ୍ର, ଗଦା, ପଦ୍ମ ସାକ୍ଷାତ ସ୍ୱରୂପ ଧାରଣ କରି ତାଙ୍କ ନିକଟରେ ହାତଯୋଡ଼ି ଛିଡ଼ା ହୋଇଥିଲେ । ବର୍ଷା କାଳରେ ମେଘ କୋଳରେ ବିଜୁଳି ଚମକୁ ଥିବାପରି, ତାଙ୍କ ଶ୍ରୀଅଙ୍ଗରେ ପୀତାମ୍ବର

ଶୋଭା ପାଉଥିଲା । ସେତେବେଳେ ସେ ଆତ୍ମାନନ୍ଦରେ ପରିପୂର୍ଣ୍ଣ ହୋଇ ବାମଜଙ୍ଘ ଉପରେ ଦକ୍ଷିଣ ପାଦ ରଖି ବସିଥିଲେ ।

"ମୁଁ ସେତିକିବେଳେ ଲକ୍ଷ୍ୟ କଲି—ଭଗବାନ ବ୍ୟାସଦେବଙ୍କ ସୁହୃତ୍ ପରମଜ୍ଞାନୀ ମୈତ୍ରେୟ କେଉଁଠୁ ଆସି ତାଙ୍କ ନିକଟରେ ପହଞ୍ଚିଗଲେ । ମୁଁ ଭୂମିରେ ସାଷ୍ଟାଙ୍ଗ ପ୍ରଣିପାତ କରି ପ୍ରଥମେ ପ୍ରଭୁଙ୍କୁ ଓ ପରେ ମୈତ୍ରେୟଙ୍କୁ ଅଭ୍ୟର୍ଥନା ଜଣାଇଲି । ପ୍ରଭୁଙ୍କ ଆଦେଶ ପାଳନ କରି ନ ଥିବାରୁ, ପ୍ରଭୁ ମୋ ଉପରେ ଅସନ୍ତୁଷ୍ଟ ହେବେ ବୋଲି ମୋତେ ଧାରଣା ହୋଇଥିଲା; କିନ୍ତୁ ମୋର ସେ ଧାରଣା ଅମୂଳକ ମନେହେଲା । କାରଣ, ପ୍ରଭୁ ମୋତେ ଦେଖିବାକ୍ଷଣି ଅତ୍ୟନ୍ତ ଆନନ୍ଦିତ ହୋଇ କହିଲେ—"ଉଦ୍ଧବ, ତୁମେ ଠିକ୍ ବେଳରେ ଆସି ପହଞ୍ଚିଛ, ମୁଁ ତୁମରି ବିଷୟରେ ଚିନ୍ତା କରୁଥିଲି । ମୁଁ ବର୍ତ୍ତମାନ ମର୍ତ୍ତ୍ୟଲୋକକୁ ପରିତ୍ୟାଗ କରିବାକୁ ବସିଛି । ମୋର ଶେଷ ବାର୍ତ୍ତା ମୁଁ କାହାକୁ ଦେବି ବୋଲି ଭାବୁଥିଲି । ତୁମେ ହିଁ ହେଉଛ ଏହାର ଏକମାତ୍ର ଅଧିକାରୀ । ମୁଁ ତ ତୁମକୁ ବଦରିକାଶ୍ରମକୁ ପଠାଇ ଦେଇଥିଲି । ଯାହେଉ, ତୁମେ ଠିକ୍ ସମୟରେ ଆସି ପହଞ୍ଚିଛ ।"

"ପ୍ରଭୁଙ୍କ କରୁଣାରୂପକ ଭାବରେ ମୁଁ ଲଇଁ ପଡ଼ିଥିଲି । ପ୍ରଭୁ ଏ ସେବକ ପ୍ରତି କି ଅନୁକମ୍ପା ପ୍ରଦର୍ଶନ କରିଛନ୍ତି ସତେ ? ମୁଁ ଏହା ଶୁଣି ପୁଣି ଥରେ ଭୂମିରେ ଲୋଟି ସାଷ୍ଟାଙ୍ଗ ପ୍ରଣାମ ଜଣାଇ ଭଗବାନଙ୍କ ସମ୍ମୁଖରେ ଓ ତପୋନିଷ୍ଠ ମୈତ୍ରେୟଙ୍କ ନିକଟରେ ଛିଡ଼ା ହୋଇ ରହିଲି । ପ୍ରଭୁ ନିଜ ମୁଖମଣ୍ଡଳରେ ଅଲୌକିକ ହାସ୍ୟଛଟା ଖେଳାଇ କହିଲେ—"ଉଦ୍ଧବ ! ମୁଁ ତୁମ ଉଦ୍ଦେଶ୍ୟ ବେଶ୍ ବୁଝିପାରୁଛି । ତୁମେ ବଦରିକାଶ୍ରମ କଥା ଏଠାକୁ ମୋର ପଛେ ପଛେ ଧାଇଁ ଆସିଛ । ଏହା ମୁଁ ଜାଣେ ଏହା ମୋରି ପ୍ରେରଣାରେ ହୋଇଛି ବୋଲି ଜାଣ ।"

"ମୁଁ ହାତଯୋଡ଼ି ବିନୀତଭାବରେ କହିଲି—"ପ୍ରଭୋ, ମୁଁ ଆପଣଙ୍କ ଚରଣ ଦର୍ଶନ ବିନା ଆଉ ରହି ପାରିବି ନାହିଁ । ଏହି ପାଦପଦ୍ମ ଦୁଇଟି ମକରନ୍ଦର ଆଳୟ । ମୋର ମନ-ମଧୁପ ସେହିଠାରେ ଆଶ୍ରୟ ପାଇବାକୁ ଚାହେଁ । ମୁଁ ଏହି ଚରଣପଙ୍କଜକୁ ଛାଡ଼ି ଅନ୍ୟତ୍ର ରହିବାକୁ ଇଚ୍ଛାକଲେ ମଧ୍ୟ ପାରିବି ନାହିଁ ।"

"ପ୍ରଭୁ ମନ୍ଦହାସ୍ୟ ମୁଖମଣ୍ଡଳରେ ଖେଳାଇ ଦେଇ କହିଲେ—"ଉଦ୍ଧବ ! ତୁମେ ନିଜକୁ ଭୁଲିଗଲ କି ? ତୁମେ ସାଧାରଣ ମନୁଷ୍ୟ ନୁହଁ, ତୁମେ ଅଷ୍ଟବସୁଙ୍କ ମଧ୍ୟରେ ଅନ୍ୟତମ । ଥରେ ସୃଷ୍ଟିର ଅଭିବୃଦ୍ଧି ପାଇଁ ପ୍ରଜାପତି ଓ ବସୁମାନେ ମିଳି ଗୋଟିଏ ଯଜ୍ଞ ଆରମ୍ଭ କରିଥିଲେ । ସେହିଠାରେ ବସୁ ଓ ପ୍ରଜାପତିମାନେ ନିଜ ନିଜର ଇଚ୍ଛାନୁସାରେ ମୋ'ଠାରୁ ବର ପ୍ରାର୍ଥନା କରିଥିଲେ । ମୁଁ ତୁମକୁ ବର ପ୍ରାର୍ଥନା ଲାଗି କହନ୍ତେ, ତୁମେ ମାଗିଥିଲ—"ମୁଁ ଆପଣଙ୍କ ସାନ୍ନିଧ୍ୟ ଚାହେଁ ।

ମୋତେ ଆପଣଙ୍କ ଅହେତୁକୀ ଭକ୍ତି ପ୍ରାପ୍ତ ହେଉ ଏବଂ ଆପଣଙ୍କ ଉପଦେଶରେ ମୋ' ହୃଦୟରେ ଜ୍ଞାନ ଲାଭ ହେଉ ।''

"ତା'ର ଫଳରେ ତୁମେ ଇହଜନ୍ମରେ ମୋର ସାନ୍ନିଧ୍ୟ ଲାଭ କରିବାର ସୁଯୋଗ ପାଇଛ । ବର୍ତ୍ତମାନ ମୁଁ ଜ୍ଞାନ ଉପଦେଶରେ ତୁମର ଇଚ୍ଛା ପୂରଣ କରିବି ।''

"ମୁଁ ମନେ ମନେ ଆନନ୍ଦରେ ବିହ୍ୱଳ ହୋଇ କହିଲି—"ପ୍ରଭୋ ! ମୋର ଜ୍ଞାନ ଲୋଡ଼ା ନାହିଁ । ମୁଁ ଚାହେଁ ଆପଣଙ୍କ ସାନ୍ନିଧ୍ୟ, ତାହାହିଁ ମୋ'ପକ୍ଷରେ ଜପ, ତପ ଓ ସାଧନା ।''

"ପ୍ରଭୁଙ୍କ ମୁଖମଣ୍ଡଳରୁ ପଦ୍ମାନ୍ତର ହାସ୍ୟରେଖା ଝରି ପଡ଼ିଲା । ସେ ଧୀର ଗମ୍ଭୀର ସ୍ୱରରେ କହିଲେ—"ଉଦ୍ଧବ, ତୁମେ ବ୍ୟସ୍ତ ହୁଅ ନାହିଁ । ଏହା ହିଁ ହେଉଛି —ତୁମର ଶେଷଜନ୍ମ । ଏହି ଜନ୍ମର ଅନ୍ତିମ ସମୟରେ ତୁମେ ମୋ' ପ୍ରଦତ୍ତ ଜ୍ଞାନର ସହାୟ କରି, ବଦରୀକାଶ୍ରମରେ ପ୍ରବେଶ କରିବ । ତୁମେ ଆଉ କିଛିଦିନ ଏଠାରେ ରହି, ମୋର ଉପଦେଶ ଅନୁସାରେ ଲୋକକଲ୍ୟାଣରେ ବ୍ରତୀ ହୁଅ ।''

"ହେ ବିଦୁର ! ସତେ, ମୁଁ କେତେ ଭାଗ୍ୟଶାଳୀ ନୁହେଁ କହିଲ ? ପ୍ରଭୁଙ୍କର ଅପାର କରୁଣା ଲାଭ କରିବି ବୋଲି ମୋ' ମନରେ ଏତେଦିନେ ଧାରଣା ନ ଥିଲା । ଅବଶ୍ୟ ମୋତେ ସେ ସତତ ପ୍ରସାଦ, ମାଳା ଆଦି ପ୍ରଦାନ କରୁଥିଲେ; କିନ୍ତୁ ଶେଷ ମୁହୂର୍ତ୍ତରେ ସେ ମୋତେ ଦିବ୍ୟ ଜ୍ଞାନୋପଦେଶ ପ୍ରଦାନ କରିବେ ବୋଲି ମୁଁ ଅନୁମାନ କରି ପାରି ନଥିଲି । ପ୍ରଭୁଙ୍କ ଶ୍ରୀମୁଖ ବଚନ ଶୁଣିବା ମାତ୍ରେ, ମୋର ସର୍ବାଙ୍ଗ ପୁଲକ ଉଠିଲା ଏବଂ ଶରୀର ରୋମାଞ୍ଚିତ ହୋଇ ଉଠିଲା । ମୁଁ କୌଣସି ମତେ ମୋ'ମନର ଆନନ୍ଦକୁ ଆୟତ୍ତ କରି କହିଲି—"ପ୍ରଭୋ ! ଯାହାକୁ ଆପଣଙ୍କ ଚରଣ କମଳରେ ଆଶ୍ରୟ ମିଳିଛି, ତା'ପକ୍ଷରେ ଧର୍ମ, ଅର୍ଥ, କାମ, ମୋକ୍ଷ ଅଲଭ୍ୟ ହେବ କିପରି ? ଏଗୁଡ଼ିକ ବିନା ପ୍ରାର୍ଥନାରେ ମିଳି ପାରିବ ।''

"ଏହା ଶୁଣି କହିଲେ ବାସୁଦେବ—"ଉଦ୍ଧବ, ତୁମେ ଏହି ଚତୁର୍ବର୍ଗ ମୋ ଠାରୁ ମାଗିନିଅ । ତୁମକୁ ମୋକ୍ଷ ପ୍ରଦାନ କରିବାକୁ ମୁଁ ପ୍ରସ୍ତୁତ ଅଛି ।''

"ମୁଁ ଅତ୍ୟନ୍ତ ବିଚଳିତ ହୋଇପରି କହିଲି—"ପ୍ରଭୋ ! ମୋର ମୋକ୍ଷ ଲୋଡ଼ାନାହିଁ । ଆପଣଙ୍କ ଶ୍ରୀଚରଣକମଳରେ ଭକ୍ତି ଥାଉ ଏକମାତ୍ର କାମନା । ଯେଉଁମାନେ ବନ୍ଧନରୁ ମୁକ୍ତ ହେବାକୁ ଚାହୁଁଛନ୍ତି, ସେହିମାନଙ୍କୁ ଆପଣ ମୋକ୍ଷ ପ୍ରଦାନ କରନ୍ତୁ । ମୁଁ ଆପଣଙ୍କ ଚରଣକମଳରେ ନିରନ୍ତର ବନ୍ଦୀ ହୋଇ ରହିବାକୁ ଚାହୁଁଛି । ଆପଣଙ୍କ ଶ୍ରୀପଦ୍ମରେ କୋଷ୍ଟର ହୋଇ ପାରିଲେ, ସଂସାରିକ ବନ୍ଧନ ଆପଣାଛୁଏଁ ତୁଟିଯିବ ।''

"ଭଗବାନ୍ ହସି ହସି କହିଲେ—"ଉଦ୍ଧବ ! ମୁଁ ମଧ୍ୟ କର୍ମର ବନ୍ଧନରେ ଆବଦ୍ଧ ହୋଇଛି ।"

"ମୁଁ ଅତ୍ୟନ୍ତ ବିନୀତ ଭାବରେ କହିଲି—"ଆପଣ କର୍ମ—ବନ୍ଧନରେ ଆବଦ୍ଧ ହୋଇଥାଆନ୍ତୁ ବା ମୁକ୍ତ ରହିଥାଆନ୍ତୁ, ମୋର ସେଥିରେ କିଛି ଯାଏ ଆସେ ନାହିଁ । ମୁଁ ଆପଣଙ୍କ ଶ୍ରୀଚରଣ ସେବାରେ ବନ୍ଦୀ ହୋଇ ରହିବାକୁ ଚାହେଁ । ଆପଣଙ୍କର ଲୀଳା ବିଚିତ୍ର । ସେ ଲୀଳାର ମହତ୍ତ୍ୱ ବୁଝିବାକୁ ମୋ' ଭଳି ବ୍ୟକ୍ତିର ସାଧ୍ୟ ଅବା କାହିଁ ? ଆପଣ ଅଜନ୍ମା ହୋଇ ଜନ୍ମ ନେଇ ପାରନ୍ତି, ସ୍ୱୟଂ କାଳସ୍ୱରୂପୀ ହୋଇ ମଧ୍ୟ ଶତ୍ରୁଠାରୁ ଭୟ କରି, ସମୁଦ୍ର ମଧ୍ୟରେ ଦୁର୍ଗ ନିର୍ମାଣ କରି ରହିପାରନ୍ତି, କଳେ ପ୍ରତ୍ୟେକ ଆତ୍ମାରେ ବିଚରଣକାରୀ ହୋଇ ଷୋଳସହସ୍ର ନାରୀଙ୍କର ରମଣ ହୋଇ ପାରନ୍ତି । ଆପଣଙ୍କ ପକ୍ଷରେ ସତ୍ୟ କିଛି ସମ୍ଭବ ।

"ଆପଣ ସର୍ବାନ୍ତର୍ଯ୍ୟାମୀ ହୋଇ ମଧ୍ୟ ବେଳେ ବେଳେ ନମ୍ରତାର ଭାବରେ ମୋର ପରାମର୍ଶ ଲୋଡ଼ୁଥିଲେ । ସାଧାରଣ ମନୁଷ୍ୟ ଭଳି ଆପଣ ବେଳେ ବେଳେ ବ୍ୟସ୍ତ ହୋଇ ପଡ଼ୁଥାଆନ୍ତି । ଏହା ହେଉଛି ଆପଣଙ୍କର ମାନବୀଲୀଳା । ମୁଁ ସେହି ଲୀଳାମୟଙ୍କ ଶ୍ରୀଚରଣ ସେବକ ହେବାକୁ ଚାହେଁ ।"

"ପ୍ରଭୁ ମୋ' କଥା ଶୁଣି ମୁଖମଣ୍ଡଳରେ ହାସ୍ୟରେଖାଟିଏ ଖେଳାଇ ଦେଇ କହିଲେ—"ଉଦ୍ଧବ ! ତୁମେ ଅତ୍ୟନ୍ତ ବୁଦ୍ଧିମାନ୍ ! ତୁମେ ତୁମର ଇଚ୍ଛା ପ୍ରକାଶ କର ।"

"ମୁଁ ଆନନ୍ଦରେ ଗଦ୍ ଗଦ୍ ହୋଇ କହିଲି—"ଯଦି ଏ' ଦାସ ପ୍ରତି ଅପାର କୃପା ଆପଣଙ୍କ ହୃଦୟରେ ରହିଛି, ତେବେ ମୋତେ ଭାଗବତ ଜ୍ଞାନ ପ୍ରଦାନ କରନ୍ତୁ ।"

ବିଦୁର ହଠାତ୍ ପ୍ରଶ୍ନ କଲେ—"ଉଦ୍ଧବ ! ତା'ପରେ କ'ଣ ହେଲା ? ଭଗବାନ୍ କ'ଣ ତୁମକୁ ସେହି ଅତି ଗୋପନୀୟ ଭଗବତଜ୍ଞାନ ପ୍ରଦାନ କଲେ ?"

ଉଦ୍ଧବ ଉତ୍ତର ଦେଲେ—"ହେ, ବିଦୁର ମହୋଦୟ ! ପ୍ରଭୁଙ୍କର ଅପାର କରୁଣାରୁ ମୁଁ ମାତ୍ର କଣିକାଏ ଲାଭ କରିଛି । ସୃଷ୍ଟିର ଆରମ୍ଭରେ ପ୍ରଭୁ ଯେଉଁ ଜ୍ଞାନ ଉପଦେଶଦ୍ୱାରା ବ୍ରହ୍ମାଙ୍କୁ ପ୍ରବୁଦ୍ଧ କରିଥିଲେ, ପ୍ରଭୁ ବିଶ୍ୱାତ୍ମନ୍ ମୋତେ ସେହି ଉପଦେଶଦ୍ୱାରା ପ୍ରବୋଧିତ କରିଥିଲେ, ସେହି ଜ୍ଞାନୋପଦେଶରେ କୃତାର୍ଥ ହୋଇ, ମୁଁ ତାଙ୍କର ଚରଣବନ୍ଦନା କରିବା ପରେ, ତାଙ୍କର ଆଜ୍ଞାରେ ଏଠାକୁ ଚାଲି ଆସିଲି । ହେ ବିଦୁର ! ଆପଣ ସୌଭାଗ୍ୟଶାଳୀ । ଆପଣଙ୍କ ଆଗରେ ଶ୍ରୀକୃଷ୍ଣଙ୍କ କଥା କେତେ ଅବା ବ୍ୟାଖ୍ୟା କରିବି ? ଏହି ମହିମା ଶେଷନାଗ ମଧ୍ୟ ତାଙ୍କର ଦ୍ୱିସହସ୍ର

ଜିହ୍ୱାରେ ବର୍ଣ୍ଣନା କରିବାରେ ସମର୍ଥ ହେବେନାହିଁ । ମୁଁ ତାଙ୍କ ବିରହରେ ଅତ୍ୟନ୍ତ ଦୁଃଖିତ ହୋଇ ବଦରିକାଶ୍ରମକୁ ଚାଲିଯାଉଛି । ସେଠାରେ ମୁଁ ନରନାରାୟଣଙ୍କର ଦୁଇଟି ବିଗ୍ରହ ଦର୍ଶନ କରି, ଲୋକକଲ୍ୟାଣ ଉଦ୍ଦେଶ୍ୟରେ ଘୋର ତପ ଆରମ୍ଭ କରିବି । ଭଗବାନ୍‌ଙ୍କ ଦର୍ଶନରେ ମୁଁ ପାଗଳ ହୋଇ ଯାଇଛି । ମୋତେ କୌଣସି ସଂସାରିକ ବ୍ୟବହାର ଭଲ ଲାଗୁ ନାହିଁ । ମୁଁ କେବଳ ପ୍ରଭୁଙ୍କ ଆଜ୍ଞା ପାଳନ ଲାଗି ସେଠାକୁ ଯାଉଛି ।"

ଶ୍ରୀଶୁକଦେବ କହିଲେ—"ହେ ରାଜନ୍, ଏତିକି କହି ଉଦ୍ଧବ ପୁଣି ଥରେ ଶ୍ରୀଭଗବଦ୍‌ ଧ୍ୟାନରେ ମଗ୍ନ ହୋଇଗଲେ ।",

## ଛପ୍ପୟ

"ଭୂଖେ କୌଁ ଜୈସା ଖୀର ପିପାସିତ କୌଁ ଜ୍ୟୌଂ ପାନୀ
ତୈସୌଂ ଅତିଶୟ ପ୍ରିୟ ଲଗୀ ମଧୁର ଶ୍ରୀହରି କୀ ବାନୀ ॥
ବିନୟ କରୀ ପ୍ରଭୋ ଭକ୍ତି କୋ ତତ୍ତ୍ୱ ବତାଓ୍ୱଂ
ଶୁଦ୍ଧ ଭାଗବତ ଜ୍ଞାନ ଦାନ କରି ଦୁଃଖ ମିଟାଓ୍ୱଂ ॥
କମଲ-ନୟନ ବିନତୀ ସୁନୀ ପରମ ତତ୍ତ୍ୱ ମୋତୈଂ କହ୍ୟୋ
ଆୟସୁ ସିର ଧରି ବନ୍ଦି ପଦ ବଦରୀବନ କୂଁ ଚଲି ଦୟୋ ॥"



# ଉଦ୍ଧବଙ୍କ ବଦରିବନ ଗମନ

"ଇତି ସହ ବିଦୁରେଣ ବିଶ୍ୱମୂର୍ତ୍ତେ-
ର୍ଗୁଣକଥୟା ସୁଧୟା ପ୍ଲାବିତୋରୁତାପଃ ।
କ୍ଷଣମିବ ପୁଳିନେ ଯମସ୍ୱସୁସ୍ତାମ୍
ସମୁଷିତ ଔପଗବିର୍ନିଶାଂ ତତୋଽଗାତ୍ ॥"

( ଭାଗବତ ୩ । ୪ । ୨୭ )

## ଛପ୍ପୟ

"ସୁଧୋ ଆୟୋ ଯହଁ ଆପୁନେ ଦର୍ଶନ ଦୀନ୍ହେଂ
ଶୋକାମୋହ ସନ୍ତାପ କୃପା କରି ସବ ହରି ଲୀନ୍ହେଂ ॥
ବିଦୁର କହେ ହେ ସଖେ କୃପା ହମ ହୁ ପୈ କୀଜେ
ହରିତେଂ ପାୟୋ ଜ୍ଞାନ ତାହି ହମହୁଁ କୁଁ ଦୀଜେ ॥
ଉଦ୍ଧବ ବୋଲେ ବିଦୁରଜୀ ବଡଭାଗୀ ହୈଂ ଆପ ଅତି
ଜିନକୁଁ ହରି ସୁମିରନ କରେଂ ଅନ୍ତ ସମୟ ମହଁ ଅଖିଲପତି ॥"

ଶ୍ରୀଶୁକଦେବ କହୁଛନ୍ତି—ହେ ରାଜନ୍, ଭଗବତ୍ ବିରହରେ ଉଦ୍ଧବଙ୍କ ମନରେ ଯେଉଁ ସନ୍ତାପ ଜାତ ହୋଇଥିଲା, ତାହା ବିଦୁରଙ୍କ ସହିତ ଆଲୋଚନାରେ ଉପଶମ ହୋଇଗଲା । ଭଗବତ୍ ବିଷୟକ ଆଲୋଚନାରେ ମଗ୍ନରହି ଦୁହେଁ ଯାକ ସେହି ଯମୁନା କୂଳରେ ରାତିଟି ସହଜରେ ବିତାଇ ଦେଲେ । ପ୍ରାତଃ କାଳରୁ ଉଦ୍ଧବ ସେଠାରୁ ଚାଲିଗଲେ ।

ଜଣେ ମନୁଷ୍ୟ ସ୍ୱାମୀଙ୍କର ଅଶେଷ କୃପା ଲାଭକଲେ ଅନ୍ୟ ଜଣକ ମନରେ ଈର୍ଷା ଜାତ ହୋଇଥାଏ । ଏହା ସାଧାରଣ ମନୁଷ୍ୟର ପ୍ରବୃତ୍ତି । ଅନ୍ୟର ମନରେ ଧାରଣାହୁଏ ଏ' କାହିଁକି ସ୍ୱାମୀଙ୍କର ଏଡ଼େ ବଡ଼ କୃପାପାତ୍ର ହେଲା ? ମୁଁ କାହିଁକି

ହୋଇ ପାରିଲି ନାହିଁ ? ଏ'ପ୍ରକାର ଈର୍ଷା ସୃଷ୍ଟିର ଆରମ୍ଭରୁ ରହିଛି ଏବଂ ଅନ୍ତ ପର୍ଯ୍ୟନ୍ତ ରହିଥିବ । ଏହାକୁ କେହି ଦୂର କରି ପାରିବେ ନାହିଁ । ସାଧାରଣ ଲୋକର ମନରେ ଯେଉଁ ପ୍ରକାର ଈର୍ଷା ସାଧାରଣ ବସ୍ତୁପାଇଁ ହୋଇଥାଏ, ସେହି ପ୍ରକାରର ଈର୍ଷା ଭଗବଦ୍ ଭକ୍ତି ପାଇବା ପାଇଁ ମଧ୍ୟ ଭକ୍ତମାନଙ୍କ ମନରେ ଜାତ ହୋଇଥାଏ । ଜଣେ ଭକ୍ତର ଅଲୌକିକ ନିଷ୍ଠା ତଥା ଭକ୍ତି ଦେଖି ଅନ୍ୟର ମନରେ ଈର୍ଷାଭାବ ଜାଗ୍ରତହୁଏ—'ମୁଁ କାହିଁକି ଏପରି ହେଲିନାହିଁ ? ମୋ' ଠାରେ ଏପରି ଭକ୍ତି ଓ ଜ୍ଞାନ କିପରି ଜାତ ହେବ ? ଏ' ବ୍ୟକ୍ତି କିପରି ଏ' ଧରଣରେ କୃପା ଲାଭ କରିପାରିଲା ? ମୁଁ କାହିଁକି ପାରିବି ନାହିଁ ? ଅନ୍ୟର ସୌଭାଗ୍ୟ ଦେଖି ସେ ନିଜକୁ ଧିକ୍କାର କରେ । ସଂସାରୀ ଲୋକମାନେ ଏପରି ଅବସ୍ଥାରେ ଈର୍ଷାରେ ଜଳିଯାଇ କଳହ କରନ୍ତି; କିନ୍ତୁ ଭଗବଦ୍ ଭକ୍ତମାନଙ୍କ ହୃଦୟରେ ଏପରି ଅବସ୍ଥାରେ ଭଗବତ୍ ପ୍ରେମ ଅଧିକ ପରିମାଣରେ ଜାତ ହୋଇଥାଏ । ଈଶ୍ୱରଙ୍କୁ ନିମିତ୍ତମାତ୍ର ବୋଲି ମନେ କରି, ସେପରି ଅବସ୍ଥାରେ, ଭକ୍ତ ଯେଉଁ କାର୍ଯ୍ୟ କରିଥାଏ, ତାହାର ଫଳ ଅନନ୍ତ ତଥା ସର୍ବବ୍ୟାପୀ ।''

ଶ୍ରୀଶୁକ ରାଜା ପରୀକ୍ଷିତଙ୍କୁ କହୁଛନ୍ତି—''ହେ ରାଜନ୍ ! ଉଦ୍ଧବଙ୍କ ମୁଖରୁ ବିଦୁର ଯଦୁବଂଶର ଧ୍ୱଂସ ସମ୍ବାଦ ଶୁଣି, ପ୍ରଥମେ ତାଙ୍କ ମନରେ ଅସହ୍ୟ ଦୁଃଖ ଜାତ ହୋଇଥିଲା । ପରେ ସେ ନିଜର ଜ୍ଞାନବଳରେ ସେହି ଶୋକକୁ ଶାନ୍ତକରି ଦେଇଥିଲେ । ତାହା ପରମେଶ୍ୱରଙ୍କ ଖେଳ ଏବଂ ସେ ଯେତେବେଳେ ଯାହା ଚାହାନ୍ତି ତାହା ହିଁ କରନ୍ତି ବୋଲି ତାଙ୍କ ମନରେ ଭାବନା ଜାତ ହୋଇଥିଲା । ସେ ଏଥିରେ କାହାରି ଦୋଷ ନ ଦେଖି, କେବଳ ତାହା ଭଗବତ୍ ଇଚ୍ଛା ବୋଲି ଧାରଣା କରିଥିଲେ । ବିଦୁର ଯଦୁବଂଶ ଧ୍ୱଂସ ସମ୍ବନ୍ଧୀୟ ଶୋକ ହୃଦୟରୁ ସମ୍ପୂର୍ଣ୍ଣଭାବେ ଦୂର କରି ଦେଇ, ଉଦ୍ଧବଙ୍କ ସୌଭାଗ୍ୟ ସମ୍ବନ୍ଧରେ ଚିନ୍ତା କରିଥିଲେ । ସେ କେବଳ ଭାବିଲେ—ଉଦ୍ଧବ ଏଡ଼େବଡ଼ ସୌଭାଗ୍ୟର ଅଧିକାରୀ କିପରି ହେଲେ ? ଏ କିପରି ଭକ୍ତମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ହୋଇପାରିଲେ ? ଏ କିପରି ପ୍ରଭୁଙ୍କର ଏଡ଼େ ବଡ଼ ବିଶ୍ୱାସ ପାତ୍ର ହୋଇ ପାରିଲେ ? ଏ' ସବୁ କିଛି ତ୍ୟାଗ କରି ବଦରୀବନକୁ ଚାଲି ଯାଉଛନ୍ତି । ଯେଉଁମାନେ ବଦରୀବନକୁ ଯାଆନ୍ତି, ସେମାନେ ଆଉ କେବେହେଲେ ଫେରନ୍ତି ଆସନ୍ତି ନାହିଁ । ତେଣୁ ଏହାଙ୍କ ସହିତ ଆଉ କୌଣସିମତେ ସାକ୍ଷାତ୍ ହେବନାହିଁ ! ଉଦ୍ଧବ ସ୍ୱୟଂ ପ୍ରଭୁଙ୍କ ମୁଖରୁ ଭାଗବତଜ୍ଞାନ ପ୍ରାପ୍ତ ହୋଇଛନ୍ତି । ଏ' ସାଧାରଣ ମନୁଷ୍ୟ ନୁହନ୍ତି ! ମୁଁ ଏହାଙ୍କର ଶିଷ୍ୟ ହୋଇ ବଦରୀବନକୁ ଚାଲିଯିବି । ଏହାଙ୍କ ମୁଖରୁ ଭାଗବତଜ୍ଞାନ ଶୁଣି ଜୀବନକୁ ଧନ୍ୟ ମନେ କରିବି । ମୁଁ ତ ପ୍ରଭୁଙ୍କ ମୁଖରୁ ଜ୍ଞାନସମ୍ବାଦ ଶୁଣି ପାରିଲି ନାହିଁ, ଏହାଙ୍କ ମୁଖରୁ ଭଗବତ୍ ଉପଦେଶ ଶୁଣି ହୁଏତ ଜୀବନକୁ ପ୍ରେମମୟ କରି ପାରିବି ! ଏହା ଚିନ୍ତା କରି ବିଦୁର ଉଦ୍ଧବଙ୍କୁ କହିଲେ—''ହେ ଉଦ୍ଧବ ! ଆପଣ ଭଗବାନ୍ଙ୍କ ଶ୍ରୀମୁଖରୁ ଯେଉଁ

ଗୁହ୍ୟତମଜ୍ଞାନ ଲାଭ କରିଛନ୍ତି, ସେହି ଜ୍ଞାନ ଦୀକ୍ଷା ମୋତେ ପ୍ରଦାନ କରନ୍ତୁ ! ଯଦି ଆପଣ ମୋତେ ଯୋଗ୍ୟ ବୋଲି ବିଚାରୁଥାଆନ୍ତି; ତା' ହେଲେ, ମୋତେ ଜ୍ଞାନ ଉପଦେଶ ଦେଇ, ମୋର ଅତୃପ୍ତ ପ୍ରାଣରେ ଆଶାର ସଞ୍ଚାର କରନ୍ତୁ । ଏହା ଆଦୌ ସାଂସାରିକ ଭୋଗ୍ୟ ବସ୍ତୁ ନୁହେଁ । ତେଣୁ ଆପଣ ବିଷୟବାସନାରେ ଆସକ୍ତ ମଣିଷ-ମାନଙ୍କ ପରି ଆଦୌ କୃପଣ ହେବେନାହିଁ । ଏହା ହେଉଛି—ପରମ ଅର୍ଥଜ୍ଞାନ, ଆପଣଙ୍କ ପରି ଜଣେ ପରମାର୍ଥଜ୍ଞାନୀ ତଥା ଭଗବଦ୍‌ଭକ୍ତ ନିଜ ଆଶ୍ରିତ ପରିଜନଙ୍କ ନିମିତ୍ତ କାର୍ଯ୍ୟକରିବାକୁ ଆଦୌ ପଶ୍ଚାଦ୍‌ପଦ ହେବେ ନାହିଁ । ଆଗ୍ରହୀ ଭକ୍ତ ତଥା ଜିଜ୍ଞାସୁ ବ୍ୟକ୍ତି ପାଇଲେ ଆପଣ ଜ୍ଞାନଦୀକ୍ଷା ଦେବାକୁ କେବେହେଲେ କୁଣ୍ଠିତ ହେବେନାହିଁ । ମୁଁ ଅବଶ୍ୟ ଆପଣଙ୍କ ପରି ପରମଜ୍ଞାନୀ ଭକ୍ତ ନୁହେଁ, ତଥାପି ପରମେଶ୍ୱରଙ୍କର ମୋ' ପ୍ରତି ସାମାନ୍ୟ କୃପା ରହିଥିଲା । ତେଣୁ ମୁଁ ଆପଣଙ୍କ ଅନୁଗ୍ରହ ଲାଭ କରିବାରେ ଅଧିକାରୀ ହୋଇପାରିବି ।"

ବିଦୁରଙ୍କ ଅନୁରୋଧରେ ଗଦ୍‌ଗଦ୍ ହୋଇ ଉଦ୍ଧବ କହିଲେ—"ହେ ବିଦୁର ! ଆପଣ ନିଜକୁ ଏତେ ହେୟ ବୋଲି ମନେକରୁଛନ୍ତି କାହିଁକି ? ମୋର ଧାରଣା--ଆପଣଙ୍କଠାରୁ ବଳି ଆଉ କେହି ସୌଭାଗ୍ୟଶାଳୀ ନାହାନ୍ତି । ଯଦି ତାହା ହୋଇ ନ ଥାନ୍ତା, ହସ୍ତିନା ପୁରର ସମ୍ଭ୍ରାନ୍ତ ରାଜପ୍ରସାଦକୁ ଛାଡ଼ି ଭଗବାନ୍ କେବେହେଲେ ଆପଣଙ୍କ ଗୃହରେ ଅତିଥି ହୋଇ ନଥାନ୍ତେ ! ହଁ, ମାନୁଛି, ଦୁର୍ଯ୍ୟୋଧନର ଅଭିମାନ ପାଇଁ ପ୍ରଭୁ ସେଠାରେ ରହିବାକୁ ଚାହିଁଲେ ନାହିଁ; କିନ୍ତୁ ଭୀଷ୍ମ ପିତାମହଙ୍କ ପରି ଅନୁରକ୍ତ ଭକ୍ତଙ୍କ ଗୃହକୁ ସେ ଗଲେ ନାହିଁ କାହିଁକି ? ଦ୍ରୋଣ, କୃପାଚାର୍ଯ୍ୟ ପ୍ରଭୃତି ଅନେକ ବ୍ୟକ୍ତିଥିଲେ, ସେ କାହାରି ଗୃହକୁ ନଯାଇ, ଆପଣଙ୍କ ଅନୁପସ୍ଥିତିରେ ମଧ୍ୟ ସେଠାରେ ପହଞ୍ଚି ଆତିଥ୍ୟ ଗ୍ରହଣ କରିଥିଲେ । ଶେଷ ମୁହୂର୍ତ୍ତରେ ମଧ୍ୟ ପ୍ରଭୁ ଆପଣଙ୍କୁ ସ୍ମରଣ କରିଥିଲେ ।"

ପ୍ରଭୁ ଶେଷମୁହୂର୍ତ୍ତରେ ତାଙ୍କୁ ସ୍ମରଣ କରିଥିବାର ସମ୍ବାଦ ଶୁଣି ବିଦୁର ଆନନ୍ଦରେ ପୁଲକିତ ହୋଇ ଉଠିଲେ । ତାଙ୍କ ଶରୀର ରୋମାଞ୍ଚିତ ହୋଇଗଲା । ତାଙ୍କ ଚକ୍ଷୁରୁ ପ୍ରେମାଶ୍ରୁ ବିଗଳିତ ହେବାକୁ ଲାଗିଲା । ସେ ଅଧୀର ହୋଇ ଉଠି ପଚାରିଲେ—"କଣ କହିଲେ ଉଦ୍ଧବ ମହୋଦୟ ! ଭଗବାନ୍ ଶେଷ ମୁହୂର୍ତ୍ତରେ ମୋ' ବିଷୟରେ ପଚାରୁଥିଲେ ? କେଉଁ ପ୍ରସଙ୍ଗରେ ସେ ମୋ' ନାମ ଧରିଥିଲେ ? ଆପଣ ଠିକ ଭାବରେ ମୋ' ନାମ ପ୍ରଭୁଙ୍କ ମୁଖରୁ ଶୁଣିଛନ୍ତି ତ ?"

ବିଦୁରଙ୍କ ଉତ୍କଣ୍ଠା ଲକ୍ଷ୍ୟକରି ଭାବିଲେ ଉଦ୍ଧବ—"ଆହା ପ୍ରକୃତ ଭକ୍ତ ମନରେ ଭଗବାନଙ୍କ ନାମ ଶ୍ରବଣରେ କି ଆନନ୍ଦ ! ଭକ୍ତର ମନରେ ପ୍ରଭୁଙ୍କ ନାମ ଶ୍ରବଣରେ କି ଅଭିମାନଶୂନ୍ୟ ଭାବ ଜାଗ୍ରତ ହୋଇଛି ?" ଏହା ମନେ ମନେ ଭାବି ସେ ତନ୍ମୟତାର ସହିତ କହିଲେ—"ହେ ମହାଭାଗ, ଆପଣ କ'ଣ କହୁଛନ୍ତି ଯେ ?

ଭଗବାନ କେବଳ ଆପଣଙ୍କ ନାମ ଧରି ନାହାନ୍ତି, ସେ ଆପଣଙ୍କ ସମ୍ବନ୍ଧରେ ଅନେକ କଥା କହିଛନ୍ତି ।

ବିଦୁର ଆବେଗଭରା କଣ୍ଠରେ କହିଲେ—"କେଉଁ ପ୍ରସଙ୍ଗରେ ପ୍ରଭୁ ମୋ ବିଷୟରେ ଆଲୋଚନା କରୁଥିଲେ ଯେ ?"

ଉଦ୍ଧବ କହିଲେ—"ହେ ମହାଭାଗ ! ଭଗବାନ ମୈତ୍ରେୟ ମୁନିଙ୍କ ଆଗରେ ମୋତେ ଭାଗବତ ବାଣୀ ଶୁଣାଇ କହିଲେ—"ତୁମେ ଏହି ଭାଗବତ ବାଣୀକୁ ମୋର ପରମ ଭକ୍ତ ବିଦୁରଙ୍କୁ ଶୁଣାଇ ଦେବ । ସେ ହେଉଛନ୍ତି—ଏହାର ପ୍ରକୃତ ଅଧିକାରୀ । ସେ 'ଗଙ୍ଗାଦ୍ୱାର'ରେ ତୁମ ନିକଟକୁ ଆସିବେ । ସେହି ସମୟରେ ତୁମେ ତାଙ୍କୁ ଭାଗବତ ବାଣୀ ଶୁଣାଇ ପ୍ରୀତ କରାଇବ । ତେଣୁ ହେ ବିଦୁର ! ପ୍ରଭୁଙ୍କ ମୁଖନିଃସୃତ ସେହି ବାଣୀ ମୁଁ ଆପଣଙ୍କୁ ଶୁଣାଇ ପାରିବିନାହିଁ । ଆପଣ ମୈତ୍ରେୟଙ୍କ ମୁଖରୁ ସେହି ଅମିୟବାଣୀ ହରିଦ୍ୱାରଠାରେ ଶ୍ରବଣ କରି ପାରିବେ । ଆପଣ ଶୀଘ୍ର ସେଠାକୁ ଯାଇ ମୈତ୍ରେୟଙ୍କ ସେବାରେ ନିଯୁକ୍ତ ହୁଅନ୍ତୁ ।"

ଏହା ଶୁଣିବା ମାତ୍ରେ ବିଦୁର ଆନନ୍ଦରେ ଚକ୍ଷୁରୁ ପ୍ରେମାଶ୍ରୁ ବିମୋଚନ କରିବା ସଙ୍ଗେ ସଙ୍ଗେ ବାରମ୍ବାର ନିଜ ଭାଗ୍ୟକୁ ପ୍ରଶଂସା କରିବାକୁ ଲାଗିଲେ । ଏହାଦେଖି କହିଲେ ଉଦ୍ଧବ—"ମହାଭାଗବତ ଉଦ୍ଧବ ! ଆପଣ ନିଜକୁ ଏତେ ଶ୍ରେଷ୍ଠ ବୋଲି ମନେ କରୁଛନ୍ତି କାହିଁକି ? ପ୍ରଭୁଙ୍କ ପ୍ରତି ଆପଣଙ୍କ ମନର ଶ୍ରଦ୍ଧା ଲକ୍ଷ୍ୟ କରି, ମୁଁ ଅତ୍ୟନ୍ତ ପ୍ରୀତ ହୋଇଛି । ଆପଣଙ୍କ ପରି ନିଷ୍ଠାବାନ୍ ଭକ୍ତ ମୁଁ ଆଦୌ ଦେଖିନାହିଁ । ଏପରି ନିଷ୍ଠା ଅତ୍ୟନ୍ତ ଭାଗ୍ୟରେ ପ୍ରାପ୍ତ ହୋଇଥାଏ ।

ଶ୍ରୀଶୁକଦେବ କହିଲେ—"ହେ ରାଜନ ! ଦୁଇଜଣ ଭଗବଦ୍‌ପ୍ରେମୀ ପାଗଳ ଯମୁନା କୂଳନରେ ଏକାନ୍ତରେ ବସି ଶ୍ରୀକୃଷ୍ଣଙ୍କ ପରମ ପବିତ୍ର ଚରିତ ଆଲୋଚନା କରୁଥିଲେ । ସେ ସମୟରେ ପ୍ରକୃତି ନୀରବ ଓ ନିସ୍ତବ୍ଧ । ସଂସାରର ଜନମାନବ ନିଦ୍ରାଦେବୀଙ୍କ କୋଳରେ ଅଭିଭୂତ । କେବଳ ଯମର ଭଗିନୀ କୁଳୁକୁଳୁ ନାଦରେ ପ୍ରବାହିତ ହେଉଥିଲା । ସେ ମଧ୍ୟ ବେଳେ ବେଳେ ନିଜର ଗତିରୋଧ କରି ନିଜ ପ୍ରିୟତମଙ୍କ ପାବନ ଚରିତ ଶୁଣିବାରେ ଲାଗିଥିଲା । ପାବନ ମଧ୍ୟ ମନ୍ଦଗତିରେ ପ୍ରବାହିତ ହୋଇ କୃଷ୍ଣପ୍ରେମ ପାଗଳ ଦୁଇ ବନ୍ଧୁଙ୍କୁ ସ୍ୱାଗତ ଜଣାଉଥିଲା । ହଠାତ୍ ପକ୍ଷୀମାନଙ୍କ କୂଜନ ଶୁଣି ଉଦ୍ଧବ ଚମକି ଉଠି କହିଲେ—"ଆରେ...., ପ୍ରଭାତ ହୋଇଗଲା ! ପ୍ରଭୁଙ୍କ ବିରହରେ ସମସ୍ତ ମଧ୍ୟ ତା'ର ଅବଧି ଊଣା କରିଦେଇଛି ।" ଏହା କହି ସେ ବିଦୁରଙ୍କୁ ସମ୍ବୋଧନ କରି କହିଲେ– "ହେ ବିଦୁର ! ଆପଣଙ୍କ ଦର୍ଶନ ଫଳରେ ମୋ ମନରୁ ଶ୍ରୀକୃଷ୍ଣଙ୍କ ବିରହଜନିତ ତାପର ମାତ୍ରା ଊଣା ହୋଇ ଯାଇଛି । ମୁଁ ପ୍ରଭୁଙ୍କ ଆଜ୍ଞା ପାଳନ କରି ବଦରୀବନକୁ ଯାଉଛି । ଏହାପରେ

ଆପଣଙ୍କ ସହିତ ପୁଣି କେବେ ଓ କେଉଁଠି ସାକ୍ଷାତ୍ ମିଳିବ ? ମନେ ହେଉଛି— ଏହା ଆମର ଶେଷ ସାକ୍ଷାତ । କାଳର ଗତି ମଧ୍ୟ ବିଚିତ୍ର । ମିଳନ ପରେ ବିଚ୍ଛେଦ ଏବଂ ଆନନ୍ଦ ପରେ ଦୁଃଖ ପ୍ରକୃତିର ନିୟମ । ଆମ ଦୁହିଙ୍କ ସାକ୍ଷାତ ପରେ ହଠାତ୍ ବିଚ୍ଛେଦ ଆସି ଉପସ୍ଥିତ ହୋଇଛି । ମୋର ଅନୁରୋଧ, ଆପଣ ମୋତେ ମନେ ପକାଇ ବେଳେ ବେଳେ ସ୍ମରଣ କରିବେ ।"

ଉଦ୍ଧବଙ୍କ ମୁଖରୁ ବିଚ୍ଛେଦର ସମ୍ବାଦ ଶୁଣି ବିଦୁର କଇଁ କଇଁ ହୋଇ କାନ୍ଦି ଉଠିଲେ । ସେ ଉଦ୍ଧବଙ୍କ ପାଦଧୂଳି ନେବାକୁ ଉଦ୍ୟତ ହୁଅନ୍ତେ, ସେ ତାଙ୍କୁ ଆଲିଙ୍ଗନ ପାଶରେ ଆବଦ୍ଧ କରିନେଲେ । ଅନେକ ସମୟ ପର୍ଯ୍ୟନ୍ତ ଦୁହେଁ ସେହିପରି ପ୍ରେମାବେଶରେ ଆଲିଙ୍ଗନବଦ୍ଧ ହୋଇ ରହିଲେ । ଦୁହିଁଙ୍କର ମିଳନରେ ଯମୁନା ମଧ୍ୟ ସ୍ତବ୍ଧ ହୋଇଗଲା ।

କେତେ ସମୟ ପରେ, ଦୁହେଁ ଦୁହିଁଙ୍କୁ ପ୍ରଣାମକରି ପରସ୍ପରଠାରୁ ବିଦାୟ ନେଲେ । ଏହାପରେ ଉଦ୍ଧବ ଯମୁନାର କୂଳେ କୂଳେ ବଦରିକା ବନକୁ ଗମନ କଲେ । ବିଦୁର ସେହିଠାରେ ଛିଡ଼ାହୋଇ ଉଦ୍ଧବଙ୍କ ଗତିପଥକୁ ଦୀର୍ଘ ସମୟ ପର୍ଯ୍ୟନ୍ତ ଚାହିଁ ରହିଲେ । ସେ ଚକ୍ଷୁର ଅନ୍ତରାଳକୁ ଚାଲିଯିବା ପରେ ବିଦୁର ଯମୁନାର ବାଲୁକାମୟ ଶଯ୍ୟାରେ ଅସହାୟ ଭାବରେ ଢଳି ପଡ଼ିଲେ ।

## ଛପ୍ପୟ

"ମୁନି ମୈତ୍ରେୟ ସମୀପ କହୀ ହରି ନେ ୟହ ବାନୀ
ମୋର ଭକ୍ତ ହୈ ବିଦୁର ପରମ ପ୍ରିୟ ଅତିଶୟ ଜ୍ଞାନୀ ।।
ତିନ କୁଁ, ମୋରେ ଜ୍ଞାନ ଅବସି ମୁନିବର ଉପଦେସେଂ
ଜନ କୁଁ ସୁମିରେ ଶ୍ୟାମ ସଦହୈ ତିନକୂଁ କୈସେଂ ।।
ଆପ ପଧାରେ ଗଙ୍ଗାତଟ ହୌଁ ବଦରୀବନ ଜାଇକେଂ
ହରି ଆରାଧନ କରୌଂ ତହଁ କନ୍ଦମୂଲ ଫଲ ଖାୟକେଂ ।।"



# ବିଦୁରଙ୍କ ହରିଦ୍ୱାର ଗମନ

"ଆତ୍ମାନଂ ଚ କୁରୁଶ୍ରେଷ୍ଠ କୃଷ୍ଣେନ ମନସେକ୍ଷିତମ୍
ଧ୍ୟାୟନ୍ ଗତେ ଭାଗବତେ ରୁରୋଦ ପ୍ରେମବିହ୍ୱଳଃ ॥
କାଳିନ୍ଦ୍ୟାଃ କତିଭିଃ ସିଦ୍ଧ ଅହୋଭିର୍ଭରତର୍ଷଭଃ
ପ୍ରାପଦ୍ୟତ ସ୍ୱଃ ସରିତଂ ଯତ୍ର ମିତ୍ରାସୁତୋ ମୁନିଃ ॥"

(ଭାଗବତ—୩।୪।୩୫।୩୬)

## ଛପ୍ପୟ

"କୀହ୍ନୀ ହରନେ ସୁରତ ଦୀନ କୀ ଅନ୍ତ ସମୟ୍ମେ ମହଁ
ବିଦୁର ଭୟେ ଅତି ବିକଲ ଗିରେ ମୂର୍ଛିତ ହ୍ୱୈକେ ତହଁ ॥
କରିକେଂ ଦଣ୍ଡ ପ୍ରଣାମ ଚଲେ ଉଦ୍ଧବ ବଦରୀବନ
ବିଦୁର ଭୟେ ଜ୍ୟେଁ । ଦୁଃଖିତ କୃପଣ କୋ ଜେୟା ଖୋୟେଧନ ॥
କୃଷ୍ଣକଥା ସବରୀ ସୁନୀ ସଂସ୍କାର ପିଛଲେ ଜଗେ
ସୁମିର ସୁମିର ଲୀଳା ଲଲିତ ତାହି ମାର ରୋଓ୍ୱନ ଲଗେ ॥"

ଅର୍ଥାତ୍—ଶୁକଦେବ କହୁଛନ୍ତି—"ହେ କୁରୁକୁଳ ତିଳକ, ବିଦୁର ଏହା ଶୁଣିବା ମାତ୍ରେ ମନେ ମନେ ଉଚ୍ଛ୍ୱସିତ ଆନନ୍ଦରେ ଅଧୀର ହୋଇ ଉଠିଲେ ଏବଂ ତାଙ୍କ ଚକ୍ଷୁରୁ ପ୍ରେମାଶ୍ରୁ ନିର୍ଗତ ହେବାକୁ ଲାଗିଲା । ହେ ଭରତବଂଶାବତଂସ ରାଜନ୍, ଏହାପରେ ପରମସିଦ୍ଧ ବିଦୁର ଯମୁନାର କୂଳେ କୂଳେ ଅଗ୍ରସର ହୋଇ ମୈତ୍ରେୟଙ୍କ ଆଶ୍ରମ ହରିଦ୍ୱାରଠାରେ ଉପସ୍ଥିତ ହେଲେ ।

ସଂସାରରେ ସର୍ବଶ୍ରେଷ୍ଠ ସୁଖ ହେଉଛି—ପ୍ରକୃତ ବନ୍ଧୁଙ୍କ ସହିତ ମିଳିତ ହେବା । ଦୁଃଖ ହେଉଛି—ବନ୍ଧୁର ବିଚ୍ଛେଦ, ଶ୍ରୀକୃଷ୍ଣଙ୍କ ପ୍ରତି ଅସଦାଚରଣ କରିଥିବାରୁ, ବିଦୁର ତାଙ୍କର ପରିଜନମାନଙ୍କଠାରୁ ଦୂରେଇ ଆସିଥିଲେ, ଯେଉଁମାନେ

ଭଗବତ୍‌ବହିର୍ମୁଖ ବ୍ୟକ୍ତି, ସେମାନେ ଆତ୍ମୀୟ ହୋଇଥିଲେ ହେଁ ଶତ୍ରୁଠାରୁ ଅଧିକ ଭୟଙ୍କର, ଯେଉଁମାନେ ଭଗବତ୍ ବିଶ୍ୱାସୀ, ସେମାନେ ଯେତେ ପର ହେଲେ ମଧ୍ୟ ପ୍ରତ୍ୟେକ ସାଧୁସନ୍ଥଙ୍କର ଅତ୍ୟନ୍ତ ପ୍ରିୟ ହୋଇ ଥାଆନ୍ତି ।

ଶ୍ରୀଶୁକଦେବ କହିଲେ—"ହେ ରାଜନ୍ ! ଉଦ୍ଧବ ଚାଲିଯିବା ପରେ ବିଦୁର ଦୁଃଖରେ ପରିଶ୍ରାନ୍ତ ହୋଇଉଠିଲେ । ଶ୍ରୀକୃଷ୍ଣ ତାଙ୍କୁ ଶେଷ ମୁହୂର୍ତ୍ତରେ ସ୍ମରଣ କରି ଥିବାରୁ, ସେ ପ୍ରଭୁଙ୍କ ଦୟାଳୁତା ଲାଗି ମୁହ୍ୟମାନ ହୋଇଥିଲେ ହେଁ ଉଦ୍ଧବଙ୍କ ପରି ଜଣେ ଅନୁରାଗୀ ଭକ୍ତଙ୍କଠାରୁ ପୃଥକ୍ ହେବା ଫଳରେ ସେ ବ୍ୟାକୁଳ ହୋଇ ବନ୍ଧୁଙ୍କ ବିରହରେ ଭରିଁ ଭରିଁ ହୋଇ କାନ୍ଦି ଉଠିଲେ ।"

ଏହା ଶୁଣି ମହାରାଜ ପରୀକ୍ଷିତ ପଚାରିଲେ—"ମହାରାଜ ! ଆପଣତ ଉଦ୍ଧବଙ୍କୁ ବହୁତ ପ୍ରଶଂସା କରୁଛନ୍ତି; ତାଙ୍କଠାରେ ଏପରି କି ବୈଶିଷ୍ଟ୍ୟ ଥିଲା ଯେ ? ତା'ପରେ, ସମୁଦାୟ ଯଦୁବଂଶୀ ଧ୍ୱଂସ ହୋଇଯିବା ପରେ, ସେ କିପରି ସେଥିରୁ ଛାଡ଼ି ପାଇଗଲେ ? ବ୍ରାହ୍ମଣଙ୍କ ଅଭିଶାପରେ ଯଦୁ, ଭୋଜ, ବୃଷ୍ଣି, ଅନ୍ଧକ ତଥା ସାତ୍ୱତ ଆଦି ବଂଶର ସମସ୍ତ ବ୍ୟକ୍ତି ଧ୍ୱଂସ ହୋଇଗଲେ, ଏପରିକି, ବ୍ରହ୍ମା ଓ ଦେବତା ମାନଙ୍କର ଅଧୀଶ୍ୱର ତଥା ଭୁବନମୋହନ ଶ୍ରୀକୃଷ୍ଣ ମଧ୍ୟ ଇହଧାମ ତ୍ୟାଗ କରିଗଲେ; କିନ୍ତୁ ସେହି ଧ୍ୱଂସ ଲୀଳା ମଧ୍ୟରୁ ଭଗବାନ୍ ଉଦ୍ଧବଙ୍କୁ ରକ୍ଷା କରିଗଲେ କାହିଁକି ?"

ଏହି ପ୍ରଶ୍ନ ଶୁଣି ଶ୍ରୀଶୁକଦେବ ହସି ହସି କହିଲେ—"ରାଜନ ! ଭଗବାନ କେବେହେଲେ କୌଣସି ବସ୍ତୁକୁ ସମୂଳେ ନାଶ କରନ୍ତିନାହିଁ । ମୂଳ ନାଶ ହୋଇଗଲେ, ଲୀଳା ଶେଷ ହୋଇଯିବ ଭାବି ନଟବର ମୂଳର ସୁରକ୍ଷା କରି ଥାଆନ୍ତି । ସେ ନିତ୍ୟ ନୂତନ କ୍ରୀଡ଼ା କରିବାରେ ଆଗ୍ରହୀ । କୃଷକ କ୍ଷେତରୁ ଶସ୍ୟ କାଟିନେଲେ ମଧ୍ୟ ଗୃହ ମଧ୍ୟରେ ବୀଜ ଯତ୍ନରେ ସାଇତି ରଖିଥାଏ । କାରଣ ପୁଣି ସେଇ ବୀଜରୁ ନୂତନ ଶସ୍ୟ ଉତ୍ପାଦିତ ହୋଇପାରିବ । ବୀଜ ଦୁଇ ପ୍ରକାର— ଗୋଟିଏ ହେଉଛି ନାଦବୀଜ, ଅନ୍ୟଟି ହେଉଛି ବିନ୍ଦୁବୀଜ । ନାଦ ଓ ବିନ୍ଦୁରୁ ହିଁ ସୃଷ୍ଟି ଓ ମୁକ୍ତି । ଯେଉଁଠି ନାଦ ଓ ବିନ୍ଦୁର ଅସ୍ତିତ୍ୱ ନାହିଁ, ସେଠାରେ ସୃଷ୍ଟି ଓ ମୁକ୍ତିର ଅସ୍ତିତ୍ୱ ସମ୍ଭବ ହେବ କିପରି ?

"କଳିଯୁଗରେ ଅଧର୍ମ ହେତୁରୁ ସୂର୍ଯ୍ୟବଂଶ ଓ ଚନ୍ଦ୍ରବଂଶ ଧ୍ୱଂସ ହୋଇଯିବେ । ସେହି ବଂଶଦ୍ୱୟର ସୁରକ୍ଷା ନିମିତ୍ତ ଭଗବାନ୍ ଏବଠୁ ଉପାୟ କରିଛନ୍ତି । ତୁମ ବଂଶର 'ଦେବାପି' ଓ ସୂର୍ଯ୍ୟବଂଶ 'ମରୁ' ଏହି ଦୁଇଜଣ ରାଜା କଲାପ ଗ୍ରାମରେ ଗୁପ୍ତଭାବରେ ତପସ୍ୟା କରୁଛନ୍ତି । ଯଦୁବଂଶର ପରମ୍ପରାର ସୁରକ୍ଷା ନିମିତ୍ତ ଭଗବାନ୍ ନିଜର ପୌତ୍ର 'ବଜ୍ର'ଙ୍କୁ ସଂହାର ଲୀଳାରୁ ରକ୍ଷା କରିଛନ୍ତି । ତତ୍ପରେ ଭଗବାନ୍ ମନେ ମନେ ବିଚାର କଲେ—"ମୁଁ ଇହଧାମ ତ୍ୟାଗ କରି ଚାଲିଯିବା ପରେ, ମୋର ଜ୍ଞାନକୁ ଜନ ସମାଜରେ ପ୍ରଚାର କରିବା ପାଇଁ ଜଣେ

ସୁଦକ୍ଷ ବ୍ୟକ୍ତି ଆବଶ୍ୟକ, ଅନ୍ୟଥା ଏହି ପରମ ରହସ୍ୟମୟ ଜ୍ଞାନ ସଂସାରରୁ ଲୋପ ପାଇଯିବ । ଜନସାଧାରଣ ନାନାପ୍ରକାର ଭଣ୍ଡାମୀରେ ମଗ୍ନ ହୋଇ ପାପବୃଦ୍ଧି ହୋଇଯିବେ । ତେଣୁ ସେ ଉଦ୍ଧବଙ୍କୁ ସେଥିପାଇଁ ଯୋଗ୍ୟ ବ୍ୟକ୍ତି ବୋଲି ବିଚାର କରି, ବ୍ରାହ୍ମଣଙ୍କ ଅଭିଶାପ ଜ୍ୱାଳାରୁ ତାଙ୍କୁ ରକ୍ଷା କରିଥିଲେ । ସେ ନିଜର ଉପସ୍ୟା-ଦ୍ୱାରା ସଂସାରର ସପକ୍ଷରରୁ ମୁକ୍ତ କରିବା ପାଇଁ ଈଶ୍ୱରଙ୍କ ଆଶୀର୍ବାଦ ତଥା ଜ୍ଞାନୋପଦେଶ ଲାଭ କରିଥିଲେ । ତେଣୁ ଲୋକକଲ୍ୟାଣ ଲାଗି ଉଦ୍ଧବ ଶ୍ରୀକୃଷ୍ଣଙ୍କ ଯୋଗ୍ୟ ଭକ୍ତ ଭାବରେ ଯଦୁବଂଶର ଧ୍ୱଂସଲୀଳାରୁ ରକ୍ଷା ପାଇଥିଲେ ।'

"ରାଜନ୍ ! ଭଗବାନ୍ ହେଉଛନ୍ତି—ସତ୍ୟସଂକଳ୍ପର ସ୍ୱରୂପ, ତାଙ୍କର ଅଭିଳାଷ କେବେହେଲେ ବ୍ୟର୍ଥ ହୁଏ ନାହିଁ । ସେ ଯାହା ଚିନ୍ତା କରନ୍ତି, ତାହା ତତ୍‌କ୍ଷଣାତ୍ କାର୍ଯ୍ୟରେ ପରିଣତ ହୋଇଯାଏ । ସେ ଉଦ୍ଧବଙ୍କୁ ସମୁଚିତ ଜ୍ଞାନଦୀକ୍ଷା ଦେଇ ବଦରିକାଶ୍ରମକୁ ପଠାଇଥିଲେ । ମାର୍ଗ ମଧ୍ୟରେ ପରମ ଭାଗବତ ବିଦୁରଙ୍କ ସହିତ ତାଙ୍କର ସାକ୍ଷାତ୍ ହୋଇଗଲା । ସେ ଦୁହେଁ ଗୋଟିଏ ରାତି ଭଗବତ୍ ବିନୋଦରେ ଯାପନ କରିବା ପରେ ପ୍ରଭାତରୁ ପୁଣି ନିଜ ନିଜର କର୍ତ୍ତବ୍ୟ ମାର୍ଗରେ ଅଗ୍ରସର ହେଲେ ।

ଉଦ୍ଧବ ଚାଲିଯିବା ପରେ ବୃନ୍ଦାବନର ପ୍ରାକୃତିକ ଶୋଭାସମ୍ପଦ ବିଦୁରଙ୍କୁ ଶୂନ୍‌ଶାନ୍ ପରି ବୋଧହେଲା । ପକ୍ଷୀମାନଙ୍କ କଳକୂଜନ ତାଙ୍କୁ କରୁଣ କ୍ରନ୍ଦନର ରୋଳ ପରି ଶୁଣାଗଲା । କୁଳୁକୁଳୁନାଦିନୀ ଯମୁନା ତାଙ୍କୁ ମ୍ଳାନମୁଖୀ ଗୋପିକାଙ୍କ ପରି ତାଙ୍କ ଆଖି ଆଗରେ କରୁଣ ମୂର୍ଚ୍ଛନା ତୋଳି ଦେଲା । ଉଦ୍ଧବଙ୍କ ଉପସ୍ଥିତି ସମୟରେ ବୃନ୍ଦାବନ ତାଙ୍କୁ ଯେତେ ଆକର୍ଷଣବୋଧ ହେଉଥିଲା, ସେତିକି କରୁଣମୂର୍ତ୍ତି ଭାବରେ ତାଙ୍କ ଆଗରେ ପ୍ରତିଭାତ ହେଲା । ଶ୍ରୀକୃଷ୍ଣଙ୍କ ବିରହ ଓ ଉଦ୍ଧବଙ୍କ ଅନୁପସ୍ଥିତି ବିଦୁରଙ୍କ ପକ୍ଷରେ ଅସହ୍ୟ ହୋଇଉଠିଲା । ଜଣେ ଭକ୍ତ ପକ୍ଷରେ ଏହା ଆଦୌ ଅସମ୍ଭବ ନୁହେଁ । ସେ ତାଙ୍କର ସମସ୍ତ ଆତ୍ମୀୟଙ୍କୁ ଛାଡ଼ି ଆସିଥିଲେ । ଏହି ଦୀର୍ଘ ଯାତ୍ରାକାଳ ମଧ୍ୟରେ ସେ ଜଣେହେଲେ କୌଣସି ପରିଚିତ ବ୍ୟକ୍ତିଙ୍କ ସହିତ ସାକ୍ଷାତ୍ କରି ନ ଥିଲେ; କିନ୍ତୁ ଯାତ୍ରାର ଶେଷ ମୁହୂର୍ତ୍ତରେ ସେ ନିଜର ବାଲ୍ୟ ସଖା ଉଦ୍ଧବଙ୍କୁ ଦେଖି ବେଶ୍ ସରସ ହୋଇ ଉଠିଥିଲେ । ସେ ନିର୍ମୋହୀଙ୍କ ପରି ତାଙ୍କୁ ଛାଡ଼ି ଚାଲିଯିବା ଫଳରେ, ତାଙ୍କ ମନକୁ ଦୁଃଖ ଆବୋରି ବସିଲା । ବିଧିର କି ବିଡ଼ମ୍ବନା ! ସେହି ସଂଯୋଗ ଓ ବିଯୋଗ ତାଙ୍କ ମନରେ ଗଭୀର ରେଖାପାତ କରିଥିଲା; କିନ୍ତୁ ଉପାୟ କ'ଣ ? ପ୍ରତ୍ୟେକଙ୍କର କର୍ମପନ୍ଥା ପୃଥକ୍, ପ୍ରାରବ୍ଧ ଆଗରେ କାହାରି ଆୟତ୍ତ ନାହିଁ । ସୁତରାଂ ପଥର ରଖି ବିଦୁର ସବୁ କିଛି ସହିବାକୁ ଲାଗିଲେ ।

ସେ ଅନେକ ସମୟ ପର୍ଯ୍ୟନ୍ତ କାନ୍ଦିବାକୁ ଲାଗିଲେ । କାନ୍ଦି କାନ୍ଦି ସେ ମନକୁ ହାଲୁକା କରି ନେଲେ । ତା'ପରେ ସେ ଧୈର୍ଯ୍ୟ ଧାରଣ କରି ଉଦ୍ଧବଙ୍କ

ଉଦ୍ଦେଶ୍ୟରେ ପ୍ରଣାମ ଜଣାଇଲେ, ସେ ଶେଷଥର ଲାଗି ବୃନ୍ଦାବନର ଧୂଳିକଣା-ଗୁଡ଼ିକୁ ପ୍ରଣାମ ଜଣାଇ, ସେଠାରୁ ଦୁଃଖିତ ମନରେ ବିଦାୟ ନେଲେ ।

ଯେଉଁ ପ୍ରଭୁ ଲୀଳା ମନୁଷ୍ୟ ରୂପ ଧାରଣ କରିଥିଲେ, ଯେ କେବଳ ଉଦ୍ଧବଙ୍କର ଗୁରୁ ନୁହଁନ୍ତି, ସମଗ୍ର ବିଶ୍ୱର ଗୁରୁ, ସେ ଇହଧାମ ତ୍ୟାଗ କରି ଚାଲି ଯାଇ ଥିବାରୁ, ବିଦୁରଙ୍କ ମନରେ ଅଶେଷ କଷ୍ଟ ଜାତ ହୋଇଥିଲା । ଯଦୁବଂଶ ଧ୍ୱଂସ ଫଳରେ ତାଙ୍କ ମନରେ ବଞ୍ଚି ରହିବାର ଆଉ ଲୋଭ ରହିଲା ନାହିଁ; କିନ୍ତୁ ଇହଲୀଳା ସାଙ୍ଗ କରୁଥିବା ସମୟରେ ପ୍ରଭୁ ତାଙ୍କୁ ସ୍ମରଣ କରିଥିବାରୁ, ସେ ସେହି ଲୋଭରେ କିଛିକାଳ ବଞ୍ଚି ରହିବାକୁ ଚାହୁଁଥିଲେ । ସେ ଭାବିଲେ—'ପ୍ରଭୁ ମୈତ୍ରେୟଙ୍କୁ ମୋତେ ଜ୍ଞାନୋପଦେଶ ଦେବାଲାଗି ଆଜ୍ଞା ଦେଇ ଯାଇଛନ୍ତି, ମୁଁ କୌଣସିମତେ ସେତକ ତାଙ୍କଠାରୁ ହାସଲ କରିବି ।' ଏହା ଚିନ୍ତା କରି କରି ସେ ଯମୁନାର କୂଳେ କୂଳେ କିଛି ବାଟ ଯିବା ପରେ, ଯମୁନା ପାର ହୋଇ ଗଙ୍ଗା ତଟ ପାର୍ଶ୍ୱ ଦେଇ ହରିଦ୍ୱାର ଅଭିମୁଖେ ଅଗ୍ରସର ହେଲେ ।

ସୂତ କହିଲେ—"ହେ ମୁନିମାନେ, ହରିଦ୍ୱାରଠାରେ ବିଦୁର ଓ ମୈତ୍ରେୟଙ୍କ ମଧ୍ୟରେ ଯେଉଁ ଜ୍ଞାନଚର୍ଚ୍ଚା ହେଲା, ମୁଁ ତାହା ଆପଣଙ୍କମାନଙ୍କୁ ଶୁଣାଇବି । ଆପଣମାନେ ସ୍ଥିର ଚିତ୍ତରେ ତାହା ଶ୍ରବଣ କରନ୍ତୁ ।"

## ଛପ୍ପୟ

"ବିଦୁର ସଁଗ ନହିଁ ଗୟେ ଚେତନା ଉଦ୍ଧବ ସଂଗଇ
ଗଈ, ଚେତନାଶୂନ୍ୟ ଭୟେ ବ୍ୟାକୁଲ ଦ୍ୱୈ ତବଈ ॥
ଧରେଁୟା ଧୀର ପୁନି ଉଠେ ଶୂନ୍ୟ ସବ ଦେଇ ଦିଖାଈ
ପୁନି କୃପାଲୁ କୀ କୃପା ୟାଦ ତବଈହେ ଆଈ ॥
ମୁନି ମୈତ୍ରେୟ ସମୀପ ଦ୍ୱୈ ତୁରତ ତହାଁ ତେଂ ଚଲି ଦୟେ
ସୁରସରିତଟ କୀ ବାଟ ଗହି ହରିଦ୍ୱାର ପହୁଁଚ ଭୟେ ॥"



# ହରିଦ୍ୱାରରେ ମୈତ୍ରେୟ ଓ ବିଦୁର

"ଦ୍ୱାରି ଦ୍ୟୁନଦ୍ୟା ଋଷଭଃ କୁରୂଣାଂ
ମୈତ୍ରେୟମାସୀନ ମଗାଧ ବୋଧମ୍ ।।
କ୍ଷତ୍ତୋପସୃତ୍ୟା ଚ୍ୟୁତଭାବ ଶୁଦ୍ଧଃ
ପପ୍ରଚ୍ଛ ସୌଶୀଲ୍ୟ-ଗୁଣାଭିତୃପ୍ତଃ ।।

( ଭାଗବତ ୩ । ୫ । ୧ )

ଛପ୍ପୟ

"ଯିତା ଗୋଦତେଂ ଜହାଁ ଅବନୀ ପି ଆଇଂ ଗଙ୍ଗା।
ହରହର ଗର୍ଜ୍ଜନ କରତ ତାଲ ଦେଂ ତାଲ ଦେ ତରଲ ତରଙ୍ଗା ।।
କୁଶାବର୍ତ୍ତ ଅତ ବିମଲ ଦ୍ୱାର ଗଙ୍ଗା ମାୟାପୁର
ସପ୍ତ ସ୍ରୋତ ତେଂ ବହେ ଦେବସର ଅତ ଉମଗେ ଉର ।।
ବାସ କରେ ତହଁ ଭକ୍ତବର ମୁନିମୈତ୍ରେୟ କୃପାୟତନ
ଭୟେ ବିଦୁର ସନ୍ତୁଷ୍ଟ ଅତ ସୁଠି ସ୍ୱଭାବ ଲଖି ମୁଦିତ ମନ ।।"

ଅର୍ଥାତ୍—ଶ୍ରୀଶୁକଦେବ ପରୀକ୍ଷିତଙ୍କୁ କହୁଛନ୍ତି—"ହେ ରାଜନ୍ ! ଅଚ୍ୟୁତଙ୍କ ଭାବନାରେ ତଲ୍ଲୀନ କୁରୁଶ୍ରେଷ୍ଠ ବିଦୁର ହରିଦ୍ୱାର କ୍ଷେତ୍ରରେ ପହଞ୍ଚିଗଲେ । ସେଠାରେ ସେ ଅଗାଧ ଜ୍ଞାନସମ୍ପଦରେ ଭୂଷିତ ମହାମୁନି ମୈତ୍ରେୟଙ୍କୁ ଶାନ୍ତ ଚିତ୍ତରେ ବସିଥିବାର ଲକ୍ଷ୍ୟକଲେ । ତାଙ୍କର ସାଧୁ ସ୍ୱଭାବରେ ମୁଗ୍ଧ ହୋଇ ବିଦୁର ତାଙ୍କୁ ପ୍ରଶ୍ନ ପଚାରିବାକୁ ଉଦ୍ୟତ ହେଲେ ।"

ଯେଉଁମାନଙ୍କ ମନରେ ସତ୍‌ଶିକ୍ଷା ଲାଭର ଇଚ୍ଛା ଜାଗ୍ରତ ହୋଇନାହିଁ, କିମ୍ବା ଯେଉଁମାନେ କେବେହେଲେ ସଦ୍‌ଗୁରୁ ପାଇବା ଲାଗି ବ୍ୟାକୁଳ ହୋଇ

ନାହାନ୍ତି; ସେମାନେ ଏହାର ରସ ଅନୁଭବ କରି ପାରିବେ ନାହିଁ । ହୃଦୟରେ ଜ୍ଞାନପ୍ରାପ୍ତିର ଉତ୍କଣ୍ଠା ଜାଗ୍ରତ ହେଲେ, ସମଗ୍ର ସଂସାର ତାଙ୍କୁ ଶୂନ୍ୟ ପରି ବୋଧ ହେବ । ପୁତ୍ରହୀନା ସ୍ତ୍ରୀ ଗୋଟିଏ ସନ୍ତାନର ମୁଖ ଦେଖିବା ଲାଗି ଯେପରି ବ୍ୟାକୁଳ ହୁଏ, ନବବଧୂର ମୁଖ ଦେଖିବା ଲାଗି ସୁରସିକ ପୁରୁଷ ଯେପରି ଉତ୍କଣ୍ଠିତ ହୋଇଥାଏ; କିମ୍ବା ଯେପରି ସାଧ୍ୱୀ ପ୍ରୋଷିତଭର୍ତ୍ତୃକା ନାରୀ ଯେପରି ବିଦେଶାଗତ ପତିର ମୁଖ ଦେଖିବା ଲାଗି ଉଦ୍‌ଗ୍ରୀବ ହୋଇଥାଏ, ତା'ଠାରୁ ଶତଗୁଣ ଇଚ୍ଛା, ସଦ୍‌ଗୁରୁଙ୍କ ସାନ୍ନିଧ୍ୟ ଲାଗି ସତ୍‌ଶିଷ୍ୟର ମନରେ ଜାଗ୍ରତ ହୋଇଥାଏ । ପ୍ରଥମେ ଆମେ କାହାରି ମୁହଁରୁ ଜ୍ଞାନୀ-ଗୁରୁଙ୍କ ସମ୍ବନ୍ଧରେ ଶୁଣିବାପରେ, ଆମ ମନରେ ତାଙ୍କ ପ୍ରତି ଶ୍ରଦ୍ଧା ଉତ୍ପନ୍ନ ହୋଇଥାଏ । ଦୂରରୁ ତାଙ୍କର ପରିଚୟ ପାଇ ତାଙ୍କ ସହିତ ମିଳିତ ହେବା ଲାଗି, ମନରେ ଶ୍ରଦ୍ଧା ଜାତ ହୁଏ । ତତ୍ପରେ ସମ୍ପର୍କରେ ଆସିବା ପରେ, ତାଙ୍କ ସଦ୍‌ଗୁଣରେ ମୁଗ୍ଧହୋଇ ମନରେ ପ୍ରୀତି ଜାତ ହୋଇଥାଏ । ଏହି ପ୍ରୀତିରୁ ହିଁ ଜାତ ହୋଇଥାଏ ଆପଣାର କରିନେବା ଭଳି ମନୋଭାବ ।

ଅନେକ ସମୟରେ ଆମେ ଦୂରରୁ କାହାରି ସମ୍ବନ୍ଧରେ କିଛି ଶୁଣି, ତାଙ୍କ ପ୍ରତି ଶ୍ରଦ୍ଧା ଉତ୍ପନ୍ନ ହୋଇଥାଏ; କିନ୍ତୁ ତାଙ୍କ ସହିତ ସମ୍ପର୍କ ସ୍ଥାପିତ ହେବାପରେ ହୁଏତ ସେପରି ପ୍ରୀତି ଉତ୍ପନ୍ନ ହୁଏନାହିଁ । ଦୂରରୁ ତାଙ୍କ ସମ୍ବନ୍ଧରେ ଶୁଣି ଆମେ ତାଙ୍କର କଳା ପ୍ରତି ଆକର୍ଷିତ ହୋଇଥାଉଁ । ହୃଦୟର ଚରିତ୍ରର କିମ୍ବା ଶ୍ରେଷ୍ଠ ଲେଖକ ସଦାଗୃହୀ ହୋଇଥିବେ, ଏହାର କାରଣ କିଛି ନାହିଁ । ଜଣେ ବ୍ୟକ୍ତି କଳା ଓ ଆଚରଣରେ ନିପୁଣ ହେବା ହୁଏତ ସମ୍ଭବ ହୋଇ ନ ପାରେ । ଏପରି ଅବସ୍ଥାରେ କଳାକାରଙ୍କ କଳା କାରିଗରୀ ପ୍ରତି ଆମେ ଆକୃଷ୍ଟ ହେଉଥିଲେହେଁ ତାଙ୍କର ଜୀବନଧାରା ଆମକୁ ଆକର୍ଷିତ କରି ନ ପାରେ ।

ବିଦୁର ଉଦ୍ଧବଙ୍କଠାରୁ ମୈତ୍ରେୟଙ୍କ ସମ୍ବନ୍ଧରେ କେତେ କଥା ଶୁଣି ତାଙ୍କ ପ୍ରତି ଆକୃଷ୍ଟ ହୋଇଉଠିଲେ । ଯେଉଁ ମହର୍ଷିଙ୍କୁ ସ୍ୱୟଂ ଭଗବାନ ମୋତେ ଉପଦେଶ ଦେବା ଲାଗି ଦାୟିତ୍ୱ ଦେଇଛନ୍ତି, ସେ ନିଶ୍ଚୟ ଜଣେ ମହାନ୍ ବ୍ୟକ୍ତି, ଏଥିରେ ବିଦୁରଙ୍କ ମନରେ ସନ୍ଦେହ ରହିଲାନାହିଁ । କେବଳ ତାଙ୍କ ମନରେ ସନ୍ଦେହ ଜାତ ହୋଇଥିଲା, ଯେ ମୋତେ ସତ୍ପାତ୍ର ବୋଲି ଭାବିବେ ତ ? ମୁଁ ଶୂଦ୍ର ମାତାଙ୍କ ଗର୍ଭରୁ ଉତ୍ପନ୍ନ ହୋଇଛି । ମୋର ଦେହ ଜଣେ ହେଲେ ଆତ୍ମୀୟ ନାହାନ୍ତି । ମୁଁ ଜଣେ ଧନହୀନ ତଥା ପରିତ୍ୟକ୍ତ ବ୍ୟକ୍ତି । ମୁଁ କେଉଁ ବ୍ୟକ୍ତିତ୍ୱବଳରେ ଯାଇ ଏପରି ଜଣେ ମହାତ୍ମାଙ୍କ ସହିତ ଆଲୋଚନା କରିବି ?"

ଏହିପରି ଚିନ୍ତାକୁଳ ମନରେ ବିଦୁର ଯାଇ ମୈତ୍ରେୟଙ୍କ ଆଶ୍ରମରେ ପହଞ୍ଚିଲେ । ତାଙ୍କ ଆଶ୍ରମଟି ଥିଲା ନିତାନ୍ତ ଆଡ଼ମ୍ବରଶୂନ୍ୟ । ସେ ମାତ୍ର ଜଣେ

ଦୁ’ ଜଣ ଶିଷ୍ୟଙ୍କ ସହିତ ଆଶ୍ରମରେ ବାସ କରୁଥିଲେ । ଆଶ୍ରମଟି ଥିଲା ତାଙ୍କର ଏକ ସ୍ୱଚ୍ଛ ତଥା ପ୍ରାକୃତିକ ଅବେଷ୍ଟନୀ ମଧ୍ୟରେ । ସେଠାରେ ଶାନ୍ତିର ସାମ୍ରାଜ୍ୟ ବିରାଜମାନ କରୁଥିଲା । ଆଶ୍ରମର ନିକଟରେ ସ୍ୱଚ୍ଛସଲିଳା ଭାଗୀରଥୀ କୁଳୁକୁଳୁ ନାଦରେ ପ୍ରବାହିତ ହେଉଥିଲା । ସେହି ନଦୀ ତଟରେ ସୁନ୍ଦର ସୁନ୍ଦର ପଥର ଗୁଡ଼ିଏ ସୁଶୋଭିତ ହୋଇଥିଲା ! ତାକୁ ଦେଖିଲେ ମନେ ହେଉଥିଲା ସତେ ଯେପରି ପିତା-ଗୃହରୁ ଆସିବାବେଳେ ବାଳିକା ‘ଅଳକନନ୍ଦା’ଙ୍କ ସାଥିରେ ହିମାଳୟ ଗୁଡ଼ିଏ ରଙ୍ଗ ବିରଙ୍ଗର ଉପଢୌକନ ପଠାଇଛନ୍ତି । ଅଳକାନନ୍ଦା ଖରସ୍ରୋତରେ ନିଜ ପତି ସାଗର ସହିତ ମିଳିତ ହେବା ପାଇଁ ଧାଇଁଥିଲେ; କିନ୍ତୁ ତା’ର ଗତି ସହିତ ପାଦ ପକାଇ ସୁନ୍ଦର ପଥରଗୁଡ଼ିକ ବେଶୀ ଦୂର ଅଗସର ହୋଇ ନ ପାରି କୂଳରେ ପଡ଼ି ରହିଥିଲେ ।

ହରିଦ୍ୱାର ପାର ହେବା ପରେ, ଗଙ୍ଗା ଯୋଡ଼ିଏ ସୁବର୍ଣ୍ଣ ବାହୁରେ ପରିଶ୍ରାନ୍ତ ହୋଇ ଚାଲିଥିବା ତ୍ୟାଗପୂର୍ବକ ଆଗେଇ ଚାଲିଲେ । ହୁଏତ ସେହି ଉପଢୌକନର ମହତ୍ତ୍ୱ ସେ ଆଉ ଅନୁଭବ ନ କରି, ସେଇଠି କୂଳରେ ଫିଙ୍ଗି ଦେଇଗଲେ ।

ଗଙ୍ଗାଙ୍କ ସାଥିରେ ପ୍ରତିସ୍ପର୍ଦ୍ଧୀ ଗାଙ୍ଗୋତ୍ରୀରୁ ଆସିଥିବା ଅନେକ ଶ୍ରେଷ୍ଠ ବଡ଼ ପଥର ଖଣ୍ଡ ହରିଦ୍ୱାରରେ ରହିଗଲେ । ଧନ୍ୟ ସେହି ପାଷାଣ ଖଣ୍ଡ ! ସେମାନଙ୍କ ଅସ୍ତିତ୍ୱ ମଧ୍ୟ ଧନ୍ୟ ! ଜଗତ୍‌ପାବନୀ ତ୍ରିଭୁବନ ତାରିଣୀ ଗଙ୍ଗାଙ୍କ ସ୍ପର୍ଶରେ ତଥା ସିଦ୍ଧସାଧକଙ୍କ ଚରଣ ଧୂଳିର ସମ୍ପର୍କରେ ସେମାନେ ଅତ୍ୟନ୍ତ ପାବନ !

ଏହିପରି କେତେ କ୍ରୋଶ ଚାଲି ଚାଲି ବିଦୁର ଯାଇ ପହଞ୍ଚିଲେ ମୈତ୍ରେୟଙ୍କ ଆଶ୍ରମରେ । ସେ ଆଶ୍ରମ ଦ୍ୱାରରେ ପହଞ୍ଚି ଦେଖିଲେ, ମହର୍ଷି ଖଣ୍ଡିଏ ମୃଗଚର୍ମ ଉପରେ ଶାନ୍ତମୁଖମୁଦ୍ରାରେ ବସିଛନ୍ତି । ସେ ନିଜର ଭାବନାରେ ମୁଗ୍ଧ ହୋଇ ବ୍ରହ୍ମାନନ୍ଦସ୍ୱାଦ ଅନୁଭବ କରୁଛନ୍ତି । ତାଙ୍କୁ ଦେଖିବାମାତ୍ରେ ବିଦୁରଙ୍କ ଶରୀର ରୋମାଞ୍ଚିତ ହୋଇଗଲା । ସେ ଭୂମିରେ ଲୋଟିପଡ଼ି ମୁନିଙ୍କୁ ସାଷ୍ଟାଙ୍ଗ ପ୍ରଣାମ ଜଣାଇଲେ । ନିଜ ସମ୍ମୁଖରେ ସାଷ୍ଟାଙ୍ଗ ପ୍ରଣାମ କରିଥିବା ବିଦୁରଙ୍କୁ ଦେଖି ପଣ୍ଡିତ ମୈତ୍ରେୟ ଆନନ୍ଦରେ ପୁଲକିତ ହୋଇଉଠିଲେ । ତାଙ୍କର ମୁଖମଣ୍ଡଳ ଶାରଦୀୟ ଜ୍ୟୋତ୍ସ୍ନା ପରି ଝଲସି ଉଠିଲା । ସେ ତତ୍‌କ୍ଷଣାତ୍ ଆସନରୁ ଉଠିପଡ଼ି, ବିଦୁରଙ୍କୁ ତଳୁ ଉଠାଇ ଗାଢ଼ ଆଲିଙ୍ଗନ ପାଶରେ ଆବଦ୍ଧ କରିନେଲେ । ତାଙ୍କ ଶରୀରରୁ ଧୂଳି ଝାଡ଼ିଦେଇ, ପିଠିରେ ହାତ ବୁଲାଇ ବୁଲାଇ କହିଲେ—“ବିଦୁର ମହୋଦୟ ! ଆପଣ ଠିକ୍ ସମୟରେ ଆସି ଉପସ୍ଥିତ ହୋଇଛନ୍ତି । ମୁଁ ଆପଣଙ୍କ ପ୍ରତୀକ୍ଷାରେ ହିଁ ରହିଥିଲି । ଆପଣଙ୍କ ଶରୀର ସୁସ୍ଥ ତ ? ନିଜଧାମ ତ୍ୟାଗ କରିବା ସମୟରେ ସ୍ୱୟଂ ଭଗବାନ ମୋତେ ଆଦେଶ ଦେଇ କହିଛନ୍ତି—ମୁଁ ଆପଣଙ୍କୁ ପରମ ଜ୍ଞାନୋପଦେଶ ପ୍ରଦାନ କରିବି । ମୁଁ ଆଉ ଏହି ପାପପଙ୍କିଳ ସଂସାରରେ ଅଧିକ ଦିନ ରହିବାକୁ

ଗୃହୁଁ ନାହିଁ । ଯେଉଁ ପୃଥିବୀକୁ ପରମେଶ୍ୱର ଶ୍ରୀକୃଷ୍ଣ ତ୍ୟାଗ କଲେ, ତାହା ଏବେ ଅଧର୍ମର ସାମ୍ରାଜ୍ୟରେ ପରିଣତ ହୋଇଛି । ସେଠାରେ ଆଉ ଅଧିକ ଦିନ ରହିବା ନିରର୍ଥକ । ପ୍ରଭୁଙ୍କ ଆଦେଶ ପାଳନ କରିବା ମୋର ଏକମାତ୍ର ଅଭିଳାଷ । ତେଣୁ ଆପଣଙ୍କ ଜ୍ଞାନୋପଦେଶ ଦେଇ ମୁଁ ପରମପଦ ଲାଭ କରିବାକୁ ଚାହେଁ । ଏଥର ଆପଣ ମୋତେ ପରମାର୍ଥ ସମ୍ବନ୍ଧୀୟ ପ୍ରଶ୍ନ ପଚାରନ୍ତୁ । ମୁଁ ତଦନୁସାରେ ଉତ୍ତର ଦେବି ।"

ଶ୍ରୀଶୁକଦେବ କହିଲେ—ହେ ରାଜନ୍ ! ଏତକ କହି ମୈତ୍ରେୟ ବିଦୁରଙ୍କୁ ସ୍ୱାଗତ ଜଣାଇଲେ । ତାଙ୍କୁ ପିଇବା ଲାଗି ବିଶୁଦ୍ଧ ଜଳ, ଖାଇବା ଲାଗି ଫଳମୂଳ ଦେଇଥିଲେ । ସେ ମୁନି ମୈତ୍ରେୟଙ୍କଦ୍ୱାରା ପ୍ରଦତ୍ତ ଫଳମୂଳ ଭକ୍ଷଣ କରିବା ପରେ କିଛି ସମୟ ବିଶ୍ରାମ କରି ପ୍ରଶ୍ନ ପଚାରିବାକୁ ଉଦ୍ୟତ ହେଲେ ।"

### ଛପ୍ପୟ

"ଦେଖେ ମୁନି ଆସୀନ ପ୍ରେମ ମହଁ ତନ୍ମୟ ବିହ୍ୱଳ ।
ପରମ ଶାନ୍ତ ଗମ୍ଭୀର ନିରମୟ ନିରମଳ ନିଶ୍ଚଳ ॥
ଜାରିକେଂ ଦର୍ଶନ ଶୋକ ମୋହ ସବ ଭୟ ଭ୍ରମ ଭାଗେ ।
ଜାଇ ଦଣ୍ଡବତ ପରେ ଅବନୀ ପୈ ମୁନି କେ ଆଗେ ॥
କରତ ଦଣ୍ଡବତ ବିଦୁର କୁଁ ଲଖି ମୁନିବର ଠାଢ଼େ ଭୟେ ।
କରିବସ ତୁରତ ଉଠାଇକେଂ ନିଜ ହୃୟ ମେଂ ଚିପଟା ଲୟେ ।"



# ବିଦୁରଙ୍କ ପ୍ରଶ୍ନ

"ସୁଖାୟ କର୍ମାଣି କରୋତି ଲୋକୋ ।
ନ ତୈଃ ସୁଖଂ ବାନ୍ୟଦୁପାରମଂ ବା ।।
ବିନ୍ଦେତ ଭୂୟସ୍ତତ ଏବ ଦୁଃଖମ୍ ।
ଯଦତ୍ର ଯୁକ୍ତଂ ଭଗବାନ୍ ବଦେନ୍ନଃ ।।

(ଭାଗବତ ୩।୫।୨)

## ଛପ୍‌ପୟ

"ବିଧିବତ କରି ଆତିଥ୍ୟ କୁଶଲ ପୂଛୀ ସବ କୀ ମୁନି ।
କୁଛ କରିକେ ବିଶ୍ରାମ ଚଲାଈ ବାତ ବିଦୁର ପୁନି ।।
ହଁସି ବୋଲେ ମୁନି ବିଦୁର ! ଯଦି ହରି ତୁହ୍ମାରୀ କୀହ୍ନୀ ।
କରୁଁ ତୁହ୍ମେ ଉପଦେଶ ମୋହି ଯହ ଆୟସୁ ଦୀହ୍ନୀ ।।
ପୂଛୋ ଜୋ ଶଙ୍କା ତୁମହିଁ ସବ ସଂଶୟ ଅବ ହୀ ହରହୁଁ ।
ଜୋ ଉପଦେସେୟା ମୋହିଁ ହରି ସମାଧାନ ତାତେଂ କରହୁଁ ।"

ଅର୍ଥାତ୍—ବିଦୁର ମୈତ୍ରେୟଙ୍କୁ ପଚାରିଲେ—"ହେ ଭଗବନ୍ ! ସଂସାରରେ ସମସ୍ତେ ସୁଖପ୍ରାପ୍ତି ଲାଗି ସବୁ କର୍ମ କରନ୍ତି; କିନ୍ତୁ ତା' ଫଳରେ ସେମାନେ ଆଦୌ ସୁଖ ପାଆନ୍ତି ନାହିଁ କିମ୍ବା ଦୁଃଖରୁ ନିସ୍ତାର ପାଇପାରନ୍ତି ନାହିଁ । ବରଂ ସେମାନେ ଅଧିକ ଦୁଃଖ ଭୋଗ କରନ୍ତି । ଏ ସମ୍ବନ୍ଧରେ ଆପଣ ଯେଉଁ ଉପଦେଶ ଦେବାକୁ ମନେ କରୁଛନ୍ତି, ସେହି ଉପଦେଶ ମୋତେ ପ୍ରଦାନ କରନ୍ତୁ ।"

ବିଶ୍ୱରେ ଯେତେ ଜ୍ଞାନ ପ୍ରଦାୟକ ଗ୍ରନ୍ଥ ରହିଛି, ପ୍ରତ୍ୟେକର ମୂଳ ଉଦ୍ଦେଶ୍ୟ ହେଉଛି—ଦୁଃଖରୁ ନିବୃତ୍ତି ଲାଭ କରି ସୁଖ ପାଇବା । ପ୍ରତ୍ୟେକ

ଶାସ୍ତ୍ରଦ୍ୱାରା ନାନା ପ୍ରକାର ପ୍ରମାଣ ଉପସ୍ଥାପିତ କରି ଏହି ପ୍ରଶ୍ନର ଆଲୋଚନା କରିଛନ୍ତି । ଏଥିରୁ ମନେହେଉଛି—ସଂସାରର ସମସ୍ତ କର୍ମ କେବଳ ଦୁଃଖର ମୂଳ କାରଣ । ଏଥିରେ ସୁଖ ଆଦୌ ନାହିଁ; କିନ୍ତୁ ମଣିଷ ଚାହେଁ ସୁଖ । ସୁଖପ୍ରାପ୍ତି ଲାଗି ସେ ସର୍ବଦା ଯତ୍ନ କରିଥାଏ । କେହି କେବେହେଲେ ଦୁଃଖ ଚାହେଁ ନାହିଁ; କିନ୍ତୁ ସେହି ଦୁଃଖ ସର୍ବଦା ଆମକୁ ବାଧ କରୁଛି ।

ଏ ସମ୍ବନ୍ଧରେ ଏକାଗ୍ରତାର ସହିତ ବିଚାର କରିବା ପ୍ରତ୍ୟେକ ମନୁଷ୍ୟର କର୍ତ୍ତବ୍ୟ । ପ୍ରତ୍ୟେକ ବ୍ୟକ୍ତି ରାତି ଦିନ ପରିଶ୍ରମ କରି ଦୁଃଖରୁ ଉଦ୍ଧାର ପାଇବା ପାଇଁ ଚେଷ୍ଟା କରୁଛନ୍ତି । ଏହି ସମ୍ବନ୍ଧରେ ବିଦୁର ଭଲ ଭାବରେ ଜାଣିବା ଲାଗି ମୈତ୍ରେୟଙ୍କୁ ପ୍ରଥମ ପ୍ରଶ୍ନ ପଚାରିଥିଲେ ।

ବିଦୁର ସୁନ୍ଦର ଢଙ୍ଗରେ ମୈତ୍ରେୟଙ୍କୁ ପ୍ରଶ୍ନ କଲେ—"ହେ ମହର୍ଷି ! ସଂସାରର ପ୍ରତ୍ୟେକ ବ୍ୟକ୍ତି ଗ୍ରୀଷ୍ମ, ବର୍ଷା ଓ ଶୀତକୁ ଭ୍ରୂକ୍ଷେପ ନ କରି କାର୍ଯ୍ୟରତ ରହିଛନ୍ତି । ସେ ସମସ୍ତ କାର୍ଯ୍ୟର ଫଳରୁ ସୁଖ ପାଇବା ପାଇଁ ଅହରହ ବ୍ୟସ୍ତ ହୋଇ ଉଠୁଛି । ସମସ୍ତ ପ୍ରକାର ଚେଷ୍ଟା ପରେ ଯଦି ତା' କାର୍ଯ୍ୟର ଫଳ ମନୋନୁକୂଳ ନ ହୁଏ, ତେବେ ତାକୁ ଆଦୌ ସୁଖ ମିଳେନାହିଁ । ତେଣୁ ତା' ମନରେ ଅତୃପ୍ତି ରହିଯାଏ । ସେହିପରି ପ୍ରତ୍ୟେକ ବ୍ୟକ୍ତି ନିଜ ନିଜର ସାଧ୍ୟ ଅନୁସାରେ କାର୍ଯ୍ୟରେ ରତ ହୁଏ । ସେଥିପାଇଁ ବହୁ ଦୁଃଖ ସହ୍ୟ କରି ସଫଳତା ପ୍ରାପ୍ତି ଲାଗି ଚେଷ୍ଟା କରେ; କିନ୍ତୁ କାର୍ଯ୍ୟ ଶେଷରେ ଯଦି ତାକୁ ପ୍ରଶ୍ନ କରାଯାଏ— "କ'ଣ ଏବେ ତୁମେ ମନରୁ ଦୁଃଖ ଦୂର କରିଦେଇ ସୁଖ ଅନୁଭବ କରୁଛ କି ?"

ସେ ବ୍ୟକ୍ତିଟି ନିଶ୍ଚିତ ଭାବରେ କହିବ—"ନା, ମୁଁ ବହୁ ଚେଷ୍ଟା କଲି ଯେ, କିନ୍ତୁ ଫଳ ସେପରି ଆଶାଜନକ ହେଲାନାହିଁ ।"

ଏଥିରୁ ବେଶ୍ ଜଣାଯାଏ ଯେ, ମନୁଷ୍ୟମାନେ ଅହରହ ବ୍ୟସ୍ତତାର ସହିତ ଏଣେତେଣେ ବୁଲି, ନିଜର ସାମର୍ଥ୍ୟ ଅନୁସାରେ ପରିଶ୍ରମ କରି, ସଫଳତା ହାସଲ କରୁଥିଲେ ହେଁ, ସେ ସେଥିରେ ଆଦୌ ପରିତୃପ୍ତ ନୁହେଁ । ସେ ଆହୁରି ଅଧିକ ସୁଖ ପାଇବା ପାଇଁ ଆଶା କରେ । ଯେତେ ପାଇଲେ ମଧ୍ୟ ତା'ର ମନବୋଧ ହେଉନାହିଁ । ଅଧିକ ପାଇବା ଆଶାରେ ମନୁଷ୍ୟ ଅଧିକ ପରିଶ୍ରମରେ ଲାଗିପଡ଼ୁଛି । ଏଥିରୁ ଜଣାପଡ଼ୁଛି, ମନୁଷ୍ୟ ସର୍ବଦା ଅତୃପ୍ତ ଅବସ୍ଥାରେ ରହୁଛି । ଯେତେ ପାଇଲେ ମଧ୍ୟ ତା'ର ଆଶା ତୃପ୍ତ ହେଉନାହିଁ କିମ୍ବା ସେ ଦୁଃଖରୁ ନିବୃତ୍ତି ପାଇ ପାରୁନାହିଁ । ଭୋଗ୍ୟ ସାମଗ୍ରୀ ଯେତିକି ବଢ଼ୁଛି, ମଣିଷର ଲାଳସା ତତୋଽଧିକ ବୃଦ୍ଧି ପାଉଛି । ତେଣୁ ହେ ମୈତ୍ରେୟ ମହୋଦୟ ! ଦୁଃଖରୁ ତ୍ରାହି ପାଇବାର ଉପାୟ କ'ଣ ?"

ମୈତ୍ରେୟ ବିଦୁରଙ୍କ ପ୍ରଶ୍ନ ଶୁଣି କହିଲେ—"ହେ ବିଦୁର ! ପୁଣ୍ୟପ୍ରାପ୍ତି ଆଶାରେ ଆମମାନଙ୍କ ପରି ସାଧୁ ସନ୍ଥମାନେ ମଧ୍ୟ ଏଣେତେଣେ ବୁଲୁଛନ୍ତି । ଏଇ ଦେଖ, କିଛୁଦିନ ପୂର୍ବେ ଆମେ ପ୍ରଭାସ କ୍ଷେତ୍ରରେ ଥିଲେ । ଏବେ ହରିଦ୍ୱାରରେ ଅଛୁ । ପୁଣି ହୁଏତ କେତେଦିନ ପରେ ଆମେ ଏଠାରୁ ଅନ୍ୟତ୍ର ଚାଲିଯିବା । ସଂସାରୀ ବ୍ୟକ୍ତିମାନେ ଯେପରି ଭାବରେ ବୁଲୁଛନ୍ତି, ଆମ୍ଭେମାନେ ମଧ୍ୟ ସେହିପରି ଭାବରେ ବୁଲୁଥାଉଁ ।"

ଏହାର ଉତ୍ତର ଦେଇ କହିଲେ ବିଦୁର—"ମହାରାଜ ! ଆପଣଙ୍କ ଯାତ୍ରା ଓ ସାଧାରଣ ଲୋକଙ୍କ ଯାତ୍ରା ମଧ୍ୟରେ ଆକାଶ ପାତାଳ ପାର୍ଥକ୍ୟ ରହିଛି । ସାଧାରଣ ଲୋକମାନେ ନିଜ ନିଜର ଅଭିଳାଷର ପୂରଣ ଲାଗି ଏଣେତେଣେ ଧାଁ ଦଉଡ଼ ଲଗାଇଛନ୍ତି; କିନ୍ତୁ ଆପଣଙ୍କ ଯାତ୍ରା ମଧ୍ୟରେ ରହିଛି ଏକ ପରୋପକାର ଭାବନା । ଆପଣ ଜନସମାଜର ମଙ୍ଗଳ ଉଦ୍ଦେଶ୍ୟରେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାତ୍ରା କରୁଛନ୍ତି । ଆପଣଙ୍କ ଯାତ୍ରା ଫଳରେ ପାପତାପଗ୍ରସ୍ତ ଜନସମାଜର ପରମ କଲ୍ୟାଣ ହେଉଛି । ଆପଣ ଭଗବଦ୍‌ବାଣୀରେ ଲୋକମାନଙ୍କୁ ସଦ୍‌ଗତି ପ୍ରଦାନ କରୁଛନ୍ତି । ଆପଣଙ୍କ ପରି ସାଧୁ ସନ୍ଥମାନେ ପର୍ଯ୍ୟଟନରେ ନ ବାହାରିଲେ, ଲୋକମାନଙ୍କ ମନକୁ ଅଧିକ ମାତ୍ରାରେ ପାପତାପ ଗ୍ରାସ କରି ବସିବ । କାରଣ ସାଧୁମାନଙ୍କ ଉପଦେଶ ବିନା ବିଷୟାସକ୍ତ ମନୁଷ୍ୟଙ୍କ ମନରୁ ମୋହ ଦୂରହୋଇପାରିବ ନାହିଁ । ତେଣୁ ମହାତ୍ମାମାନଙ୍କ ବିଚରଣ ସଂସାରର ସୁଖର ମୂଳ କାରଣ । ତେଣୁ ସାଧାରଣ ମନୁଷ୍ୟଙ୍କ ଧନପ୍ରାପ୍ତି ଆଶାରେ ଏଣେତେଣେ ବିକ୍ଷିପ୍ତ ଚିନ୍ତାରେ ପରିଭ୍ରମଣ ଓ ସାଧୁ ସନ୍ଥଙ୍କ ତୀର୍ଥ ପର୍ଯ୍ୟଟନ ମଧ୍ୟରେ ପାର୍ଥକ୍ୟ ରହିଛି । ତେଣୁ ହେ ମହାତ୍ମା ! ଆପଣ ମୋତେ ସମୁଚିତ ଉପଦେଶ ପ୍ରଦାନ କରନ୍ତୁ । ଯାହା ଫଳରେ ପ୍ରତ୍ୟେକ ମନୁଷ୍ୟ ନିଜ ହୃଦୟରେ ପରମାତ୍ମାଙ୍କ ଦିବ୍ୟ ରୂପର ଦର୍ଶନ କରିପାରିବ । ଯେଉଁ ଜ୍ଞାନ ଫଳରେ ମନୁଷ୍ୟର ଅନ୍ତରାତ୍ମା ବିଶୁଦ୍ଧ ତଥା ପ୍ରଶାନ୍ତ ହୋଇ ପାରିବ, ଆପଣ ସେହି ପ୍ରକାର ଜ୍ଞାନର ଉପଦେଶ ଦେଇ ମୋତେ କୃତାର୍ଥ କରନ୍ତୁ ।"

ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜନ୍ ! ଏହି ପ୍ରଶ୍ନ ପଚାରି ବିଦୁର ମହାମୁନି ମୈତ୍ରେୟଙ୍କ ଆଡ଼କୁ ସତୃଷ୍ଣ ଦୃଷ୍ଟିରେ ଚାହିଁ ରହିଲେ ।"

## ଛପ୍ପୟ

“ତବ ବୋଲେ ଶ୍ରୀବିଦୁର ବିଭୋ ! ଇକ ବାତ ବତାଓ୍ୱଂ
କାହେ ଯେ ସବ୍ ଜୀବ କର୍ମ କରି ଦୁଃଖହି ପାଓ୍ୱଂ ।।
ଦୂଖ ନିବୃତ୍ତି ସୁଖ ହେତୁ କରହିଁ ଶୁଭ ଅଶୁଭ କର୍ମ ନର ।
କିନ୍ତୁ ନ ଦୋନୋଂ ହୋୟଁ କ୍ଲେଶ ହୀ ପାହିଁ ନିରନ୍ତର ।।
ନର ସୁରତରୁ ତରି କେଥାଁ ମୁକ୍ତି ସନ୍ତ ଦରଶ ତେଥାଂ ସୁଖଲହେଂ
ସାଧହିଁ ପର କାରଜ ହିତତ ସନ୍ତ ଦେହ ଧରି ଦୁଃଖ ସହେଁ ।।”



# ବିଦୁରଙ୍କ ଅନନ୍ୟ ପ୍ରଶ୍ନ

"ତାନ୍ଶୋଚ୍ୟଶୋଚ୍ୟା ନ ବିଦୋଽନୁ ଶୋଚେ ।
ହରେଃ କଥାୟାଂ ବିମୁଖା-ନଘେନ ॥
କ୍ଷିଣୋତି ଦେବୋଽନିମିଷସ୍ତୁ ଯେଷାଂ
ଆୟୁର୍ବୃଥାବାଦଗତି ସ୍ମୃତୀନାମ୍ ॥"

( ଭାଗବତ ୩ । ୫ । ୧୪ )

## ଛପ୍ପୟ

"ବିଦେ ! ବିଶୁଦ୍ଧ ଚରିତ୍ର ଶ୍ୟାମ କେ ମୋହିଁ ସୁନାଓଁ ।
ପାଓଁ ଶାଶ୍ୱତ ଶାନ୍ତି ସୁଗମ ସୀ ଗୈଲ ବତାଓଁ ॥
ଧର୍ମ କାମ ଅରୁ ଅର୍ଥ ଫିତା ସନ ସବ ସୂନ୍ଦ ଜାନେ ।
ତୃପ୍ତି ନ ଜନତେଂ ଭଇ କ୍ଷୁଦ୍ର କୈତବ ଯୁତ ମାନେ ॥
କୃଷ୍ଣ କଥା କୀ ଲଗନ ଇ, ବିଷୟ୍ନି ବିରକ୍ତି ବନାଓ୍ୱତୀ ।
ମନ ମହିଁ ମୋଦ ବଢ଼ାବତୀ ସବରେ ଦୁଃଖ ମିଟାଓ୍ୱତୀ ॥"

ଅର୍ଥାତ୍ ବିଦୁର ମୈତ୍ରେୟଙ୍କୁ କହୁଛନ୍ତି—"ଯେଉଁ ବ୍ୟକ୍ତି ପୂର୍ବ ଜନ୍ମର ଦୁଷ୍କୃତ କାରଣରୁ ପୁନୀତ ବିଷ୍ଣୁ କଥାରୁ ବିମୁଖ ହୁଅନ୍ତି, ସେହି ମୂଢ଼ ବ୍ୟକ୍ତିଙ୍କ ଲାଗି ମୋର ଚିନ୍ତା । କାରଣ ସେମାନେ ଦେହ, ମନ ଓ ବାଣୀରେ ନାନା ପ୍ରକାର ବ୍ୟର୍ଥ ଚେଷ୍ଟା କରିଥାଆନ୍ତି । ସେହି ପ୍ରକାର କାର୍ଯ୍ୟରେ ଲାଗି ରହିଥିବା ସମୟରେ ସେମାନଙ୍କର ଆୟୁ କାଳ ହରଣ କରିଥାଏ ।"

"ଭାଗବତ କଥା ଶ୍ରବଣ କରୁଥିବା ବ୍ୟକ୍ତିମାନେ କେତୋଟି ଅଳ୍ପ ପ୍ରଶ୍ନ କରିଥାଆନ୍ତି ! ସେମାନେ କେବଳ ରହସ୍ୟମୟ ପ୍ରଶ୍ନ ପଚାରନ୍ତି । ସବୁଠାରୁ ଅତ୍ୟନ୍ତ ରହସ୍ୟମୟ ହେଉଛି—ଏହି ସଂସାର । ତେଣୁ ମୋକ୍ଷ କାମନା କରୁଥିବା

ଲୋକମାନେ ଏହି ସଂସାର ସମ୍ବନ୍ଧରେ ପ୍ରଶ୍ନ ପଚାରି ଥାଆନ୍ତି । ସଂସାର ମଧ୍ୟରେ ନାନା ରୂପ, ନାନା ସୌନ୍ଦର୍ଯ୍ୟର ସୃଷ୍ଟି କାହିଁକି ହୋଇଛି— ଏହା ହିଁ ସେମାନଙ୍କର ପ୍ରଶ୍ନ । ଏ ସୃଷ୍ଟି କିଏ କରିଛନ୍ତି ? ଏହାର ନିୟମଶୃଙ୍ଖଳ କ'ଣ ? କିଏ ସୃଷ୍ଟିର ପାଳନକର୍ତ୍ତା ଏବଂ ସଂହାର କିଏ କରନ୍ତି ? ଜୀବ ସଂସାରରେ କାହିଁକି ବନ୍ଧନରେ ପଡ଼ି ପଥଭ୍ରଷ୍ଟ ହୁଏ, ପରିଶେଷରେ ତା'ର ମୁକ୍ତି କିପରି ହୋଇଥାଏ ? ଏହି ଜଗତରେ ଆଶ୍ରୟଦାତା କିଏସେ ? ଏହି ପୃଥିବୀରେ ଜନ୍ମଗ୍ରହଣ କରି ସେ କି କି କର୍ମ କରନ୍ତି ? କେଉଁ ଢଙ୍ଗ ଓ ଭାବରେ ସେ ପ୍ରାଣୀମାନଙ୍କୁ ଆନନ୍ଦ ପ୍ରଦାନ କରନ୍ତି ? ସେହି ମୋକ୍ଷକାମୀ ଲୋକମାନେ ଏହି ପ୍ରଶ୍ନକୁ ଘୂରାଇ ଫେରାଇ ପଚାରି ଥାଆନ୍ତି । ଭଗବାନଙ୍କ ସତ୍ତା ଜାଣି ନ ପାରି, ସେମାନେ ଏହି ସନ୍ଦେହର ଦୋଳାରେ ସର୍ବଦା ଅନିଶ୍ଚିତ ଅବସ୍ଥାରେ ରହିଥାନ୍ତି । ଆପଣ ହୁଏତ କହିପାରନ୍ତି, ନାସ୍ତିକମାନେ ଭଗବାନଙ୍କ ଅସ୍ତିତ୍ୱ ସ୍ୱୀକାର କରନ୍ତି ନାହିଁ; ସେମାନଙ୍କ ମନରେ ଈଶ୍ୱର ସମ୍ବନ୍ଧୀୟ ପ୍ରଶ୍ନ କାହିଁକି ଉଠିବ ? କିନ୍ତୁ ପ୍ରକୃତ ତାହା ନୁହେଁ । କେହି ହୁଏତ ଜଣେ କହିପାରେ, ମୁଁ ପୃଥିବୀକୁ ମାନେ ନାହିଁ । ପକ୍ଷୀ କହିପାରେ, ମୁଁ ଆକାଶର ସତ୍ତା ସ୍ୱୀକାର କରେନାହିଁ । ସେମାନେ ମୁହଁରେ ଅବଶ୍ୟ ଏହି ଯୁକ୍ତି କରିପାରନ୍ତି; କିନ୍ତୁ ସେମାନେ ପୃଥିବୀ ଓ ଆକାଶର ଅସ୍ତିତ୍ୱ ସମ୍ବନ୍ଧରେ ଭଲ ଭାବରେ ଜାଣନ୍ତି । ନାସ୍ତିକ ଯଦି ଈଶ୍ୱରଙ୍କ ଅସ୍ତିତ୍ୱ ସ୍ୱୀକାର ନ କରୁଛି, ତେବେ ସେ ସମ୍ବନ୍ଧରେ ଯୁକ୍ତିତର୍କ କରୁଛି କାହିଁକି ? ଏଥିରୁ ଭଲ ଭାବରେ ଜଣାପଡ଼ୁଛି ଯେ ସେମାନେ ସେହି ପ୍ରଶ୍ନର ଗୋଲକଧନ୍ଦା ମଧ୍ୟରେ ପଡ଼ିଛନ୍ତି । ସେମାନେ ନିଜର ଚର୍ମଚକ୍ଷୁରେ ଭଗବାନଙ୍କୁ ଦେଖିପାରୁ ନ ଥିବାରୁ, ଯୁକ୍ତିତର୍କର ଜାଲରେ ଅନ୍ୟମାନଙ୍କ ମନରେ ଭ୍ରମଧାରଣା ସୃଷ୍ଟି କରୁଛନ୍ତି; ଏବଂ ନିଜର ନାସ୍ତିକବାଦ ମଧ୍ୟରେ ଅସ୍ତିତ୍ୱସ୍ୱରୂପୀ ପରମାତ୍ମାଙ୍କର ଅସ୍ତିତ୍ୱର ଅନୁସନ୍ଧାନ ସେମାନେ ଆରମ୍ଭ କରିଛନ୍ତି ।

"ଗୋଟିଏ ଉଦାହରଣ ଏ ସମ୍ବନ୍ଧରେ ଦିଆଯାଇପାରେ । ବାଲୁକାମୟ ପ୍ରାନ୍ତରରେ ଥିବା ଜନ୍ତୁଟିକୁ ବ୍ୟାଧ ଶିକାର କରିବାକୁ ଗଲେ, ଜନ୍ତୁଟି ବାଲିରେ ନିଜର ମୁହଁଟି ଲୁଚାଇ ଦେଇ ଭାବେ, ମୁଁ ବ୍ୟାଧକୁ ଦେଖିପାରୁ ନ ଥିବାରୁ ସେ ମଧ୍ୟ ମୋତେ ଦେଖିପାରୁ ନ ଥିବ; କିନ୍ତୁ ବ୍ୟାଧ ଠିକ୍ ଲକ୍ଷ୍ୟ କରି ଶର ମାରି ଜନ୍ତୁଟିକୁ ବଧ କରିଥାଏ । 'ଅସ୍ତି' ରୂପରେ ହେଉ କିମ୍ବା 'ନାସ୍ତି' ରୂପରେ ହେଉ, ସମସ୍ତେ ସେହି ଗୋଟିଏ ବିଷୟର ଅନୁସନ୍ଧାନ ଚଳାଇଥାନ୍ତି । ଜଣେ କହେ 'ସେ ଅଛନ୍ତି', ଅନ୍ୟ ଜଣେ କହେ 'ସେ ନାହାନ୍ତି' । ଈଶ୍ୱର ଦୁହିଁଙ୍କ ହୃଦୟରେ ନୀରବରେ ବସି ହସୁଥାଆନ୍ତି । ସେ ନାସ୍ତିକର ଜିହ୍ୱା କାଟି ଦିଅନ୍ତି ନାହିଁ କିମ୍ବା ଆସ୍ତିକକୁ ଶତଜିହ୍ୱା କରି ଦିଅନ୍ତି ନାହିଁ । ଦୁହେଁଯାକ ତାଙ୍କରି ସମ୍ବନ୍ଧରେ ଆଲୋଚନା ଚଳାଇ ଥିବାରୁ, ପରମାତ୍ମା ଉଭୟଙ୍କୁ ସମାନ ଧରଣର ଫଳ ଦେଇଥାନ୍ତି । ଯୁକ୍ତିତର୍କ ଫଳରେ ଉଭୟଙ୍କ ବୁଦ୍ଧି ତୀକ୍ଷ୍ଣ ହୋଇଥାଏ । ପାର୍ଥକ୍ୟ କେବଳ ଏତିକି ଯେ, ଆସ୍ତିକ

ଭଗବତ୍ ପ୍ରେମରେ ଭୃତ୍ତିରହି ରସାନୁଭବ କରେ, ଅଥଚ ନାସ୍ତିକ ବିଚାରି ସେହି ରସ ପ୍ରାପ୍ତିରୁ ବଞ୍ଚିତ ହୁଏ ।

ବିଦୁର ରସଗ୍ରହଣକାରୀ ଭ୍ରମର ହୋଇଥିବାରୁ, ସେ ଭଗବତ୍ କଥା ରୂପକ ଅମିୟରସ ପାନ କରିବାକୁ ଚାହୁଁଥିଲେ । ତେଣୁ ସେ ଧ୍ୟାନରୁ ଦୃଷ୍ଟିକଞ୍ଜ ସଂଗ୍ରହ କରିନେଇ କୁଣ୍ଡ'ତକ ଆଡ଼େଇ ଦେଉଥିଲେ ।

ବିଦୁରଙ୍କର ଏହି ପ୍ରଶ୍ନ ଶୁଣି ମୈତ୍ରେୟ ଅତ୍ୟନ୍ତ ପ୍ରୀତ ହୋଇ କହିଲେ—"ହେ ବିଦୁର ! ତୁମେ ତୁମର ସବୁତକ ପ୍ରଶ୍ନ ମୋତେ ପଚାରି ଦିଅ । ଆଚ୍ଛା କହିଲ, ଆଉ ତୁମେ କ'ଣ କ'ଣ ପଚାରିବାକୁ ଚାହୁଁଛ ?"

ଏହା ଶୁଣି କହିଲେ ବିଦୁର—"ମହାଭାଗ ! ମୁଁ ଭଗବଦ୍ ଭକ୍ତିତତ୍ତ୍ୱ ହିଁ ଜାଣିବାକୁ ଚାହୁଁଛି । ମୋର ଧାରଣା—ସୃଷ୍ଟି, ସ୍ଥିତି ଓ ପ୍ରଳୟର ଏକମାତ୍ର ନିଦାନ ହେଉଛନ୍ତି—କଂସନିସୂଦନ ଶ୍ରୀକୃଷ୍ଣ । ନାନା ଅବତାର ଧାରଣ କରି ସେ କ'ଣ କ'ଣ କରନ୍ତି, କଳ୍ପର ଆରମ୍ଭରେ ବ୍ରହ୍ମସ୍ୱରୂପ ଧାରଣ କରି କେଉଁ ପ୍ରକାର ସୃଷ୍ଟି ରଚନା କରନ୍ତି, ବିଷ୍ଣୁ ରୂପ ଧାରଣପୂର୍ବକ ସେହି ସୃଷ୍ଟିର ପାଳନ କରନ୍ତି ଏବଂ ପରିଶେଷରେ ରୁଦ୍ର ରୂପରେ କିପରି ସୃଷ୍ଟିକୁ ସଂହାର କରନ୍ତି । ଏହି ତତ୍ତ୍ୱ ସମ୍ବନ୍ଧରେ ଆପଣ ମୋତେ ବୁଝାଇ କହନ୍ତୁ । ପରମାତ୍ମା ଅଦ୍ୱିତୀୟ, ତେଣୁ ସେ କିପରି ଭିନ୍ନ ଭିନ୍ନ ରୂପ ଧାରଣ କରିଥିଲେ ? ତାଙ୍କର ସେ ପ୍ରକାର ରୂପ ଧାରଣ କରିବାର ଉଦ୍ଦେଶ୍ୟ କ'ଣ ? ଏହି ସମ୍ବନ୍ଧରେ ଆପଣ ମୋତେ ଶୁଣାଇ, ମୋର ଇଚ୍ଛା ପୂରଣ କରନ୍ତୁ ।"

ବିଦୁରଙ୍କ ପ୍ରଶ୍ନ ଶୁଣି କହିଲେ ମୈତ୍ରେୟ—"ବିଦୁର ! ଆପଣ ବାରମ୍ବାର ସେହି ଅବତାରମାନଙ୍କ ସମ୍ବନ୍ଧରେ ପ୍ରଶ୍ନ କରୁଛନ୍ତି କାହିଁକି ? ଆପଣ ମହର୍ଷି ବ୍ୟାସଦେବଙ୍କ ପୁତ୍ର । ସେ ପଞ୍ଚମବେଦ ମହାଭାରତ ରଚନା କରିଛନ୍ତି । ତୁମେ ତାଙ୍କଠାରୁ ଭଗବାନଙ୍କ ଅବତାର ସମ୍ବନ୍ଧରେ ଶୁଣିଥିବ । ତେଣୁ ପୁଣି କାହିଁକି ସେହି ବିଷୟରେ ଶୁଣିବାକୁ ଚାହୁଁଛନ୍ତି ?"

ଏହା ଶୁଣି କହିଲେ ବିଦୁର—"ହେ ଭଗବନ୍ ! ଆପଣ ସତ କହୁଛନ୍ତି । ମୁଁ ମୋ' ପିତାଙ୍କଠାରୁ ସେ ସମ୍ବନ୍ଧରେ ବାରମ୍ବାର ଶୁଣିଛି; କିନ୍ତୁ ଯେତେ ଶୁଣିଲେ ମଧ୍ୟ ମୋର କାମନା ଅତୃପ୍ତ ରହୁଛି । ଭଗବାନ୍‌ଙ୍କ ସମ୍ବନ୍ଧରେ ଯେତେ ଥର ଶୁଣିଲେ ମଧ୍ୟ ମୋର ବାସନା ତୃପ୍ତ ହେଉନାହିଁ । ମୁଁ ଭଗବାନ୍ ବ୍ୟାସଦେବଙ୍କଠାରୁ ଈଶ୍ୱରଙ୍କ ଅବତାର ସମ୍ବନ୍ଧରେ ଶୁଣିଥିଲେ ମଧ୍ୟ, ତାହା ମୋତେ ଅତ୍ୟନ୍ତ କଠିନ ଜଣା ପଡ଼ୁଛି । ବ୍ୟାସଦେବ ଉଚ୍ଚ ନୀଚ ସବୁ ବର୍ଣ୍ଣଙ୍କୁ ଈଶ୍ୱରଙ୍କ ତତ୍ତ୍ୱ ବ୍ୟାଖ୍ୟାନ କରିଛନ୍ତି । ସେ କଥା ପ୍ରସଙ୍ଗରେ ଯେତେଥର ମୋତେ ତାହା ଶୁଣାଇଛନ୍ତି

ମୋତେ ଅତ୍ୟନ୍ତ କଠିନ ପରି ଜଣାପଡ଼ୁଛି । ସେ ଧର୍ମ, ଅର୍ଥ, କାମ, ମୋକ୍ଷ ସମ୍ବନ୍ଧୀୟ କଥା ଯେତେ ଶୁଣାଇଛନ୍ତି, ସେଥିରେ କେବଳ ଭଗବାନଙ୍କ କଥା ଗୁଡ଼ି ଦେଲେ; ମୋତେ ଅନ୍ୟ କଥା ରୁଚିକରବୋଧ ହୋଇନାହିଁ । ତାଙ୍କ ଆଲୋଚନା ମଧ୍ୟରେ ଅନେକ ପ୍ରସଙ୍ଗ ରହିଥାଏ । ସେ ସବୁ ଶୁଣି ମୋର ବିରକ୍ତି ବୃଦ୍ଧି ପାଇଛି । ଅନ୍ୟ ପ୍ରସଙ୍ଗ ମୋତେ ଆଦୌ ଆନନ୍ଦ ଦେଇନାହିଁ । ମୁଁ ସେହି ଆଖ୍ୟାନ ଶୁଣିବାକୁ ଚାହେଁ; ଯାହା ଶୁଣିଲେ ଜନସମାଜ ସଂସାରର ବନ୍ଧନରୁ ମୁକ୍ତ ହୋଇ ପାରିବ, ମୋର ଧାରଣା, ଶ୍ରୀକୃଷ୍ଣଙ୍କ କଥା ଶୁଣିଲେ ଭବବନ୍ଧନରୁ ମୁକ୍ତି ମିଳିପାରିବ । ତା' ଫଳରେ ସମସ୍ତ ବାଧା ଦୂର ହୋଇ ଯାଇପାରିବ । ସେହି କଥା ଶ୍ରବଣ କରି ସମସ୍ତ ଧର୍ମର ଫଳ ଏକାଧାରରେ ମିଳି ପାରିବ ଏବଂ ସମସ୍ତ ସାଧନାର ସାର ଲାଭ ହେବ ।"

"ତା ହେଲେ...." କହିଲେ ମୈତ୍ରେୟ—"ତୁମେ କ'ଣ କହୁଛ ଯେ, ବ୍ୟାସଦେବ ଯେଉଁ ମହାଭାରତ ରଚନା କରିଛନ୍ତି, ତା' ଫଳରେ କେବଳ ସଂସାରୀ ବ୍ୟକ୍ତିମାନଙ୍କ ମୋକ୍ଷସାଧନ ପାଇଁ ?"

ଏହା ଶୁଣିବା ମାତ୍ରେ ବିଦୁର ସଙ୍ଗେ ସଙ୍ଗେ ଉତ୍ତର ଦେଲେ—"ଧର୍ମାତ୍ମନ୍ ! ଏହା ମୋର ବକ୍ତବ୍ୟ ନୁହେଁ ! ମୋ' ପିତା ବ୍ୟାସଦେବ ହେଉଛନ୍ତି—ସର୍ବଜ୍ଞ । ସେ ସମସ୍ତଙ୍କ ଉପକାର ସାଧନପାଇଁ ମହାଭାରତର ବ୍ୟାଖ୍ୟା କରିଛନ୍ତି । କୌଣସି ବ୍ୟକ୍ତିକୁ ଅରୁନ୍ଧତୀ ତାରା ଦେଖାଇବାକୁ ହେଲେ, ପ୍ରଥମେ ତାକୁ ଆକାଶର ସମସ୍ତ ତାରା ସମ୍ବନ୍ଧରେ ଧାରଣା ଦେବାକୁ ହେବ । ତା'ପରେ ତାକୁ ସପ୍ତର୍ଷି ଦେଖାଇଲେ, ସେ ସହଜରେ ଚିହ୍ନି ପାରିବ । ସେହି ସପ୍ତର୍ଷିମଣ୍ଡଳର ତାରାଗୁଡ଼ିକୁ ଭଲ ଭାବରେ ଚିହ୍ନାଇ ସାରିବା ପରେ ତାକୁ କୁହାଯିବ ଯେ, ବଶିଷ୍ଠ ତାରାର ତଳକୁ ଯେଉଁ କ୍ଷୁଦ୍ର ତାରାଟି ରହିଛି, ତାହା ହେଉଛି—ଅରୁନ୍ଧତୀ । ସେହିପରି ଭାବରେ ଭଗବାନ ବ୍ୟାସଦେବ ମହାଭାରତରେ ବହୁବିଷୟ ସମ୍ବନ୍ଧରେ ଧାରଣା ଦେବାପରେ କହିଛନ୍ତି ଯେ, ଶ୍ୟାମସୁନ୍ଦର ଶ୍ରୀକୃଷ୍ଣ ହେଉଛନ୍ତି—ସମସ୍ତ ମର୍ତ୍ତ୍ୟର ମୂଳାଧାର । ତାଙ୍କର ଶରଣ ପଶିଲେ, ଭବବନ୍ଧନରୁ ମୁକ୍ତି ମିଳିବ । ସେ ବିଷୟାସକ୍ତ ମନୁଷ୍ୟ ମାନଙ୍କୁ ଧାରଣା ଦେବାପାଇଁ ଏପରି ଭାବରେ ଦ୍ରାବିଡ଼ ପ୍ରାଣାୟାମ ଢଙ୍ଗରେ ଈଶ୍ୱରଙ୍କ ପ୍ରସଙ୍ଗଟିକୁ ବହୁ ପ୍ରସଙ୍ଗ ମଧ୍ୟରେ ଅବତାରଣା କରିଛନ୍ତି; କିନ୍ତୁ ଯେଉଁ ବ୍ୟକ୍ତିର ଧାରଣା କେବଳ ପରମେଶ୍ୱରଙ୍କଠାରେ ଲୀନ ହୋଇଯାଇଛି, ତାକୁ ବିଷୟ ବାସନା ଗ୍ରାସ କରିପାରିବ ନାହିଁ । ସେ କେବଳ ଭଗବତ୍ ଆଖ୍ୟାନ ଶୁଣିବାକୁ କାମନା କରେ । ତହିଁରୁ ତା' ମନରେ ପରମପଦର ସ୍ୱାମୀ ପରମେଶ୍ୱରଙ୍କ ପ୍ରତି ଆସକ୍ତି ବୃଦ୍ଧି ପାଇଥାଏ । ସେହି ଆସକ୍ତିରୁ ତାର ମୋକ୍ଷ ପ୍ରାପ୍ତି ହୁଏ । ତେଣୁ ଆପଣ ମୋତେ ସେହି ବିଶୁଦ୍ଧ ପ୍ରେମମୟଙ୍କ ସମ୍ବନ୍ଧରେ ସାରକଥା ଶୁଣାନ୍ତୁ ।"

ଶ୍ରୀ ଶୁକଦେବ କହୁଛନ୍ତି—"ହେ ମହର୍ଷିବୃନ୍ଦ ! ବିଦୁର ଏତିକି କହି, ମୈତ୍ରେୟଙ୍କ ମୁଖକୁ ଚାହିଁକି ପରି ରହିଲେ । କାରଣ ସେ ଭାଗବତାମୃତ ପାନ କରି ନିଜର ଜୀବନକୁ ଧନ୍ୟ କରିବାକୁ ଚାହୁଁଥିଲେ ।"

## ଛପ୍ପୟ

"ନିତ ଖାଉ ଜହିଁ ଲଗେ ନ କୁଚେ କର କଣ୍ଠ ହୋଏଁ ।
ତେଁ ଯା ମନ କେ ସବ ମୈଲ କଥା ଜଲ ତନ କୁଁ ଧୋଏଁ ॥
ସୁନକେ ସିଂହ ଦହାଡ଼ ଶଶକ ଗୀଦଡ଼ ଭଗି ଜାଏଁ ।
କାମାଦିକ ସବ ଭଗେଂ କଥା ତେଂ ହିୟ ହରି ଆଏଁ ॥
ଶୋଚନୀୟ ତେ ପୁରୁଷ ଅତି, ହରିଚର୍ଚା ତେଂ ଜେ ବିମୁଖ ।
କଥା ଶ୍ରବନ କୀର୍ତ୍ତନ ବିନା, ଜୀଓ ଲହହିଁ ନହିଁ ଶାନ୍ତି ସୁଖ ॥"



# ବିଦୁରଙ୍କ ପ୍ରଶ୍ନର ଉତ୍ତର

"ସ ଏବଂ ଭଗବାନ୍ ପୃଷ୍ଟଃ କ୍ଷତ୍ରା କୌଷାରବିର୍ମୁନିଃ ।
ପୁଂସାଂ ନିଃଶ୍ରେୟସାର୍ଥେନ ତମାହ ବହୁ ମାନୟନ୍ ।।"

(ଭାଗବତ ୩ । ୫ । ୧୭)

## ଛପ୍‌ପୟ

"ସୁନୀ ବିଦୁର କୀ ବାତ ବିଦୁତ ମନ ହୃଷ୍ଟ ମହୁଁ ହରଷେ ।
ରୋମାଞ୍ଚିତ ତନୁ ଭୟୋ ନୟନ ବରଷା ସମ ବରଷେ ।।
ବିଦୁର ଧନ୍ୟ ତୁମ ଧନ୍ୟ ଧନ ହୋ ନର ତନୁଧାରୀ ।
ପାବନ କୁରୁ କୁଲ କରେଯା ବ୍ୟାସ ସୁତ ଦୃଢ଼ ବ୍ରତଧାରୀ ।।
ପର ଉପକାର ବିଚାରି ହୃଷ୍ଟ, ପ୍ରଶ୍ନ କରେଯା ପାବନ ପରମ ।
ଜସ ହରି ସିଖୟୋ ତସ କହହୁଁ, ପରମ ଧରମ କୋ ସୁନୁ ମରମ ।"

ଅର୍ଥାତ୍—ଶ୍ରୀଶୁକଦେବ ପରୀକ୍ଷିତଙ୍କୁ କହୁଛନ୍ତି—"ହେ ରାଜନ୍ ! ବିଦୁର ମହାମୁନି ମୈତ୍ରେୟଙ୍କୁ ଏପରି ଭାବରେ ପଚାରନ୍ତେ, ସେ ତାଙ୍କୁ ବହୁ ସମ୍ମାନ ପ୍ରଦର୍ଶନ କରି, ଜନସାଧାରଣଙ୍କ ମଙ୍ଗଳ ନିମିତ୍ତ ଏହିପରି ଭାବରେ ଉତ୍ତର ଦେଲେ ।"

ଯେଉଁ ବ୍ୟକ୍ତି ନିଜର କୁଳ, ଶୀଳ, ବିଦ୍ୟା, ବୁଦ୍ଧି ଅନୁସାରେ କାର୍ଯ୍ୟ କରେ, ବିଦ୍ୱାନମାନେ ତାକୁ ପ୍ରଶଂସା କରନ୍ତି । ଯେଉଁ ବ୍ୟକ୍ତି ତା'ର ବିପରୀତ ଆଚରଣ କରେ, ସମସ୍ତେ ତାକୁ ନିନ୍ଦା କରି କହନ୍ତି—ଏଇଟା ଗୋଟାଏ ଘୋଡ଼ା-ମୁହାଁ ପୁଅ । ବିଦୁର ଦାସୀପୁତ୍ର ହୋଇଥିଲେ ମଧ୍ୟ ସେ ବ୍ୟାସଦେବଙ୍କ ବୀର୍ଯ୍ୟରୁ

ଜନ୍ମ ହୋଇଥିବାରୁ, ତାଙ୍କର ଧର୍ମ, କର୍ମ ତଥା ଭଗବଦ୍ ଭକ୍ତି ଆଡ଼କୁ ଅତ୍ୟନ୍ତ ଆଗ୍ରହ ଥିଲା । ବିଶିଷ୍ଟ ଲୋକମାନେ ତାଙ୍କୁ ଆଦର କରୁଥିଲେ । ସେ ମୈତ୍ରେୟଙ୍କୁ ଅତି ରହସ୍ୟମୟ ଭଗବଦ୍‌ଜ୍ଞାନ ସମ୍ବନ୍ଧରେ ପ୍ରଶ୍ନ କରିଥିବାରୁ, ମହର୍ଷି ତାଙ୍କୁ ପ୍ରଶଂସା କରି କହିଲେ—"ବିଦୁର ! ମୁଁ ପୂର୍ବରୁ ଆପଣଙ୍କର ପ୍ରଶଂସା ଶୁଣିଥିଲି; କିନ୍ତୁ ଆଜି ଯେଉଁ ପ୍ରଶ୍ନ ମୋତେ ଆପଣ ପଚାରିଛନ୍ତି, ଯେଉଁଥିରୁ ପରମେଶ୍ୱରଙ୍କ ପ୍ରତି ଆପଣଙ୍କ ନିଷ୍ଠା ଓ ଆଗ୍ରହ ସମ୍ପର୍କରେ ମୋର ପ୍ରତ୍ୟକ୍ଷ ଧାରଣା ହୋଇଗଲା । ଆପଣ ଭଗବାନ ବ୍ୟାସଙ୍କ ଔରସରୁ ଜନ୍ମ ହୋଇଛନ୍ତି ଏବଂ ଅଖିଳପତି ଭଗବାନଙ୍କ ପଦାରବିନ୍ଦରେ ଆଶ୍ରୟ ଗ୍ରହଣ କରିଛନ୍ତି । ତେଣୁ ଆପଣ ଏପରି ରହସ୍ୟମୟ ପ୍ରଶ୍ନ ପଚାରିଥିବାରୁ, ମୁଁ ଆଦୌ ଆଶ୍ଚର୍ଯ୍ୟ ହେଉନାହିଁ ।

ଅତ୍ୟନ୍ତ ସଙ୍କୋଚର ସହିତ ଉତ୍ତର ଦେଲେ ବିଦୁର—"ଗୁରୁଜନମାନେ ଅଧମମାନଙ୍କ ଉପରେ ମଧ୍ୟ ଅଶେଷ କୃପା ପ୍ରଦର୍ଶନ କରିଥାଆନ୍ତି । ସାଧୁମାନେ ଅନ୍ୟର ଦୋଷ ଦେଖନ୍ତି ନାହିଁ । ମୁଁ ଶୂଦ୍ରାମାତା ଗର୍ଭରୁ ଜନ୍ମ ହୋଇଛି । ମୋତେ ମୋର ଆତ୍ମୀୟ ସ୍ୱଜନମାନେ ପରିତ୍ୟାଗ କରିଛନ୍ତି । ମୁଁ କେବଳ ଆଶ୍ରୟ ଗ୍ରହଣ କରିଛି—ଆପଣଙ୍କ ପଦାରବିନ୍ଦରେ । ଆପଣ ମୋ ଉପରେ କୃପାଦୃଷ୍ଟି ପକାଇଛନ୍ତି । ବର୍ତ୍ତମାନ ଅନୁଗ୍ରହ କରି ଆପଣ ମୋ ପ୍ରଶ୍ନର ଉତ୍ତର ଦିଅନ୍ତୁ ।"

ଏହା ଶୁଣି ମୈତ୍ରେୟ ଆନନ୍ଦରେ ବିଭୋର ହୋଇ କହିଲେ—"ବିଦୁର ! ଆପଣ ଏପରି କ'ଣ କହୁଛନ୍ତି ? ଆପଣ ନିଜକୁ ଭୁଲି ଯାଇଛନ୍ତି ନା କ'ଣ ? ଆପଣ କ'ଣ ଜଣେ ସାଧାରଣ ମନୁଷ୍ୟ ? ଆପଣ ସାକ୍ଷାତ୍ ପରମେଶ୍ୱରଙ୍କ ସଦୃଶ । ଅଖିଳ ବ୍ରହ୍ମାଣ୍ଡର ଲୋକକଲ୍ୟାଣ ହେତୁରୁ ଆପଣ ଦାସୀଗର୍ଭରେ ଜନ୍ମଗ୍ରହଣ କରିଛନ୍ତି । ଆପଣଙ୍କ ମନରେ ପୁଣି ଶଙ୍କା କ'ଣ ? ଆପଣ ସମସ୍ତ ସନ୍ଦେହ ମୋଚନ କରିବାରେ ସମର୍ଥ । ଆପଣ ମୋତେ ପ୍ରଶ୍ନ କରି ମୋର ମହତ୍ତ୍ୱ ବୃଦ୍ଧି କରିଛନ୍ତି । ଆପଣଙ୍କୁ ଭଗବଦ୍ ଭକ୍ତି ସମ୍ବନ୍ଧରେ ମୁଁ ଅବା କ'ଣ କହିବି ? ସାଧୁସନ୍ଥମାନେ ଅନ୍ତିମ ସମୟରେ ଭଗବତ୍ ନାମ ସ୍ମରଣ କରି ମୁକ୍ତିପଥ ଯାତ୍ରୀ ହୁଅନ୍ତି । କିନ୍ତୁ ସ୍ୱୟଂ ଭଗବାନ ଇହଧାମ ତ୍ୟାଗ କରିବା ସମୟରେ ବିଶ୍ୱପତି ଶ୍ରୀକୃଷ୍ଣ ଆପଣଙ୍କ ନାମ ସ୍ମରଣ କରିଥିଲେ । ପ୍ରଭୁ ଆପଣଙ୍କୁ ଉପଦେଶ ଦେବା ଲାଗି ମୋତେ ଆଦେଶ ଦେଇଯାଇଛନ୍ତି । ସେହି ଆଦେଶକୁ ଶିରୋଧାର୍ଯ୍ୟ କରି, ମୁଁ ଆପଣଙ୍କୁ ଉପଦେଶ ଦେଉଛି ।

"ଆପଣ ମୁଖ୍ୟତଃ ଦୁଇଟି ପ୍ରଶ୍ନ କରିଛନ୍ତି । ପ୍ରଥମ ପ୍ରଶ୍ନଟି ହେଉଛି—ସମସ୍ତେ ସୁଖଭୋଗ ଲାଗି କାର୍ଯ୍ୟ କରୁଥିବାରୁ, ଦୁଃଖଭୋଗ କରୁଛନ୍ତି କିପରି ? ଆପଣଙ୍କ ଦ୍ୱିତୀୟ ପ୍ରଶ୍ନ ହେଉଛି—ପରମାତ୍ମା ନିର୍ଗୁଣସ୍ୱରୂପୀ ହୋଇ ଏହି ସଗୁଣ

ଦେଶର ସୃଷ୍ଟି କଲେ କାହିଁକି ? ଏ ଦୁଇଟିଯାକ ପ୍ରଶ୍ନ ଅତ୍ୟନ୍ତ ଗୂଢ଼ । ତଥାପି ମୁଁ ଏ ସମ୍ବନ୍ଧରେ ଆପଣଙ୍କୁ ସଂକ୍ଷେପରେ ଉତ୍ତର ଦେଉଛି ।

"ପ୍ରତ୍ୟେକଙ୍କ ମନରେ ସୁଖପ୍ରାପ୍ତି ଲାଗି ଲାଳସା ରହିଛି; କିନ୍ତୁ ସେମାନେ ଅନିତ୍ୟ, ବିନାଶଶୀଳ ତଥା ପରିବର୍ତ୍ତନଶୀଳ ବସ୍ତୁର ଅନୁସନ୍ଧାନରେ ମାତ୍ର ପ୍ରକୃତ ସୁଖକୁ ହରାଇ ବସୁଛନ୍ତି । ଯେଉଁ ଦ୍ରବ୍ୟ ନଶ୍ୱର, ଯାହାର ଅସ୍ତିତ୍ୱ ଅଳ୍ପକ୍ଷଣସ୍ଥାୟୀ, ସେଥିରୁ ଶାଶ୍ୱତ ସୁଖ କେଉଁଠୁ ମିଳିବ ? ମନୁଷ୍ୟମାନେ ପୂର୍ବ ଦିଗ ଆଡ଼କୁ ଯିବା ଲାଗି ଇଚ୍ଛାପୋଷଣ କରି, ପଶ୍ଚିମାଭିମୁଖୀ ହେଲେ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବେ କିପରି ? ଶେଷରେ ସେମାନଙ୍କର ପରିଶ୍ରମ ବ୍ୟର୍ଥ ହୋଇଯିବ ଏବଂ ସେମାନେ ନିରାଶ ହୋଇ ନିଜର କୁକର୍ମକୁ ନିନ୍ଦା କରିବେ । ଆପଣ ଗୋଟିଏ କଣ୍ଟା ପରିପୂର୍ଣ୍ଣ ବବୁଲି ଗଛର ମଞ୍ଜି ଟିଏ ଲଗାଇଲେ, ସେଥିରୁ ଅମ୍ବ ଫଳିବ କିପରି ? ଗୋଟିଏ ଗ୍ରେଟ କୁକୁର ଛୁଆକୁ ଯଥେଷ୍ଟପ୍ରକାର ସ୍ୱାଦିଷ୍ଟ ଖାଦ୍ୟପେୟ ଦେଇ ବଢ଼ାଇଲେ, ସେ କ'ଣ କେବେହେଲେ କାମଧେନୁପରି ଆମକୁ ଦୁଗ୍ଧ ଦେଇପାରିବ; ଜଣେ ପାପାଚାରୀଠାରୁ ଆପଣ କେବେହେଲେ ସଦାଚାରର ଆଶା କରିପାରିବେ ନାହିଁ ! ଯେ ପର୍ଯ୍ୟନ୍ତ ମନୁଷ୍ୟମାନେ କେବଳ ଆଖିକୁ ଭଲ ଦେଖା ଯାଉଥିବା ବସ୍ତୁର ଅନୁସନ୍ଧାନରେ ବହୁ ପରିଶ୍ରମ କରି ବୁଲୁଥିବେ, ସେ ପର୍ଯ୍ୟନ୍ତ ତାଙ୍କୁ କେବେହେଲେ ମୂଲ୍ୟବାନ ବସ୍ତୁର ସନ୍ଧାନ ମିଳିବ ନାହିଁ ! କୋଇଲା ଖଣିର ଗଭୀରତମ ପ୍ରଦେଶରେ ହୀରାର ସନ୍ଧାନ ମିଳିଥାଏ ।"

ଏହା ଶୁଣି କହିଲେ ବିଦୁର—"ମୁଁ ଆପଣଙ୍କ କଥା ସ୍ପଷ୍ଟ ଭାବରେ ବୁଝି ପାରିଲି ନାହିଁ । ଧନ ପ୍ରାପ୍ତି ବିନା ସଂସାରରେ ଲୋକେ ଚଳିପାରିବେ କିପରି ? କାରଣ ଧନ ପ୍ରାପ୍ତିରୁ ହିଁ ସୁଖପ୍ରାପ୍ତି ହୋଇଥାଏ ।"

ବିଦୁରଙ୍କୁ ଉତ୍ତର ଦେଇ କହିଲେ ମୈତ୍ରେୟ—"ବିଦୁର ! ଆପଣ ଧନ ବୋଲି କାହାକୁ କହୁଛନ୍ତି ?"

"ଧନ....? ଟଙ୍କା, ପଇସା, ସୁନା, ରୂପାକୁ ଧନବୋଲି କୁହାଯାଇଛି ।"

"ହେଲା, ମନେ କରନ୍ତୁ, ଆପଣଙ୍କୁ ସୁନା, ରୂପା, ମଣି ମାଣିକ୍ୟ ଦିଆଯିବା ପରେ, ପିଇବା ପାଇଁ ଯଦି ପାଣି ନ ଦିଆଯାଏ, ଆପଣ ସୁଖୀ ହୋଇ ପାରିବେ ତ ?"

ଟିକିଏ ହସି ଦେଇ କହିଲେ ବିଦୁର—"ତାହା କିପରି ହେବ ? ଜଳବିନା ଜୀବନ ରହିବ କେମିତି ?"

"ଆଚ୍ଛା, ଜଳ ତୁମକୁ ଦିଆଯିବ, କିନ୍ତୁ ପବନ ଯଦି ଦିଆ ନ ଯାଏ .. ।"

"ତେବେ କ୍ଷଣକ ମଧ୍ୟରେ ରାମନାମ ସତ୍ୟ ହେଁ'.......ମୋର ପାଖରେ ସାର୍ଥକ ହୋଇଯିବ" କହିଲେ ବଦୁର ।

"ତା' ହେଲେ ସୁନା, ରୁପା, ମଣି, ମାଣିକ୍ୟ ତୁଳନାରେ ଜଳ ଓ ପବନର ମହତ୍ତ୍ୱ ତୁମଠାରେ ଅଧିକ, ନୁହେଁ କି ?"

"ହଁ....ମହାରାଜ, କିନ୍ତୁ ଧନବାନ୍ ନିଜର ଧନ ବଳରେ ସବୁ କିଛି ପାଇଁ ପାରିବ । ସମସ୍ତ ବସ୍ତୁ ସୁଲଭ ହେଲେ ସେ ସୁଖୀ ହୋଇ ପାରିବ ।" କହିଲେ ବଦୁର ।

ମୈତ୍ରେୟ ଗମ୍ଭୀର ହୋଇ କହିଲେ—"କୌଣସି ଧନବାନ୍ ଆଜି ପର୍ଯ୍ୟନ୍ତ ସୁଖୀ ହୋଇଥିବାର ତୁମେ ଦେଖିଛ କି ?"

ଏହି ପ୍ରଶ୍ନରେ ବଦୁର କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ସେ କିଛି ସମୟ ନୀରବ ରହି କହିଲେ—"ନାଃ" ।

ଏହାପରେ ପୁଣି କହିଲେ ବଦୁର—"ମୈତ୍ରେୟ ମହାଶୟ ! ଏହା ହେଉଛି—ଲୋକମାନଙ୍କର ଭ୍ରମଧାରଣା, ଭିକାରୀଟିଏ ଚିନ୍ତାକରେ ସାଧାରଣ କୃଷକଟି ହେଉଛି ସୁଖୀ: କାରଣ, ସେ ମୋତେ ଭିକ୍ଷାଦାନ କରୁଛି । ତା' ଘରେ କେତେ ଶସ୍ୟ ସାଇତା ହୋଇ ରହିଛି !"

"କୃଷକ ଭାବୁଛି—ମହାଜନ ଅତ୍ୟନ୍ତ ସୁଖୀ । କାରଣ ସେ ମୋତେ ଉଧାର ଦେଇ ମୋର ଅଭାବ ମେଣ୍ଟାଉଛି ଏବଂ ତାଙ୍କ ପାଖରେ ଅନେକ ଧନ ରହିଛି । ଶ୍ରେଷ୍ଠ ମହାଜନଟି ଭାବୁଛି, ମୋଠାରୁ ବଡ଼ ମହାଜନ ହେଉଛି, ସୁଖୀ । କାରଣ ତା' ନିକଟରେ ଯଥେଷ୍ଟ ଧନ ଗଚ୍ଛିତ ହୋଇ ରହିଛି । ଏହିପରି ଭାବରେ ନିଜଠାରୁ ବଡ଼ ଲୋକଙ୍କୁ ନିମ୍ନସ୍ତରର ଲୋକେ ସୁଖୀ ବୋଲି ଭାବୁଛନ୍ତି ।

"ମର୍ତ୍ତ୍ୟର ବିତ୍ତଶାଳୀ ବ୍ୟକ୍ତିମାନେ ଭାବୁଛନ୍ତି—ସ୍ୱର୍ଗର ଦେବତାମାନେ ଅତ୍ୟନ୍ତ ସୁଖୀ । କାରଣ ସେମାନେ ଚିରଯୌବନ ପାଇଛନ୍ତି । ସେମାନଙ୍କ ନିକଟରେ ଉପଭୋଗ ପାଇଁ ଅପ୍ସରା, ଅମୃତ ଓ ନନ୍ଦନକାନନର ପୁଷ୍ପଗୁଚ୍ଛ ଆଦି ବହୁ ଉପଭୋଗ୍ୟ ବସ୍ତୁ ରହିଛି । ଦେବତାମାନେ ଭାବୁଛନ୍ତି—ଦେବରାଜ ଇନ୍ଦ୍ର ମହାସୁଖୀ ।

ଏହିପରି ଭାବରେ ମନୁ, ବ୍ରହ୍ମା ଏବଂ ପରିଶେଷରେ ଗୋଲକନାଥଙ୍କୁ ତାଙ୍କର ଅଧସ୍ତନମାନେ ସୁଖୀ ବୋଲି ବିଗ୍ଭରୁଛନ୍ତି । ଏଥିରୁ ଜଣାଯାଏ—ପ୍ରକୃତରେ କେହି ସୁଖୀ ନୁହନ୍ତି । ଯାହାର ଯେତିକି ଧନ ଅଛି, ତା' ମନରେ ଅଧିକ ତୃଷ୍ଣା ରହିଛି । ଧନଥିବା ଫଳରେ ଅଧିକ ଭୋଗ୍ୟ ସାମଗ୍ରୀ ମିଳି ପାରୁଛି ସତ୍ୟ, କିନ୍ତୁ ତା' ଫଳରେ ଧନବାନ୍ ଆଦୌ ସୁଖୀ ହୋଇପାରୁ ନାହାନ୍ତି । ତେଣୁ ଅଶାନ୍ତି ବୃଦ୍ଧି ପାଉଛି । ଏହି ଅଶାନ୍ତି ହିଁ ଦୁଃଖର ମୂଳ କାରଣ ।''

''ତା'ହେଲେ ମହାରାଜ....'' କହିଲେ ବିଦୁର—''ଲୋକମାନେ ଧନ ପାଇଁ ଏତେ ବ୍ୟଗ୍ର ହୋଇ ଧାଉଁଛନ୍ତି କାହିଁକି ? ଏପରିକି ଧନପାଇଁ ଲୋକମାନେ ଭାଇ ଦେହରେ ଛୁରୀ ଚଳାଇ ଦେଉଛନ୍ତି ।''

ମୈତ୍ରେୟ ସଙ୍ଗେ ସଙ୍ଗେ ଉତ୍ତର ଦେଲେ—''ମହାଶୟ ! ଏହା ଏକ ଅନ୍ଧ ପରମ୍ପରା ଚାଲିଛି । ଅନ୍ଧମାନେ ଶୋଭାଯାତ୍ରାରେ ବାହାରିଛନ୍ତି । ଜଣେ ଅନ୍ଧ ଅନ୍ୟକୁ 'ପଙ୍କଜାକ୍ଷ', ସେ ଅପରକୁ 'ରାଜୀବଲୋଚନ' ଆଦି ନାମରେ ସମ୍ବୋଧନ କରି ମହାବିପଦର ସମ୍ମୁଖୀନ ହେଲେ ମଧ୍ୟ ଅନ୍ୟକୁ ସେହି ଆଡ଼କୁ ଟାଣି ନେଉଛି । ସମସ୍ତେ ଗୋଟିଏ ମୃଗତୃଷ୍ଣା ପଛରେ ଧାଇଁ ଚାଲିଛନ୍ତି । କାହାରି ମନରେ ଟିକେ-ହେଲେ ଶାନ୍ତି ନାହିଁ ।

''ବିଦୁରେ ମହୋଦୟ ! ପ୍ରକୃତ ଶାନ୍ତି ହେଉଛି— ଶ୍ୟାମସୁନ୍ଦର ଶ୍ରୀକୃଷ୍ଣଙ୍କ ନାମ ଜପ । ବିଷୟର ଆସକ୍ତି ତ୍ୟାଗକରି ବିଶ୍ୱମ୍ଭରଙ୍କଠାରେ ମନ ଲଗାଇଲେ ସମସ୍ତ ପ୍ରକାର ଦୁଃଖର ବିନାଶ ହେବ । ଅନିତ୍ୟ ପଦାର୍ଥରୁ ମୋହ ତ୍ୟାଗକରି ନିତ୍ୟାନନ୍ଦଙ୍କ ସ୍ୱରୂପ ଚିନ୍ତାକଲେ, ଶାଶ୍ୱତ ଶାନ୍ତି ମିଳିପାରିବ । ମହାଶୟ ! ଧନ ବା ବିଷୟ ସୁଖ କୌଣସିମତେ ମାନସିକ ଶାନ୍ତିର କାରଣ ହୋଇ ନ ପାରେ ! ତାହା କେବଳ ଦୁଃଖର ମୂଳକାରଣ ହୋଇଥାଏ । ଏହା ହିଁ ସଂକ୍ଷେପରେ ମୁଁ ଆପଣଙ୍କ ପ୍ରଥମ ପ୍ରଶ୍ନର ଉତ୍ତର ଦେଉଛି । ଏହି ପରେ ମୁଁ ଆପଣଙ୍କ ଦ୍ୱିତୀୟ ପ୍ରଶ୍ନର ଉତ୍ତର ଦେବି ।''

ସୂତ କହିଲେ—''ହେ ମୁନିମାନେ ! ଏହାପରେ ମୈତ୍ରେୟ ବିଦୁରଙ୍କୁ ସୃଷ୍ଟି ସମ୍ବନ୍ଧୀୟ ଜ୍ଞାନର ଉପଦେଶ ପ୍ରଦାନ କରିଥିଲେ । ତାହା ମୁଁ ପ୍ରସଙ୍ଗ ଅନୁସାରେ ଆପଣମାନଙ୍କୁ ଶୁଣାଇବି । ବର୍ତ୍ତମାନ ମୁଁ ପରମେଶ୍ୱରଙ୍କ ଅବତାର ସମ୍ପର୍କରେ କେତେ କଥା ଶୁଣାଉଛି ।''

## ଛପ୍‌ପୟ

ଖୋଜେଂ ଜେ ସୁଖ ବିଷୟ୍ବ ବାସନା ମହିଁ ରତି ଜଡ଼ମତି ।
ଜଗ କେ ଚଞ୍ଚଲ୍ ବିଷୟ୍ବ ଭୋଗତେଂ ରୋଗ ବଢ଼ହିଁ ଅତି ।।
ସୁଆ ସେମରୀ ସେଇ ଅନ୍ତ ମହିଁ ସୋ ପଛିତାୱେ ।
ରୋପେ ବୃକ୍ଷ ବବୂର ଆମ ଫଲ କୈ ସେ ଖାୱେ ।।
ଦୁଃଖ ନାଶ ସୁଖ ଜେ ଚହହିଁ, ବିଷବତ ବିଷୟ୍ବନ କୁଁ ତଜହିଁ ।
ହ୍ୱୈ ଅନନ୍ୟ ଅଖିଲେଶ କୁଁ, ସର୍ବଭାବ ତେଂ ନିତ ଭଜହିଁ ।।"



# ମାୟା ବିଷୟକ ସନ୍ଦେହ

"ବ୍ରହ୍ମନ୍ କଥଂ ଭଗବତଶ୍ଚିନ୍ମାତ୍ରସ୍ୟାବିକାରିଣଃ
ଲୀଲୟାଚାପି ଯୁଜ୍ୟେରନ୍ ନିର୍ଗୁଣସ୍ୟ ଗୁଣାଃ କ୍ରିୟାଃ ॥
କ୍ରୀଡ଼ାୟାମୁଦ୍ୟମୋଽର୍ଭସ୍ୟ କାମଶ୍ଚିକ୍ରୀଡ଼ିଷାନ୍ୟତଃ
ସ୍ୱତସ୍ତୃପ୍ତସ୍ୟ ଚ କଥଂ ନିବୃତ୍ତସ୍ୟ ସଦାନ୍ୟତଃ ॥"

(ଭାଗବତ—୩ । ୭ । ୨ ଓ ୩)

## ଛପ୍ପୟ

"ନଟ ନାଗର କୀ ନାଟ୍ୟ ଭମି ନା ଜଗକଁୁ ଜାନେ।
ଜହଁା ଦୃଷ୍ଟି ମନ ନାହି ତାହି ସବ ମାୟା ମାନେ ॥
ଲୀଲା ତେଂ ଗୁଣ କର୍ମ ଗହେଂ ପୁନି ବହୁରେଂ ତାମେ
ଲୀଳା ଲଳିତଲଲାମ କରହିଁ ବସ୍ତୁ ତନୁଧାରୀ ଜାମେଂ ॥
ବାଳବତ୍ କ୍ରୀଡା କରହିଁ, ହର୍ଷ, ଶୋକ ଇଚ୍ଛା ରହିତ
କଟହିଁ ଜଗତ ବନ୍ଧନ ତୁରତ, ସୁନହିଁ ଚରିତ ଶ୍ରଦ୍ଧା ସହିତ ॥"

ଅର୍ଥାତ୍—ମହାମୁନି ମୈତ୍ରେୟଙ୍କଠାରେ ସନ୍ଦେହ ପ୍ରକାଶ କରି ବିଦୁର କହୁଛନ୍ତି, "ବ୍ରହ୍ମନ୍ ! ଆପଣ ଭଗବାନଙ୍କ ସହିତ ଗୁଣ କ୍ରିୟାର ଯେଉଁ ସମ୍ବନ୍ଧ ସମ୍ପର୍କରେ କହିଲେ, ତାହା କେବଳ ଚିନ୍ମାତ୍ର ନିର୍ବିକାର ନିର୍ଗୁଣ ବ୍ରହ୍ମଙ୍କ ଲୀଳା ସହିତ କିପରି ସମ୍ଭବ ହୋଇପାରିବ ? ଆପଣ କହି ପାରନ୍ତି—ତାହା ପିଲାଙ୍କ ଖେଳ ପରି ସମ୍ଭବ ହେବ; କିନ୍ତୁ ପିଲାମାନେ ଖେଳରେ ଯେଉଁ ଆନନ୍ଦ ପାଆନ୍ତି, ସେମାନଙ୍କର ସ୍ୱତଃ ଇଚ୍ଛା ତଥା ଅନ୍ୟମାନଙ୍କ ସହିତ ଖେଳିବାଦ୍ୱାରା ତାହା ସମ୍ଭବ ହୋଇଥାଏ; କିନ୍ତୁ ପରମାତ୍ମା ସ୍ୱୟଂ ପରିପୂର୍ଣ୍ଣ, ତଥା ପରିତୃପ୍ତ, ତଥା ଅଦ୍ୱିତୀୟ । ତାଙ୍କ ସମ୍ବନ୍ଧରେ କ୍ରୀଡ଼ାର କାମନା କିପରି କରାଯାଇ ପାରିବ ?

କୌଣସି ଗୋଟିଏ ପ୍ରଶ୍ନ ବାରମ୍ବାର କରାଗଲେ କିମ୍ବା କୌଣସି ବିଷୟକୁ ବାରମ୍ବାର ଅଭ୍ୟସ୍ତ କରାଗଲେ, ତାହା ସ୍ୱତଃ ଅଭ୍ୟାସରେ ପରିଣତ ହୋଇଯାଏ । ଜଗତର ପ୍ରତ୍ୟେକ ପଦାର୍ଥ ସବୁ ଅନିତ୍ୟ ତଥା ପରିବର୍ତ୍ତନଶୀଳ ବୋଲି ଲୋକମାନଙ୍କର ଦୃଢ଼ ଧାରଣା ହୋଇଯିବ, ତେବେ ସେଥିପ୍ରତି ଆସକ୍ତି ଦୂର ହୋଇଯିବ । କାରଣ ଆସକ୍ତି ହିଁ ବନ୍ଧନର ମୂଳ କାରଣ; ଏଣୁ ସମସ୍ତ ଶାସ୍ତ୍ରରେ ପ୍ରଥମେ ସୃଷ୍ଟିର କ୍ରମ ବର୍ଣ୍ଣନା କରାଯାଇ, ସୃଷ୍ଟିର ମୂଳାଧାର ଶ୍ରୀହରିଙ୍କ ସମ୍ବନ୍ଧରେ ଆବଶ୍ୟକୀୟ ଜ୍ଞାନ କରାଇ ଦିଆଯାଏ ।

ଦୁଃଖର କାରଣ ସମ୍ବନ୍ଧରେ ଧାରଣା ଦେବାପରେ, ମୈତ୍ରେୟ ବିଦୁରଙ୍କୁ ସୃଷ୍ଟିର କ୍ରମ ସମ୍ପର୍କରେ ବୁଝାଉଛନ୍ତି । ସେହି ପ୍ରସଙ୍ଗରେ ସେ କହିଲେ—"ହେ ବିଦୁର ! ସୃଷ୍ଟିର ପୂର୍ବରୁ ଏହି ବିଶ୍ୱବ୍ରହ୍ମାଣ୍ଡ ବ୍ରହ୍ମମୟ ଥିଲା । ତତ୍ପରେ ପ୍ରଭୁ ତାଙ୍କର ବିଲକ୍ଷଣ ମାୟା ଶକ୍ତିର ଆଶ୍ରୟ ଗ୍ରହଣ କରି ବିଶ୍ୱର ରଚନା କରିଥିଲେ । ମାୟାପତି ଶ୍ରୀହରି ତ୍ରିଗୁଣମୟୀ ମାୟାରେ ନିଜର ଅଂଶଭୂତ ପୁରୁଷଙ୍କ ସହିତ ଚେତନରୂପ ବୀଜକୁ ସ୍ଥାପିତ କରାଇଲେ । କାଳ ମଧ୍ୟ ଆସି ସେଥିରେ ମିଳିତ ହେଲା । କାଳ ଜୀବ ସହିତ ଅଚ୍ଛେଦ୍ୟ ବନ୍ଧନରେ ବାନ୍ଧି ହୋଇଗଲା । ଏହି ମାୟାଠାରୁ ମହତ୍ତତ୍ତ୍ୱ-ରୂପୀ ସନ୍ତାନ ଜାତ ହେଲା । ସେହି ମହତ୍ତତ୍ତ୍ୱରୁ ଅହଂତତ୍ତ୍ୱର ଉତ୍ପତ୍ତି ହୋଇଛି । ସେହି ଅହଂତତ୍ତ୍ୱ କାର୍ଯ୍ୟ, କାରଣ ଓ କର୍ତ୍ତା ହୋଇଥିବାରୁ, ତା'ଠାରୁ ଅନୁରୂପ ବହୁ ସନ୍ତାନ ଜନ୍ମଗ୍ରହଣ କଲେ । ସେଇଥିରୁ ପଞ୍ଚଭୂତ, ଦଶଇନ୍ଦ୍ରିୟ, ମନ, ଇନ୍ଦ୍ରିୟ ଗୁଡ଼ିକର ଅଧିଷ୍ଠାତା ଓ ତନ୍ମାତ୍ରା ଉତ୍ପନ୍ନ ହୋଇଥିଲେ । ସେହି ଅହଂତତ୍ତ୍ୱ ନିଜର ଭିନ୍ନରୂପରୁ ତ୍ରିଗୁଣାତ୍ମକ ସୃଷ୍ଟି ରଚନା କରିଥିଲା । ମନ ଓ ଇନ୍ଦ୍ରିୟର ଅଧିଷ୍ଠାତା ହେଉଛନ୍ତି ବିଷ୍ଣୁଙ୍କର କଳା; କିନ୍ତୁ ଏହା ଭିନ୍ନ ଭିନ୍ନ ହୋଇଥିବାରୁ ନିଜ ନିଜର ବୈଶିଷ୍ଟ୍ୟ ପ୍ରଦର୍ଶନ କରି, ଏମାନେ ପୃଥକ୍ ମାର୍ଗ ଅନୁସରଣ କରନ୍ତି । ବିନା ସଂଗଠନରେ ରଚନାତ୍ମକ କ୍ରିୟା କରିବାରେ ଅସମର୍ଥ ଦେବତାମାନେ ବିଷ୍ଣୁଙ୍କ ଶରଣ ପଶିଲେ । ସେମାନେ ହାତଯୋଡ଼ି ପ୍ରଭୁଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ । ଭଗବାନ୍ ଏକରୁ ଅନେକ ହେବା ଲାଗି ଇଚ୍ଛୁ ଥିଲେ । ସେ କାଳଶକ୍ତିର ଆଶ୍ରୟ ଗ୍ରହଣ କରି, ତେଇଶ ଗୋଟି ତତ୍ତ୍ୱ ମଧ୍ୟରେ ଅନ୍ତର୍ଯ୍ୟାମୀ ରୂପରେ ଆବିର୍ଭୂତ ହେଲେ । ତାହାପରେ ସଂସାରର ଚକ୍ର ଘୂରିବାକୁ ଲାଗିଲା । ସୃଷ୍ଟିର କ୍ରିୟା ପୁଣି କ୍ଷିପ୍ର ଗତିରେ ଗତିଶୀଳ ହୋଇଗଲା । କାରଣ, ସେହି ତତ୍ତ୍ୱମଧ୍ୟରେ ପ୍ରବେଶ କରିବା ମାତ୍ରେ ତାଙ୍କର ସୁପ୍ତ କ୍ରିୟାଶକ୍ତି ପୁଣି ଜାଗ୍ରତ ହୋଇଗଲା । ସେହି ତତ୍ତ୍ୱ ମହାବୀର ହନୁମାନଙ୍କ ପରି ନିଷ୍କ୍ରିୟ ହୋଇ ରହିଗଲା । ରାମଚନ୍ଦ୍ର ଯେପରି ହନୁମାନଙ୍କ ଶକ୍ତିକୁ ଜାଗ୍ରତ କରାଇ ତାଙ୍କ ଦ୍ୱାରା ମହାନ୍ କାର୍ଯ୍ୟ ସମ୍ପାଦନ କରାଇଲେ, ଠିକ୍ ସେହିପରି, ପରମେଶ୍ୱରଙ୍କ କ୍ରିୟାଶକ୍ତି ତତ୍ତ୍ୱଗୁଡ଼ିକର ସଂସ୍ପର୍ଶରେ କାର୍ଯ୍ୟକାରିଣୀ ହୋଇଉଠିଲା । ସେହି କ୍ରିୟାଶକ୍ତି ତଥା ତେଇଶି ଗୋଟି ତତ୍ତ୍ୱକୁ

ସଙ୍ଗଠିତ କରାଇ ପରଂବ୍ରହ୍ମ ସୃଷ୍ଟିର ମୂଳକାରଣ ବିରାଟ ପୁରୁଷଙ୍କୁ ଜନ୍ମ ଦେଇଥିଲେ । ସେହି ବିରାଟପୁରୁଷଙ୍କଠାରେ ଅସଂଖ୍ୟ ଜୀବର ଜୀବାଣୁ ପୂର୍ଣ୍ଣ ରହିଥିଲା । ବିରାଟପୁରୁଷ ଗୋଟିଏ ସଦ୍ୟଜାତ ଅଣ୍ଡାପରି ହଜାର ହଜାର ବର୍ଷ ଜଳରେ ପଡ଼ି ରହିଲେ । ବହୁ ସହସ୍ର ବର୍ଷ ପରେ ସେହି ଅଣ୍ଡାଟିରୁ ଚଉଦଭୁବନ ତଥା ଦିକ୍‌ପାଳଙ୍କର ସୃଷ୍ଟି ହେଲା । ସେଥିରେ ସମସ୍ତ ବର୍ଣ୍ଣ ଉତ୍ପନ୍ନ ହୋଇ ନିଜ ନିଜର ଅଧିକାର ଅନୁସାରେ କାର୍ଯ୍ୟରେ ଲାଗିଗଲେ ।"

"ମହାଶୟ" କହିଲେ ବିଦୁର—"ଆପଣ ସୃଷ୍ଟିତତ୍ତ୍ୱଟିକୁ ଅତି ସଂକ୍ଷେପରେ କହିଗଲେ ।"

ମୈତ୍ରେୟ ଟିକିଏ ହସିଦେଇ କହିଲେ—"ବିଦୁର ! ଏହି ସୃଷ୍ଟିକର୍ମର ରହସ୍ୟ ଅତ୍ୟନ୍ତ ଗହନ । ଏହାକୁ ବିସ୍ତୃତ ଭାବରେ ବ୍ୟାଖ୍ୟା କରିବାକୁ ଗଲେ, ଭାଗବତ କଥାର ମାଧୁର୍ଯ୍ୟ ନଷ୍ଟ ହୋଇଯିବ । ତା' ବ୍ୟତୀତ ଏହାକୁ ବିସ୍ତୃତ ଭାବରେ ବ୍ୟାଖ୍ୟାକଲେ, ତାର ଅନ୍ତ କଳନା କରି ହେବନାହିଁ । ଭଗବାନଙ୍କ ବିରାଟତ୍ତ୍ୱର ପରିକଳ୍ପନା କରିବାକୁ ସଂସାରରେ କିଏ ଅବା ସମର୍ଥ ହେବ ? ତେଣୁ ପ୍ରାସଙ୍ଗିକତା ଦୃଷ୍ଟିରୁ ଯେତିକି ଆବଶ୍ୟକ, ତଦନୁସାରେ ସୃଷ୍ଟିତତ୍ତ୍ୱ ସମ୍ପର୍କରେ ବର୍ଣ୍ଣନା କରି ଭାଗବତ କଥାର କ୍ରମ ରକ୍ଷା କରିବା ସଙ୍ଗେ ସଙ୍ଗେ ପରମାତ୍ମାଙ୍କ ଅବତାର ବିଷୟରେ ଆଲୋଚନା କରିବାକୁ ମୁଁ ଚାହୁଁଛି । ଆପଣ ସେହି କଥା ଶ୍ରବଣ କରନ୍ତୁ ।"

ଏହା ଶୁଣି ପଚାରିଲେ ଶୌନକ—"ସୂତ ମହୋଦୟ ! ଏହାପରେ ବିଦୁର ମୈତ୍ରେୟଙ୍କୁ ଆଉ କି କି ପ୍ରଶ୍ନ କରିଥିଲେ ?"

ଶୌନକଙ୍କ ପ୍ରଶ୍ନ ଶୁଣି କହିଲେ ସୂତ ମହର୍ଷି—"ମୋର ଗୁରୁଦେବ ଶୁକ ମହର୍ଷି ମହାରାଜା ପରୀକ୍ଷିତଙ୍କ ଆଗରେ ଯାହା ଯାହା ବର୍ଣ୍ଣନା କରିଥିଲେ, ତାହା ମୁଁ ଆପଣମାନଙ୍କ ଆଗରେ ବର୍ଣ୍ଣନା କରୁଛି । ଆପଣମାନେ ସେହି ଗୂଢ଼ ରହସ୍ୟକୁ ମନୋଯୋଗର ସହିତ ଶ୍ରବଣ କରନ୍ତୁ ।"

ବିଦୁର ପୁଣି ନିଜ ମନର ଶଙ୍କା ପ୍ରକାଶ କରି କହିଲେ—"ହେ ମୈତ୍ରେୟ ମହୋଦୟ ! ଆପଣ କହୁଛନ୍ତି—ଭଗବାନ୍ ସ୍ୱତଃ ପରିପୂର୍ଣ୍ଣ ଓ ସନ୍ତୃପ୍ତ । ତାଙ୍କର ଆନନ୍ଦ ଲାଗି କୌଣସି ସାମଗ୍ରୀର ଆବଶ୍ୟକ ହୁଏନାହିଁ । ସେ ମାୟାଯୁକ୍ତ ଗୁଣରୁ ରହିତ; ତାଙ୍କଠାରେ ଜଡ଼ତାର ଲେଶ ମଧ୍ୟ ନାହିଁ । ସେ ଶୁଦ୍ଧ, ଚୈତନ୍ୟ ତଥା ଘନାନନ୍ଦ ସ୍ୱରୂପୀ ଅଟନ୍ତି । ତାଙ୍କ ସମ୍ବନ୍ଧରେ ବିକାରର ପରିକଳ୍ପନା ମଧ୍ୟ କରାଯାଇ ପାରିବ ନାହିଁ । ସେ ନିର୍ବିକାର, ନିଃସଙ୍ଗ, ନିର୍ଗୁଣ ତଥା ନିଷ୍କ୍ରିୟ ଅଟନ୍ତି । ତେଣୁ ଏହି ନଷ୍ଟଶୀଳ, ମାୟାସମ୍ବନ୍ଧୀୟ ଗୁଣ ସହିତ କିପରି ତାଙ୍କର ସମ୍ପର୍କ ରହିପାରିବ ?"

ଏହି ପ୍ରଶ୍ନର ଉତ୍ତର ଦେଇ କହିଲେ ମୈତ୍ରେୟ—"ଆପଣ ଯେଉଁ 'କପରି' ହେବ ବୋଲି ପ୍ରଶ୍ନ କରିଛନ୍ତି, ତାହାର ଉତ୍ତର ହେଉଛି—'ଈଶ୍ୱରଙ୍କ ଇଚ୍ଛା'। ପିଲାଟିଏ ଯେପରି ଧୂଳିରେ ହାତୀ, ଘୋଡ଼ା, ଘରଦ୍ୱାର କର ମନ ଦେଇ ଖେଳୁଥାଏ, ତା'ର ମନ ନ ଲାଗିଲେ ସେ ପଲକ ମଧ୍ୟରେ ଧୂଳିଘରଟିକୁ ଭାଙ୍ଗି ଦେଇ ଖେଳ ସ୍ଥାନରୁ ପଳାଇ ଯାଏ; ଠିକ୍ ସେହିପରି ପ୍ରଭୁଙ୍କ ଇଚ୍ଛା। ଏହାହିଁ କହୁଛନ୍ତି—ପ୍ରଭୁଙ୍କର ଲୀଳା! ସେ ସମ୍ବନ୍ଧରେ କାରଣ ଖୋଜାଯାଇ ପାରେନାହିଁ।"

ଏହା ଶୁଣି କହିଲେ ବିଦୁର—"ନାଃ....ମହାରାଜ! ସ୍ୱା' କପରି ହୋଇ ପାରିବ? ଭଗବାନ ଯଦି ବାଳକ ପରି କ୍ରୀଡ଼ା କରନ୍ତେ, ତେବେ ସେ ସଙ୍କଳ୍ପରହିତ ହୋଇପାରିବେ କପରି? ପିଲାଟିର ମନରେ ଖେଳିବା ପାଇଁ ଇଚ୍ଛା ହେବାମାତ୍ରେ ସେ ଖେଳର ସାଧନ ସାମଗ୍ରୀ ଏକତ୍ରିତ କରେ। ନିଜର ସାଙ୍ଗସାଥୀଙ୍କୁ ମଧ୍ୟ ତା' ସହିତ ଖେଳିବାକୁ ଡାକେ। ଖେଳରେ ମାତିଯିବା ମାତ୍ରେ ତା' ମନରେ ଅତ୍ୟନ୍ତ ଆନନ୍ଦ ଜାତ ହୋଇଥାଏ। ହୃଦୟରେ କାମନା ଜାତ ନ ହେଲେ, ସେ ଖେଳିବାକୁ କେବେହେଲେ ଇଚ୍ଛା କରେନାହିଁ। ସେହି ଆନନ୍ଦରେ ମଗ୍ନ ହେବାପାଇଁ, ସେ ନାନାପ୍ରକାର ସାମଗ୍ରୀ ଏକତ୍ରିତ କରେ; କିନ୍ତୁ ପରମାତ୍ମା ଆନନ୍ଦସ୍ୱରୂପ। ସେ ଆତ୍ମାରାମ, ସଦାସର୍ବଦା ଆତ୍ମାନନ୍ଦରେ ମଗ୍ନହୋଇ ଥାଆନ୍ତି। ସେ ନିଜର ପରିତୃପ୍ତି ପାଇଁ କେବେହେଲେ ସାମଗ୍ରୀ ଏକତ୍ରିତ କରନ୍ତି ନାହିଁ। ସେ ଅଦ୍ୱିତୀୟ, ସମ୍ବନ୍ଧ-ରହିତ ତଥା ନିରାଲମ୍ବ। ସେ ନିଜର ଲୀଳାପାଇଁ ସୃଷ୍ଟିର ଜଞ୍ଜାଳରେ କାହିଁକି ପଡ଼ିବାକୁ ଯିବେ ଯେ? କୌଣସି କାରଣ ନ ଥିଲେ ଜଗତର ସୃଷ୍ଟି, ସ୍ଥିତି ଓ ପ୍ରଳୟ ହୋଇପାରେନା ନାହିଁ। ପରମାତ୍ମା ମାୟାର ପ୍ରପଞ୍ଚରେ ପଡ଼ି ଏହା କରିଛନ୍ତି ବୋଲି ମଧ୍ୟ ଆପଣ କହିପାରିବେ ନାହିଁ। କାରଣ ସେ ହେଉଛନ୍ତି—ଅଖଣ୍ଡ ଜ୍ଞାନ-ସ୍ୱରୂପ। ଦେଶ, କାଳ ଓ ଅବସ୍ଥା ବିଶେଷରେ ତାଙ୍କର ଜ୍ଞାନ ଲୋପହେବା ଆଦୌ ସମ୍ଭବ ନୁହେଁ। ତେଣୁ ସେ ଜାଣିଶୁଣି ଏହି ବହୁରୂପୀ ମାୟାର ଗୋଲକଧନ୍ଦାରେ ପଡ଼ିବାକୁ ଯିବେ କାହିଁକି? ଯଦିଓ ସେ ମାୟାର ମୋହଜାଲରେ ଜାଣିଶୁଣି ପଡ଼ିବେ, ତଥାପି ତାଙ୍କୁ କର୍ମଜକ୍ଲେଶ କଦାପି ସ୍ପର୍ଶ କରିପାରିବ ନାହିଁ। ଏହି ଶଙ୍କା ମୋ' ମନରେ ବାରମ୍ବାର ମୋତେ ବିବ୍ରତ କରୁଛି। ଆପଣ ଏହାର ସମାଧାନ କରନ୍ତୁ।"

ଏହା ଶୁଣି ମୈତ୍ରେୟ ହସି ହସି କହିଲେ—ବିଦୁର! ଆପଣ ବେଶ୍ ମନଲାଖି ପ୍ରଶ୍ନଟିଏ କରିଛନ୍ତି; କିନ୍ତୁ ଏହାର ମୂଳ କେଉଁଠି, ତାହା ଆଦୌ ଜାଣି ପାରିନାହାନ୍ତି। ଯଦି ପରମେଶ୍ୱର କାଳ, କର୍ମ ଓ ଗୁଣର ଅଧୀନ ହୋଇ ଜୀବ ରୂପରେ କ୍ଳେଶ ଭୋଗ କରନ୍ତେ, ତେବେ ମନୀଷୀମାନେ ମାୟାର କଳ୍ପନା ସୁଦ୍ଧା

କରନ୍ତେ ନାହିଁ । ଆଚ୍ଛା, ଆପଣ କହିଲେ—ମାୟା ବୋଲିଲେ ଆପଣ କ'ଣ ବୁଝୁଛନ୍ତି ?''

ବିଦୁର ସଙ୍ଗେ ସଙ୍ଗେ ଉତ୍ତର ଦେଲେ—''ଅସତ୍ ଜଗତକୁ ଆମ ଆଗରେ ଯେଉଁ ଶକ୍ତି ସତ୍ୟ ରୂପେ ପ୍ରକାଶ କରାଉଛି, ତାହାହିଁ ହେଉଛି—ମାୟା ।''

ମୈତ୍ରେୟ ଅତ୍ୟନ୍ତ ପ୍ରୀତ ହୋଇ କହିଲେ—''ବେଶ, ଆପଣ ଏଥର ନିଜ ପ୍ରଶ୍ନର ଉତ୍ତର ନିଜେ ପାଇ ପାରିବେ ! ଯେଉଁ ଶକ୍ତି ଅସତ୍ ତଥା ଅନିତ୍ୟକୁ ସତ୍ୟ ଏବଂ ନିତ୍ୟ ରୂପେ ଜ୍ଞାନ କରାଇ ପାରେ, ସେହି ଶକ୍ତି ସନାତନ ପୁରୁଷଙ୍କୁ କିପରି ମୋହିତ କରିଇ ପାରିବ ? ଯେ ଯାହାଙ୍କ ଅଂଶରୁ ନିଜର ଅସ୍ତିତ୍ୱ ପାଇଛି, ସେ ତାଙ୍କୁ କିପରି ଦୁଃଖ ଦେଇ ପାରିବ ?''

''ତା'ହେଲେ… ?'' ପଚାରିଲେ ବିଦୁର—''ଏହି ସଂସାରର ପ୍ରାଣୀମାନେ କାହିଁକି ଦୁଃଖ ଭୋଗ କରୁଛନ୍ତି ଯେ ? ସେମାନେ କାହିଁକି ଘନ ଦୁଃଖୀ ହୋଇ ଏଣେତେଣେ ଭ୍ରମ-ବିଷାଦ ଭିତରେ ପରିଭ୍ରମଣ କରୁଛନ୍ତି ?''

ଏହାର ସମୁଚିତ ଉତ୍ତର ଦେଇ କହିଲେ ମୈତ୍ରେୟ—''ହେ ଭକ୍ତପ୍ରବର ବିଦୁର ! ମୁଁ ତ ଠିକ୍ ସେହି କଥା କହୁଛି । ଭଗବାନଙ୍କ ଆଶ୍ରୟରେ ଥିବା ଜୀବ କେବେହେଲେ ଦୁଃଖ କ୍ଲେଶ ଭୋଗ କରେନାହିଁ । ମାୟା ଗୋଟିଏ ଭ୍ରମ । ଅସତ୍ୟବସ୍ତୁରେ ସତ୍ୟର ଭ୍ରମ କରାଏ ମାୟା । କେହି କେବେହେଲେ ଭୂତ ଦେଖିନାହିଁ । ତଥାପି ପିଲାମାନେ ଭୂତ ନାମ ଶୁଣିଲେ ଡରରେ କମ୍ପି ଉଠନ୍ତି । ଶାମୁକାରେ ମୁକ୍ତା ଅଛି ବୋଲି ସମସ୍ତେ ଶୁଣିଛନ୍ତି, ମାତ୍ର କେହି ଦେଖି ନାହାନ୍ତି । ଦୂରରୁ ଶାମୁକାଟିଏ ଦେଖି, ସେଥିରେ ମୁକ୍ତା ଅଛି ବୋଲି ମାୟାରେ ସମସ୍ତେ ଶାମୁକା ସଂଗ୍ରହ କରନ୍ତି । ଅନ୍ଧାର ରାତିରେ ଖଣ୍ଡିଏ ଦଉଡ଼ି ଦେଖି ମନରେ ସର୍ପର ଭ୍ରମ ହୋଇଥାଏ । କ୍ଷେତ ମଝିରେ ମଣିଷ ଆକୃତିର ବସ୍ତୁଟିଏ ଥୋଇ ଦେଇ କୃଷକ ଶସ୍ୟ ନଷ୍ଟକାରୀ ପ୍ରାଣୀମାନଙ୍କୁ ଭୟଭୀତ କରାଏ; କିନ୍ତୁ ପ୍ରକୃତରେ ସେହି ମନୁଷ୍ୟ ଆକୃତିର କୌଣସି ଶକ୍ତି ନାହିଁ । ଦ୍ରୁତଗାମୀ ଯାନରେ ବସି ସମସ୍ତେ ଅନୁଭବ କରନ୍ତି । ତାଙ୍କ ସହିତ ରାସ୍ତାର ଦୁଇ କଡ଼ରେ ବୃକ୍ଷଗୁଡ଼ିକ ଧାଇଁଛନ୍ତି । ସେହିପରି ଜଳର ପ୍ରବହମାନ ସ୍ରୋତରେ ଚନ୍ଦ୍ରଙ୍କର ପ୍ରତିବିମ୍ବ କମ୍ପୁଥିବା ପରି ଦେଖାଯାଏ । ପିଲାମାନେ ଚକାଚକା ଭଉଁରୀ ଖେଳ ଖେଳୁଥିବାବେଳେ ଭାବନ୍ତି—ପୃଥିବୀ ତାଙ୍କ ସହିତ ଘୂରିବାରେ ଲାଗିଛି । ଏହିପରି ଆହୁରି କେତେ କ'ଣ ଭ୍ରମ ଆମ ମନରେ ଜାତ ହୁଏ । ବିଶେଷତଃ ସ୍ୱପ୍ନରେ ଆମେମାନେ ଭୟାବହ ଘଟଣା ଦେଖୁଥାଉଁ; କିନ୍ତୁ ନିଦ୍ରାଭଙ୍ଗ ହେବାପରେ ଆମ ମନରୁ ସେହି ଭ୍ରମ ଦୂର ହୋଇଯାଏ । ସେହିପରି

ମଣିଷର ମନରେ ଅନେକ ଅସତ୍ୟ ବସ୍ତୁ ମାୟାବଳରେ ସତ୍ୟ ବୋଲି ଜଣାଯାଏ ।"

ଏହା ଶୁଣି କହିଲେ ବିଦୁର—"ମହାରାଜ ! ଏଭଳି ମାୟାର ସୃଷ୍ଟି କେବେ ହୋଇଛି ? ଏହାର ଆଦି ଅନ୍ତ କେଉଁଠି ?"

ଏହା ଶୁଣି ମୈତ୍ରେୟ ଠୋ ଠୋ ହୋଇ ହସି ଦେଇ କହିଲେ—"ବିଦୁର ! ଆପଣ ମୋତେ ଭ୍ରମରେ ପକାଇବାକୁ ଚେଷ୍ଟା କରୁଛନ୍ତି । ମୁଁ ଯଦି ଏହି ମାୟାକୁ ସୃଷ୍ଟିର ଆରମ୍ଭ ସହିତ ସମ୍ପର୍କ ଯୋଡ଼ି ବସିବି, ତେବେ ଏହାର ବିନାଶ ସୃଷ୍ଟିର ବିନାଶ ସହିତ ହେଉଥିବାର ପ୍ରମାଣ ମୋତେ ଯୋଗାଇବାକୁ ହେବ; କିନ୍ତୁ ଏହା ପ୍ରକୃତରେ ହୁଏନାହିଁ । ତେଣୁ ମନେରଖ, ଏହି ବିଭ୍ରମ ହେଉଛି—ମାୟାର ସହୋଦର ।"

"ନା....ମହାରାଜ ! ମୁଁ ଆପଣଙ୍କୁ ଭ୍ରମଜାଲରେ ପକାଇବାକୁ ଚାହେଁ ନାହିଁ । ମାୟାର ପ୍ରକୃତ ସ୍ୱରୂପ କ'ଣ, ତାହା ମୋତେ ବୁଝାଇ ଦିଅନ୍ତୁ ।"

"ବିଦୁର ! ଏହି ମାୟାର ସ୍ୱରୂପ କିଏ ଅବା କହିପାରିବ ? ତୁମେ ଏ ମାୟାର ସ୍ୱରୂପ ଜାଣିବା ଧନ୍ଦାରୁ ମୁକ୍ତ ହୁଅ ।"

"ଠିକ୍ କହିଛନ୍ତି ମହାରାଜ ! ମୁଁ ଏହି ମାୟାରୁ କିପରି ମୁକ୍ତ ହେବି, ତାହା ମୋତେ ବୁଝାଇ ଦିଅନ୍ତୁ ।"

ମୈତ୍ରେୟ ଧୀର ଗମ୍ଭୀର ସ୍ୱରରେ କହିଲେ—"ଯଦି ଆପଣ କାମନା ସହିତ କୌଣସି କର୍ମ ଆରମ୍ଭ କରିବେ, ତେବେ ମାୟାର ବନ୍ଧନରୁ ମୁକ୍ତହୋଇ ପାରିବେ ନାହିଁ । ଈଶ୍ୱରଙ୍କ ପ୍ରତି ମନରେ ଧାରଣା ରଖି ପ୍ରତ୍ୟେକ କର୍ମ ବିଶ୍ୱପିତାଙ୍କୁ ସମର୍ପଣ କରିଦିଅନ୍ତୁ, ତା' ଫଳରେ ମାୟାର ବନ୍ଧନ ଆପେ ଆପେ ଛୁଟିଯିବ । ଆତ୍ମସମର୍ପଣ ପୂର୍ବକ ଯେଉଁ ଭକ୍ତି ଈଶ୍ୱରଙ୍କଠାରେ ପ୍ରଦର୍ଶନ କରାଯାଏ, ତାହା ହିଁ ହେଉଛି—ମାୟାରୁ ମୁକ୍ତ ହେବାର ପ୍ରଧାନ ଉପାୟ । ଗୋଟିଏ ଉଦାହରଣ ଦେଇ ବୁଝାଇ ଦେଲେ ଆପଣ ବେଶ୍ ବୁଝିପାରିବେ । କେଉଟ ଦୂରକୁ ଜାଲ ଫିଙ୍ଗି ମାଛମାନଙ୍କୁ ଜାଲରେ ଟାଣିଆଣେ; କିନ୍ତୁ ତା, ଗୋଡ଼ ପାଖରେ ଥିବା ମାଛମାନେ ଜାଲର ବନ୍ଧନରୁ ମୁକ୍ତ ହୋଇଯାଆନ୍ତି । ସେହିପରି ଆପଣ ଭଗବାନଙ୍କ ପାଖେ ପାଖେ ରହିବା ଲାଗି ସର୍ବଦା ଚେଷ୍ଟା କରନ୍ତୁ । ତାଙ୍କଠାରୁ ଦୂରେଇଗଲେ, ମାୟା ଜାଲ ବିଛାଇ ଆପଣଙ୍କୁ ଅନାୟାସରେ ଧରିନେବ । ଭେ ଭେ ହୋଇ ଭୁକୁଥିବା କୁକୁରକୁ ବନ୍ଦ କରିବାକୁ ଚେଷ୍ଟା କଲେ ସେ ଅଧିକ ଭୁକିବ । ତେଣୁ ଆପଣ ତା'ର ମାଲିକ

ପାଖକୁ ଚାଲିଯାଆନ୍ତୁ ଦେଖିବେ; କୁକୁରଟି ଆପଣଙ୍କ ଗୋଡ଼ ପାଖରେ ଛିଡ଼ାହୋଇ ଲାଙ୍ଗୁଳ ହଲାଇବ। ଆପଣ ନିଜର ନବ ବିବାହିତ ମିତ୍ର ପାଖକୁ ନ ଯାଇ ଯଦି ଭୋଜି ଆସରରେ ତାଙ୍କ ରୋଷେଇଶାଳକୁ ପଶିଯିବେ, ତେବେ ଆପଣଙ୍କୁ ଖାଇବାକୁ ତ ମିଳିବ ନାହିଁ, ବରଂ ଅପମାନ ସହ୍ୟ କରିବାକୁ ପଡ଼ିବ। ତେଣୁ ଆପଣ ପ୍ରଥମେ ମିତ୍ରଙ୍କ ସହିତ ସାକ୍ଷାତ କରନ୍ତୁ, ଦେଖିବେ ଖାଦ୍ୟ ସମ୍ମାନର ସହିତ ମିଳିବ ଏବଂ ବନ୍ଧୁ ଓ ବନ୍ଧୁପତ୍ନୀ ଉଭୟ ଆପଣଙ୍କୁ ଆଦର କରିବେ। ଏଣୁ ଆପଣ ମାୟାର ଆଶ୍ରୟ ନ ନେଇ ମାୟାପତିଙ୍କ ଆଶ୍ରୟ ନେଉନ୍ତୁ। ମାୟା ଆପଣା ଛାଏଁ ଆପଣଙ୍କଠାରୁ ଦୂରେଇ ଯିବ। ନହିଲେ, ଆପଣ ଏଥର କିଛି ବୁଝିପାରିଲେ କି ନାହିଁ।?

"ହଁ....ମହାତ୍ମନ୍! ଏଥର ମୁଁ ବେଶ୍ ବୁଝିପାରୁଛି. କହିଲେ ବିଦୁର— "ପ୍ରକୃତରେ ମାୟାପତି ହେଉଛନ୍ତି ସ୍ୱତନ୍ତ୍ର ଏବଂ ଜୀବ ପରତନ୍ତ୍ର। ଯେ ପର୍ଯ୍ୟନ୍ତ ପ୍ରାଣୀ ପରମାତ୍ମାଙ୍କ ଆଶ୍ରୟ ଗ୍ରହଣ ନ କରିଛି, ସେ ପର୍ଯ୍ୟନ୍ତ ମାୟାଜାଲରୁ ସେ ମୁକ୍ତହୋଇ ପାରିବ ନାହିଁ। ମାୟା ନିଜ କୌଶଳରେ ଜଗତକୁ ଆବୋରି ରହିଛି। ପ୍ରାଣୀର କର୍ତ୍ତବ୍ୟ ହେଉଛି—ପରମାତ୍ମାଙ୍କ ଆଶ୍ରୟ ଗ୍ରହଣ କରିବା। ତା' ଫଳରେ ମାୟାର ବନ୍ଧନ ଦୂରହୋଇ ପାରିବ। ହଁ, ଆଉ ଗୋଟିଏ କଥା, ଯେଉଁ ବ୍ୟକ୍ତି କିଛି ଜାଣେ ନାହିଁ, ତାକୁ ସହଜରେ ମାୟା ସ୍ପର୍ଶ କରିପାରେ ନାହିଁ; କିନ୍ତୁ ଯେଉଁ ବ୍ୟକ୍ତି ତତ୍ତ୍ୱଜ୍ଞାନୀ ତାଙ୍କୁ ମଧ୍ୟ ମାୟା ଫାନ୍ଦରେ ପକାଇ ପାରେନାହିଁ, କିନ୍ତୁ ଯେଉଁମାନେ ଅଳ୍ପଜ୍ଞ ସେମାନେ ମାୟାମୋହକୁ ତ୍ୟାଗ କରିପାରନ୍ତି ନାହିଁ; ତେଣୁ ସେମାନେ ମାୟାରେ ବିଜଡ଼ିତ ହୋଇ ଭବବନ୍ଧନରେ ପଡ଼ିଥାଆନ୍ତି।

"ସଂସାରର ପ୍ରାଣୀମାନେ ପ୍ରତ୍ୟେକ ବସ୍ତୁର ଅନିତ୍ୟତା ସମ୍ବନ୍ଧରେ ବିଚାର ନ କରି, ତା' ପ୍ରତି ମୋହ ପ୍ରଦର୍ଶନ କରନ୍ତି। ତା'ର ଫଳରେ ମାୟା ସେମାନଙ୍କୁ ଚାରିଆଡ଼ୁ ଆକ୍ରମଣ କରି ନିଷ୍ପେଷିତ କରିଦିଏ। ତା'ପରେ ମନୁଷ୍ୟର ଆଉ କିଛି ଆୟତ୍ତ ରହେନାହିଁ। ସେ ସେହି ମାୟା ଜାଲରେ ପଡ଼ି ଛଟପଟ ହୁଏ। ମଧୁସୂଦନଙ୍କ ଶ୍ରୀଚରଣରେ ଆଶ୍ରୟ ଗ୍ରହଣ କଲେ, ମାୟାର ପ୍ରକୃତ ସ୍ୱରୂପ ଜଣାପଡ଼େ ଏବଂ ମନୁଷ୍ୟ ସେଥିରୁ ସହଜରେ ନିଜକୁ ମୁକ୍ତ କରିପାରେ। ମୁଁ ଆପଣଙ୍କ ଉପଦେଶରୁ ମୋର ପ୍ରଶ୍ନର ଉତ୍ତର ପାଇ ସାରିଲିଣି। ଏଥର ମୋର ମୁକ୍ତିର ମାର୍ଗ ଅଧିକ ସରଳ ହୋଇଯିବ।"

ଶ୍ରୀ ଶୁକଦେବ କହିଲେ—"ହେ ମୁନିମାନେ! ଏଥିଉତ୍ତାରୁ ମୈତ୍ରେୟ ବିଦୁରଙ୍କୁ ବିରାଟ ପୁରୁଷଙ୍କଠାରୁ ବ୍ରହ୍ମାଙ୍କ ଉତ୍ପତ୍ତି ସମ୍ବନ୍ଧରେ ବ୍ୟାଖ୍ୟା କରି ଶୁଣାଇଲେ। ଏହାପରେ ମୁଁ ସେହି ଆଖ୍ୟାନ ଆପଣମାନଙ୍କୁ ଶୁଣାଇବି।"

## ଛପ୍ପୟ

"ଅନ୍ତଃକରଣ ସମେତ ବାହ୍ୟ କରଣାଦିକ ସବୁଛି
ବିଷୟ୍ଟନ ତେଂ ଉପରାମ ହୋୟ୍ ଦୁଖ କଠିହିହଂ ତବଛି ।।
ମାୟା, ମିଥ୍ୟା ଜ୍ଞାନ ଅବିଦ୍ୟା ଭ୍ରମ ଭଗିଜାଏଁ
ହୋଏଁ ଜ୍ଞାନ ଯଥାର୍ଥ ପ୍ରତିଷ୍ଠା ନିଜ ପଦ ପାଏଁ ।।
ମାୟାପତି ମୈତ୍ରୀ କରହୁ, ମାୟା ଚରଚା ତ୍ୟାଗି କେ
ଚବର ଚବର୍ ଦୁଲହିନ କରେ, ପତି ଲଖି ଜାଏଁ ଭାଗି କେ ।"



# ମୈତ୍ରେୟଙ୍କ ଭାଗବତୀ ପରମ୍ପରା

"ସୋଽହଂ ନୃଣାଂ କ୍ଷୁଲ୍ଲ ସୁଖାୟ ଦୁଃଖଂ ।
ମହଦ୍‌ଗତାନାଂ ବିରମାୟ ତସ୍ୟ ।।
ପ୍ରବର୍ତ୍ତ୍ୟେ ଭାଗବତଂ ପୁରାଣମ ।
ଯଦାହ ସାକ୍ଷାଦ୍ ଭଗବାନୃଷିଭ୍ୟଃ ।।"

( ଭାଗବତ ୩ । ୮ । ୨ )

ଛପ୍ପୟ

"କହେ ବିଦୁର ହେ ପ୍ରଭୋ ! ସୃଷ୍ଟି କୋ ସାର ବତାଓଁ
ନାନା ରୂପ ବନାୟ ବିଶ୍ୱପତି କାହି ଲୁଭାଓଁ ।।
ହଁସି ବୋଲେ ମୁନି, ବିଦୁର ଧନ୍ୟ କୁରୁକୁଲ କେ ଭୂଷନ
କହୁଁ, ଭାଗବତ ସୁନତ ଦୂର ହୋ, ସବ୍ ଦୁଖ ଦୂଷନ ।।
ସଙ୍କର୍ଷଣ ଭଗବନ୍‌ନେ, ସନକାଦି ମୁନି ସନ କହୀ
ତିନତେଂ ସାଂଖ୍ୟାୟନ ସୁନୀ ପୂଜ୍ୟ ପରାଶର ସୁନି ଲହୀ ।।

ଅର୍ଥାତ୍—ମୈତ୍ରେୟ ଶ୍ରୀ ବିଦୁରଙ୍କୁ କହୁଛନ୍ତି—"ହେ ଭଗବଦ୍‌ଭକ୍ତ-ମାନଙ୍କ ଅଗ୍ରଣୀ ! ଯେଉଁ ପୁରୁଷମାନେ ଏହି କ୍ଷୁଦ୍ର ସୁଖର ପ୍ରାପ୍ତି ପାଇଁ ଅତ୍ୟନ୍ତ କଷ୍ଟସାଧ୍ୟ ଦୁଃଖକୁ ମୁଣ୍ଡପାତି ସହି ନିଅନ୍ତି, ସେହିମାନଙ୍କ ଦୁଃଖର ନିବୃତ୍ତି ପାଇଁ, ମୁଁ ଶ୍ରୀଭାଗବତ ପୁରାଣ ଆପଣଙ୍କ ସମ୍ମୁଖରେ କହୁଛି । ପୂର୍ବକାଳରେ ଯେଉଁମାନଙ୍କୁ ଉପଦେଶ ଦେବାପାଇଁ ଶେଷଦେବଙ୍କ ଅବତାର ସାକ୍ଷାତ୍ ଭଗବାନ୍ ସନକାଦି ଋଷିମାନଙ୍କୁ କହିଥିଲେ ।"

ଜଳର ରୂପ ଗୋଟିଏ; କିନ୍ତୁ ଭିନ୍ନ ଭିନ୍ନ ରଙ୍ଗର ପାତ୍ରରେ ସେହି ଜଳକୁ ଥୋଇଲେ, ତାହା, ପୃଥକ୍ ପୃଥକ୍ ରୂପ ଧାରଣ କରେ । ବେଳେ ବେଳେ ସମୟର ପ୍ରଭାବରେ ସେହି ଜଳର ପୃଥକ୍ ପୃଥକ୍ ଗୁଣ ଦେଖା ଯାଇଥାଏ । ଆଉ କେତେକ

ସମୟରେ ଅନ୍ୟ ପଦାର୍ଥର ସମ୍ମିଶ୍ରଣରେ ସେହି ଜଳର ସ୍ୱାଦ ଅନୁଭୂତ ହୁଏ । ବରଫ ତଥା ଅନ୍ୟାନ୍ୟ ଦ୍ରବ୍ୟର ମିଶ୍ରଣରେ ଜଳର ଗୁଣ ଭିନ୍ନତା ଲାଭକରେ ଏବଂ ତାହା ପିପାସା ମେଣ୍ଟାଇବାରେ ସମର୍ଥ ହୋଇଥାଏ ।

ସେହିପରି ଭାବରେ ଜ୍ଞାନର ସ୍ୱରୂପ ମଧ୍ୟ ଏକ, ଏବଂ ତାହା ଭିନ୍ନ ଭିନ୍ନ ଋଷିମାନଙ୍କ ମୁଖରେ କଥିତ ହେଲେ ତା'ର ପ୍ରଭାବ ସ୍ୱତନ୍ତ୍ର ହୋଇଥାଏ । ତଦ୍‌ବ୍ୟତୀତ ଜ୍ଞାନର ଗ୍ରହଣକାରୀଙ୍କ ଯୋଗୁ ତାହା ଭିନ୍ନ ଭାବରେ ଗୃହୀତ ହୁଏ । ଭଗବାନ୍ ବ୍ୟାସଦେବ ସମସ୍ତ ପୁରାଣରୁ ଜ୍ଞାନ ଆହରଣ କରି ଗୋଟିଏ ପୁରାଣର ସୃଷ୍ଟି କରିଛନ୍ତି । ଅନ୍ୟଥା ପୁରାଣ ଅନନ୍ତ । କେବଳ ମତ୍ସ୍ୟ ପୁରାଣକୁ ସ୍ୱୟଂ ଭଗବାନ୍ ସପ୍ତର୍ଷିମାନଙ୍କୁ ହଜାର ବର୍ଷ ପର୍ଯ୍ୟନ୍ତ ଶୁଣାଇଛନ୍ତି । ଏହିପରି ଭାବରେ ଭାଗବତ ପୁରାଣର ଅନେକ ପରମ୍ପରା ରହିଛି । ଭଗବାନର ପ୍ରଥମବକ୍ତା ହେଉଛନ୍ତି— ଶ୍ରୀମନ୍ନାରାୟଣ । ମୈତ୍ରେୟ ହେଉଛନ୍ତି—ଦ୍ୱିତୀୟ ବକ୍ତା । ତେଣୁ ବିଦୁରଙ୍କ ପ୍ରଶ୍ନର ଉତ୍ତର ଦେବାପାଇଁ ମୈତ୍ରେୟ ନିଜର ପରମ୍ପରା ସମ୍ବନ୍ଧରେ କହିଥିଲେ ।

ମାୟା ବିଷୟକ ପ୍ରଶ୍ନର ସମାଧାନ ହୋଇସିବା ପରେ ବିଦୁର ସୃଷ୍ଟି ସମ୍ବନ୍ଧରେ ଅନେକ ପ୍ରଶ୍ନ ପଚାରିଥିଲେ । ସେ କହିଲେ—"ମୁନୀଶ୍ୱର ! ଆପଣ ମୋତେ ବିରାଟପୁରୁଷଙ୍କ ବିଭୂତି ତଥା ତାଙ୍କର ପରମ୍ପରା ସମ୍ବନ୍ଧରେ କହନ୍ତୁ । ଯାହାଙ୍କର ଅବସ୍ଥିତି ଫଳରେ ବିଶ୍ୱ ବ୍ରହ୍ମାଣ୍ଡ ପରିପୂର୍ଣ୍ଣ ହୋଇ ଯାଇଥିଲା । ସର୍ଗ, ଅନୁସର୍ଗ, ପ୍ରଜାପତି, ମନୁ, ମନ୍ୱନ୍ତର, ରାଜା ଓ ଭକ୍ତଙ୍କ ଚରିତ, ଅଣ୍ଡଜ, ଜରାୟୁଜ, ସ୍ୱେଦଜ, ତଥା ଉଦ୍‌ଭିଦଜ ଜୀବମାନଙ୍କ ଉତ୍ପତ୍ତି, ଋଷିଦେବଙ୍କ କାର୍ଯ୍ୟ, ବର୍ଣ୍ଣାଶ୍ରମ ବିଭାଗ, ଭଗବତ୍ ପ୍ରାପ୍ତିର ସମସ୍ତ ସାଧନ, ତ୍ରିବର୍ଗ ତଥା ମୋକ୍ଷ ଆଦି ସମ୍ବନ୍ଧରେ ଆପଣ ମୋ' ଆଗରେ ବର୍ଣ୍ଣନା କରନ୍ତୁ ଏବଂ ଭଗବତ ପ୍ରାପ୍ତି ବିଷୟରେ ସବୁଠାରୁ ସହଜ ଓ ସରଳ ଉପାୟ କ'ଣ, ତାହା ମଧ୍ୟ କହନ୍ତୁ ।"

ଏହା ଶୁଣି ମୁନି ମୈତ୍ରେୟ ହସି ହସି କହିଲେ—"ବିଦୁର ! ଆପଣ ଏକ ସଙ୍ଗରେ ମୋତେ ଅନେକଗୁଡ଼ିଏ ପ୍ରଶ୍ନ ପଚାରି ଦେଲେଣି । ମୁଁ ତା'ର ଉତ୍ତର କ'ଣ ବା ଦେବି ? ଆପଣ ନିଜ ବୁଦ୍ଧିରେ ତା'ର ଉତ୍ତର ଚିନ୍ତା କରନ୍ତୁ ।"

ଏହା ଶୁଣି ବିନୀତ ଭାବରେ କହିଲେ ବିଦୁର—"ହେ ମହୋଦୟ ! ବିନା ଗୁରୁରେ କେଉଁଠି ପ୍ରଶ୍ନର ସମାଧାନ ହେଲାଣି କି ? ମୁଁ ଆପଣଙ୍କର ଶିଷ୍ୟ, ସେବକ, ଭୃତ୍ୟ ଓ ମିତ୍ର ଅଟେ । ମୁଁ ମାୟାରେ ମୋହିତ; ତେଣୁ ଆପଣ ସମୁଚିତ ଉପଦେଶ ଦେଇ ମୋର ସନ୍ଦେହ ମୋଚନ କରନ୍ତୁ । ଦାନ, ଧର୍ମ, ଶୁଭକାର୍ଯ୍ୟ ଆଦିଠାରୁ ଜ୍ଞାନପ୍ରାପ୍ତି ହେଉଛି—ଶ୍ରେଷ୍ଠ, ତେଣୁ ଆପଣ ମୋତେ ଜ୍ଞାନୋପଦେଶ ଦେଇ ମୋର ଅନ୍ତରକୁ ଭୟଶୂନ୍ୟ କରନ୍ତୁ ।"

ବିଦୁରଙ୍କ କଥା ଶୁଣି ହସିଦେଇ ଶାନ୍ତ ସ୍ୱରରେ କହିଲେ ମୈତ୍ରେୟ—"ବିଦୁର, ଆପଣ ଧନ୍ୟ ! ଆପଣଙ୍କ ମନୋବୃତ୍ତି ପରମାର୍ଥ ତତ୍ତ୍ୱ ଆଡ଼କୁ ଯାଉଥିବାରୁ, ଆପଣ ଜଣେ ପ୍ରସିଦ୍ଧ ଭଗବଦ୍‌ବିଶ୍ୱାସୀ ଅଟନ୍ତି । ସାଧାରଣତଃ ସାଂସାରିକ ବ୍ୟକ୍ତିମାନେ ନିନ୍ଦା, କୁତ୍ସା, ମନୋରଞ୍ଜକ କଥା ଓ ପରସ୍ତ୍ରୀକାତରତାପୂର୍ଣ୍ଣ ଆଲୋଚନା ଆଡ଼କୁ ଅଧିକ ଆକୃଷ୍ଟ ହୋଇ ଥାଆନ୍ତି । ସେମାନେ ଚକଚକିଆ ବସ୍ତୁ ଆଡ଼କୁ ମୁଗ୍‌ଧନୟନରେ ଚାହିଁ ରହନ୍ତି ଏବଂ ପର ନିନ୍ଦା ଶୁଣିଲେ ସେହି କଥାକୁ କାନଡେ଼ରି ଥାଆନ୍ତି; କିନ୍ତୁ ସେଥିପ୍ରତି ଆଦୌ ଭ୍ରୂକ୍ଷେପ ନ କରି, କେବଳ ପରମାର୍ଥ ତତ୍ତ୍ୱ ଚିନ୍ତନରେ ଆପଣ ମନ ବଳାଇଛନ୍ତି । ତେଣୁ ଆପଣ 'ଭାଗବତ' କଥା ଶ୍ରବଣର ଅଧିକାରୀ ଅଟନ୍ତି । ସେଇଥିପାଇଁ ମୁଁ ଆପଣଙ୍କୁ 'ଭାଗବତ' କଥା ଶୁଣାଇବି । ଆପଣ ସେହି କଥା ମାଧ୍ୟମରେ ଆପଣଙ୍କର ସମସ୍ତ ପ୍ରଶ୍ନର ଉତ୍ତର ପାଇ ପାରିବେ ।"

ଏହା ଶୁଣି କହିଲେ ବିଦୁର—"ମହାତ୍ମନ୍ ! ଆପଣ ଏହି ଭଗବଦ୍ ଭକ୍ତି କେଉଁଠାରୁ ପ୍ରାପ୍ତ ହେଲେ ? ଆପଣଙ୍କ ଜ୍ଞାନର ପରମ୍ପରା କେଉଁ ମହର୍ଷିଙ୍କଠାରୁ ଆରମ୍ଭ ହୋଇଛି ?"

ଏହାର ଉତ୍ତର ଦେଇ କହିଲେ ମୈତ୍ରେୟ—"ଭାଗବତ କଥାର ପରମ୍ପରା କେଉଁ ଯୁଗରୁ ଅବିଚ୍ଛିନ୍ନ ଭାବରେ ଚାଲି ଆସୁଛି । ଏହି ଜ୍ଞାନ ଶ୍ରୀମନ୍ନାରାୟଣ ଋଷିମାନଙ୍କୁ ଦେଇଥିଲେ ।"

ତା'ପରେ ପଚାରିଲେ ବିଦୁର—"ମୁନି କହିଲେ ! ଆପଣ କେଉଁ ନିର୍ଦ୍ଦିଷ୍ଟ ମୁନିଙ୍କ ସମ୍ବନ୍ଧରେ କହୁଛନ୍ତି ? ଭଗବାନ୍ ବାସୁଦେବ କେଉଁ ରୂପରେ ଏହି ଉପଦେଶ ପ୍ରଦାନ କରିଥିଲେ ? ଆପଣ ମୋ' ପିତା ଭଗବାନ୍ ବ୍ୟାସଦେବଙ୍କ ପରମ୍ପରାର ଶିଷ୍ୟ କିମ୍ବା ଅନ୍ୟ କେଉଁ ପରମ୍ପରାର ?"

ଏହା ଶୁଣି କହିଲେ ମହର୍ଷି ମୈତ୍ରେୟ—"ବିଦୁର ! ଜ୍ଞାନ ପୃଥକ୍ ପୃଥକ୍ ନୁହେଁ । ବ୍ୟାସଦେବଙ୍କ ଜ୍ଞାନ ଓ ମୋ' ଜ୍ଞାନ ମଧ୍ୟରେ ଆଦୌ ପାର୍ଥକ୍ୟ ନାହିଁ । ବ୍ୟାସଦେବଙ୍କ ପରମ୍ପରା ହେଉଛି—ଶ୍ରୀମନ୍ନାରାୟଣଙ୍କ ପରମ୍ପରା । ନାରାୟଣ ନିଜେ ନାଭିକମଳସ୍ଥିତ ବ୍ରହ୍ମାଙ୍କୁ ଜ୍ଞାନୋପଦେଶ ଦେଇଥିଲେ । ବ୍ରହ୍ମା ନିଜର ପ୍ରିୟ ପୁତ୍ର ନାରଦଙ୍କୁ ସେହି ଉପଦେଶ ଦେଇ ତାଙ୍କୁ କୃତାର୍ଥ କରିଥିଲେ । ମହର୍ଷି ନାରଦ ବଦରୀ ବନରେ ବିଷାଦ ମନରେ ବସିଥିବା ବାଦରାୟଣଙ୍କୁ ଉପଦେଶ ଶୁଣାଇ ତାଙ୍କ ମନରୁ ଦୁଃଖ ଦୂର କରିଥିଲେ । ବ୍ୟାସଦେବ ସେହି ଜ୍ଞାନୋପଦେଶ ନିଜ ପୁତ୍ର ଶୁକଦେବଙ୍କୁ ଦେଇଥିଲେ; କିନ୍ତୁ ଆମର ପରମ୍ପରା ପାତାଳବାସୀ ସହସ୍ର ଫଣାଧାରୀ ଭଗବାନ୍ ସଙ୍କର୍ଷଣଙ୍କଠାରୁ ଆରମ୍ଭ ହୋଇଛି । ଭଗବାନ୍ ସଙ୍କର୍ଷଣ ସଦାସର୍ବଦା

ଶ୍ରୀମନ୍ନାରାୟଣଙ୍କର ମାନସିକ ଅର୍ଚ୍ଚନା କରୁଥାଆନ୍ତି । ସେ 'ରାମ' ବୋଲି ପୂର୍ଣ୍ଣ ଶବ୍ଦ ବ୍ୟବହାର କରନ୍ତି ନାହିଁ; କେବଳ 'ରାଂ, ରାଂ, ରାଂ, ରାଂ' ବୋଲି ଜପ କରନ୍ତି । 'ମ' କହିଲେ ଓଷ୍ଠ ବନ୍ଦ ହୋଇଯିବ; ତେଣୁ କେବଳ 'ରାଂ' ଜପରେ ମଗ୍ନ ଥାଆନ୍ତି । ନାମ ଜପରେ ଭଗବାନ୍ ସଙ୍କର୍ଷଣ ସର୍ବଶ୍ରେଷ୍ଠ ଅଧିବସାୟୀ । ସେ ନାମ ଜପ ସହିତ ମାନସିକ ପୂଜାମଧ୍ୟ କରନ୍ତି ।

"ଏକଦା ଏକ କଥା: ବ୍ରହ୍ମାଙ୍କ ମାନସିକପୁତ୍ର ସନକ, ସନନ୍ଦନ, ସନତ କୁମାର ଓ ସନାତନ ତ୍ରିଜଗତ ପରିଭ୍ରମଣ କରୁକରୁ ଭଗବାନ୍ ସଙ୍କର୍ଷଣଙ୍କ ଦର୍ଶନ ଲାଗି ମନ ବଳାଇଲେ । ସେମାନେ ସୁମେରୁ ପର୍ବତରୁ ଯାତ୍ରା ଆରମ୍ଭ କରି ଭୋଗବତୀ ନଦୀର ମାର୍ଗରେ ପାତାଳରେ ପ୍ରବେଶ କଲେ । ପାତାଳ ପୁରକୁ ଦୀପ୍ତିମାନ୍ ପ୍ରକାଶରେ ଉଦ୍‌ଭାସିତ କରାଇ ଭଗବାନ୍ ସଙ୍କର୍ଷଣ ଗୋଟିଏ ଦିବ୍ୟସିଂହାସନରେ ଆସୀନଥିଲେ । ତାଙ୍କର ସହସ୍ର ଫଣାରୁ ଉଦ୍‌ଭାସିତ ମଣିମାଣିକ୍ୟର କିରଣରେ ବାତାବରଣଟି ପ୍ରକାଶମୟ ହୋଇଥିଲା । ସେହି ପ୍ରକାଶ ପୁଞ୍ଜକୁ ଦେଖିଲେ ମନେ ହେଉଥିଲା—ସତେ ଅବା, ଶତ ସହସ୍ର ଚନ୍ଦ୍ର ସେଠାରେ ଉଦିତ ହୋଇଛନ୍ତି ! ନାଗକନ୍ୟାମାନେ ତାଙ୍କ ପାଦପଦ୍ମରେ ପୂଜାକରି ଅସଂଖ୍ୟ ସୁବାସିତ କୁସୁମ ସେଠାରେ ଥୋଇ ଯାଇଥିଲେ । ପୁଷ୍ପମାନଙ୍କ ସୁଗନ୍ଧରେ ସେହି ଅଞ୍ଚଳଟି ଆମୋଦିତ ହେଉଥିଲା । ଚାରି କୁମାର ଯାଇ ସେଠାରେ ଭଗବାନ ସଙ୍କର୍ଷଣଙ୍କ ପାଦ ବନ୍ଦନା କଲେ । ଭୋଗବତୀର ଜଳରେ ସେମାନଙ୍କ ଜଟା ଆର୍ଦ୍ର ହୋଇ ଯାଇଥିଲା । ମୁନିକୁମାରଙ୍କ ଜଟାଜୁଟର ଜଳସ୍ପର୍ଶରେ ଭଗବାନ୍ ସଙ୍କର୍ଷଣ ନିଜର ମୁଦ୍ରିତ ଚକ୍ଷୁ ଖୋଲି ସେମାନଙ୍କ ଆଡ଼କୁ ଚାହିଁଲେ । ତାଙ୍କର ଦୁଇ ସହସ୍ର ଚକ୍ଷୁକୁ ଦେଖିଲେ ମନେ ହେଉଥିଲା-- ଦୁଇ ସହସ୍ର ପଦ୍ମ ଏକାବେଳକେ ବିକସିତ ହେଲେ କି ?

ସେ ଚକ୍ଷୁ ଖୋଲିଲେ ସତ; କିନ୍ତୁ ମୁନିକୁମାରଙ୍କ ସହିତ କଥା କହିବେ କିପରି ? ଯେ ଓଷ୍ଠ ବନ୍ଦ ହୋଇଯିବା ଭୟରେ 'ରାମ' ଶବ୍ଦରୁ କେବଳ 'ରାଂ' ଜପ କରୁଥିଲେ, ସେ ନାମ ଜପ ତ୍ୟାଗକରି କଥାବାର୍ତ୍ତା କରିବେ କିପରି ? ମୁନିକୁମାରମାନେ ଅତ୍ୟନ୍ତ ବୁଦ୍ଧିମାନ୍ ଥିଲେ । ସେମାନେ ସଙ୍କର୍ଷଣଙ୍କ ମନୋଭାବ ଜାଣିପାରି, କେବଳ ଭଗବତ୍ ଚର୍ଚ୍ଚା ଆରମ୍ଭ କରିଥିଲେ । ଭଗବଦ୍ ବିଷୟକ ଚର୍ଚ୍ଚା ଶୁଣି ସଙ୍କର୍ଷଣ ଆନନ୍ଦମଗ୍ନ ହୋଇଉଠିଲେ ଏବଂ ତାଙ୍କ ମୁଖମଣ୍ଡଳରୁ ପ୍ରଶାନ୍ତିର ଝର ନିର୍ଗତ ହେବାକୁ ଲାଗିଲା । ତାହା ଲକ୍ଷ୍ୟକରି ମୁନିକୁମାରମାନେ କହିଲେ— "ଆପଣ ଯେ କୌଣସି ଭଗବଦ୍ ବିଷୟକ ଚର୍ଚ୍ଚା ଆରମ୍ଭ କରନ୍ତୁ ।" ଏହା ଶୁଣି ସଙ୍କର୍ଷଣ ଆନନ୍ଦମଗ୍ନ ଚିତ୍ତରେ ମୁନିକୁମାରମାନଙ୍କୁ ଭଗବତ୍‌ତତ୍ତ୍ୱ ଉପଦେଶ ଦେଇଥିଲେ ।

ଭଗବଦ୍ ଭକ୍ତିରେ ତନ୍ମୟ ହୋଇ ସନତ୍କୁମାରମାନେ ସେଠାରୁ ଚାଲି ଆସିଲେ । ସେମାନେ ସେଠାରୁ ଆସି, ମହାମୁନି ସାଂଖ୍ୟାୟନଙ୍କ ଆଶ୍ରମରେ ପହଞ୍ଚିଲେ । ମହର୍ଷି ସାଂଖ୍ୟାୟନ ସନତ୍କୁମାରମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଲେ । ତାଙ୍କ ଆତିଥ୍ୟରେ ମୁଗ୍ଧ ହୋଇ ସନତ୍କୁମାରମାନେ ସାଂଖ୍ୟାୟନଙ୍କୁ ଭଗବଦ୍ ବିଷୟକ ଜ୍ଞାନୋପଦେଶ ଦେଲେ ।

ଭଗବାନ୍ ସାଂଖ୍ୟାୟନଙ୍କର ପ୍ରିୟତମ ଶିଷ୍ୟଥିଲେ ପରାଶର । ସେ ଅତ୍ୟନ୍ତ ଶୁଦ୍ଧଚିତ୍ତ, ସଦାଚାରୀ, ସୁଶୀଳ ତଥା ଗୁରୁସେବାପରାୟଣ ଥିଲେ । ସାଂଖ୍ୟାୟନ ପରାଶର ଓ ବୃହସ୍ପତିଙ୍କୁ ସେହି ଜ୍ଞାନ ପ୍ରଦାନ କରିଥିଲେ । ମୁଁ ଏହା ଶୁଣି ମୁନି ପରାଶରଙ୍କଠାରୁ ସେହି ଜ୍ଞାନ ଉପଦେଶ ଗ୍ରହଣ କରିବା ଲାଗି ଆଗ୍ରହୀ ହୋଇ-ଉଠିଲି; କିନ୍ତୁ ମହର୍ଷି ପରାଶରଙ୍କୁ ପଚାରିବା ଲାଗି ମୋର ସାହସ ହେଲାନାହିଁ । ତା' ବ୍ୟତୀତ ମୋ'ପରି ଏକ ବାଳକଙ୍କୁ ମହର୍ଷି ପରାଶର ସେହି ଗୁହ୍ୟଜ୍ଞାନର ଉପଦେଶ ଦିଅନ୍ତେ ଅବା କାହିଁକି ?

ମହର୍ଷି ପୁଲସ୍ତ୍ୟ ମୋତେ ଅତ୍ୟନ୍ତ ସ୍ନେହ କରୁଥିଲେ । ମୁଁ ତାଙ୍କର ଆଗରେ ମୋର ମନୋଭାବ ଜଣାଇଲି । ସେ କୃପାକରି ମୋତେ କହିଲେ—"ଏଥିରେ ସଙ୍କୋଚ କରିବାର କ'ଣ ଅଛି ? ତୁମେ ମହର୍ଷି ପରାଶରଙ୍କ ଆଗରେ ତୁମର ଇଚ୍ଛା ନିବେଦନ କର । ସେ ତୁମକୁ ଅତ୍ୟନ୍ତ ଆଗ୍ରହର ସହିତ ଜ୍ଞାନୋପଦେଶ ଦେବେ ।"

ଏହା କହି ପୁଲସ୍ତ୍ୟ ମୋତେ ସଙ୍ଗରେ ନେଇ ପରାଶରଙ୍କ ଆଶ୍ରମରେ ପହଞ୍ଚିଲେ । ପରାଶରଙ୍କଠାରୁ ପାଦ୍ୟ, ଅର୍ଘ୍ୟ ପାଇ ସାରିବାପରେ କହିଲେ ପୁଲସ୍ତ୍ୟ —"ମୁନି ମୈତ୍ରେୟ ତୁମର ଶିଷ୍ୟ ହେବାକୁ ଆଗ୍ରହ ପ୍ରକାଶ କରୁଛନ୍ତି । ତୁମେ ତାଙ୍କୁ 'ଭାଗବତ' ତତ୍ତ୍ୱ ଉପଦେଶ ଦିଅ ।"

"ମହର୍ଷି ପରାଶର ପୁଲସ୍ତ୍ୟଙ୍କଠାରୁ ଏହା ଶୁଣିବାମାତ୍ରେ ଅତ୍ୟନ୍ତ ଶ୍ରଦ୍ଧା କରି ପରମ ରହସ୍ୟମୟ 'ଭାଗବତ' ତତ୍ତ୍ୱ ମୋତେ ଶୁଣାଇଲେ । ହେ ବିଦୁର ! ମୁଁ ଗୁରୁ ପରମ୍ପରାରୁ ତଥା ଭଗବାନ୍ ଶ୍ରୀକୃଷ୍ଣଙ୍କ ମୁଖରୁ ଯେଉଁ 'ଭାଗବତ' ତତ୍ତ୍ୱ ଶ୍ରବଣ କରି ଜ୍ଞାନଲାଭ କରିଛି, ତାହା ଆପଣଙ୍କୁ ଶୁଣାଇବି । ଆପଣଙ୍କପରି ଜଣେ ଶ୍ରଦ୍ଧାବାନ୍ ଶ୍ରୋତାଙ୍କୁ ପାଇ, ମୁଁ ଗର୍ବ ଅନୁଭବ କରୁଛି । ବିଶେଷତଃ ଭଗବାନ୍ ବାସୁଦେବ ଇହଲୀଳା ସମ୍ବରଣ ସମୟରେ ମୋତେ ଯେଉଁ ଦାୟିତ୍ୱ ଦେଇଥିଲେ, ମୁଁ ତାହା ପାଳନ କଲେ ଅତ୍ୟନ୍ତ ପ୍ରୀତ ହେବି ।"

ଶ୍ରୀ ଶୁକଦେବ କହିଲେ—"ହେ ପରୀକ୍ଷିତ ! ମୈତ୍ରେୟ ବିଦୁରଙ୍କ ଗୁଣରେ ମୁଗ୍ଧ ହୋଇ ତାଙ୍କୁ ଭାଗବତ-ଜ୍ଞାନ-ଉପଦେଶ ପ୍ରଦାନ କଲେ ।"

## ଛପ୍ପୟ

'ମୈଂ ହୂଁ ଚାହୁଁ କିନ୍ତୁ ଭାଗବତ ତତ୍ତ୍ୱ ଲହୁଁ କସ
ଶ୍ରଦ୍ଧା ସଂଯମ ରହିତ ଜାହି ଗୁରୁ ନିକଟ କହି କସ ।।
ମୁନି ପୁଲସ୍ତ୍ୟନେ କହୀ ଚଲୋ ହମ ତୁହ୍ମେ ଦିଓ୍ୱାଓ୍ୱେଂ
ଶକ୍ତିପୁତ୍ର ମମ ମିତ୍ର ପ୍ରେମତେଂ ତୁହ୍ମେ ସିଖାଓ୍ୱେଂ ।।
କରୀ କୃପା ଗୁରୁଦେବନେ, ଗୁହ୍ୟ ଜ୍ଞାନ ମୋକୁଁ ଦୟୋ
ତାତ ! ତୁରତ ତହି ତୁମ ଗହୋ ହରିହୂନେ ଜୋ ପୁନିକହ୍ୟୋ ।।



## ବିଶେଷ ବିଜ୍ଞପ୍ତି

ସନ୍ତ ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀଙ୍କ ଲେଖନୀ ନିଃସୃତ

ହିନ୍ଦି 'ଭାଗବତୀ କଥାର' ଓଡ଼ିଆ ଅନୁବାଦ

| | | |
|---|---|---|
| ଭାଗବତ କଥ | ପ୍ରଥମ ଖଣ୍ଡ | ୧୦ ଟଙ୍କା |
| ଭାଗବତ କଥା | ଦ୍ୱିତୀୟ ଖଣ୍ଡ | ୧୦ ଟଙ୍କା |
| ଭାଗବତ କଥା | ତୃତୀୟ ଖଣ୍ଡ | ୧୨ ଟଙ୍କା |
| ଭାଗବତ କଥା | ଚତୁର୍ଥ ଖଣ୍ଡ | ୧୨ ଟଙ୍କା |
| ଭାଗବତ କଥା | ପଞ୍ଚମ ଖଣ୍ଡ | ୧୨ ଟଙ୍କା |
| ଭାଗବତ କଥା | ଷଷ୍ଠ ଖଣ୍ଡ | ୧୨ ଟଙ୍କା |

ଭାଗବତ କଥା—ସପ୍ତମ, ଅଷ୍ଟମ, ନବମ, ଦଶମ ଖଣ୍ଡ
ପ୍ରକାଶ ଅପେକ୍ଷାରେ

ଅବଶିଷ୍ଟ ପଚାଶ ଖଣ୍ଡ ଭାଗବତ କଥା କ୍ରମେ ପ୍ରକାଶ ପାଇବ

ରାସ ପୂର୍ଣ୍ଣିମା
ନଭେମ୍ବର ୨୦, ୧୯୮୩

ଶ୍ରୀ ଅନନ୍ତ ମିଶ୍ର
ସେବକ